ବୃନ୍ଦାବନର ଶେଷଧୂପ

ଲେଖକ :

ମହାପାତ୍ର ନୀଳମଣି ସାହୁ

ପ୍ରକାଶକ :

ଅଗ୍ରଦୂତ

ବାଙ୍କା ବଜାର, କଟକ

ମୁଦ୍ରଣ :

ପ୍ରେସ୍ ଅଭୀପ୍ସା

୧୯୧, ଖାରବେଳ ନଗର, ୟୁନିଟ୍-୩

ଭୁବନେଶ୍ୱର-୧

ଫୋନ : ୫୧୦୧୪

ପ୍ରଚ୍ଛଦପଟ :

ଡି. ଏନ୍. ରାଓ

ପ୍ରଥମ ପ୍ରକାଶ :

ଅଗଷ୍ଟ ପନ୍ଦର, ୧୯୮୩

ମୂଲ୍ୟ :

ବାଇଶ ଟଙ୍କା

Brundabanara Seshadhupa

by

Mohapatra Nilamani Sahoo

Publisher : Agraduta
Cuttack-2

Printed at : Press Abhipsa,
Bhubaneswar-751001
Phone : 51014

Year of Publication : 1983

Price : Rs. 22.00

ମୋର ପରମ ପୂଜନୀୟା ଶାଶୁ ସ୍ୱର୍ଗତା **ପଦ୍ମାବତୀ ଦେବୀ**

ଓ

ପରମ ପୂଜନୀୟ ଶଶୁର ସ୍ୱର୍ଗତ **ବ୍ରଜମୋହନ ପ୍ରହରାଜ**

ଯୁଗଳ-ପଦ-କମଳେଷୁ.........

— **ନୀଳମଣି**

**ଶ୍ରୀଅରବିନ୍ଦ ଜୟନ୍ତୀ**

ତା ୧୫ । ୮ । ୮୩

ଭୁବନେଶ୍ୱର

# ପ୍ରକାଶକୀୟ

ଓଡ଼ିଆ କଥା ସାହିତ୍ୟର ଅନ୍ୟତମ ମହାରଥି ମହାପାତ୍ର ନୀଳମଣି ସାହୁଙ୍କର "ଅନ୍ୟ ରୂପ ରୂପାନ୍ତର" "ପିଙ୍ଗଳା ସେ ଅନ୍ୟଜଣେ" ଓ "ଅଭିଶପ୍ତଗନ୍ଧର୍ବ"— ଏହି ତିନୋଟି ବିଶିଷ୍ଟ ଗଳ୍ପ ସଙ୍କଳନ ପ୍ରକାଶ କରିବାର ସୌଭାଗ୍ୟ ପରେ ଆମେ ବର୍ତ୍ତମାନ ତାଙ୍କର ସଦ୍ୟତମ ବୃହତ୍‌ଗଳ୍ପସଙ୍କଳନ "ବୃନ୍ଦାବନର ଶେଷଧୂପ" ପ୍ରକାଶ କରି ଧନ୍ୟ ମନେ କରୁଛୁ । ଏ ବହିଟିର ସାମାନ୍ୟ ପରିଚୟ ଦେବା ପୂର୍ବରୁ ଆମେ ଆମର ପାଠକପାଠିକାମାନଙ୍କ ଆଗରେ କିଞ୍ଚିତ୍ ଗର୍ବ ଓ ଉଲ୍ଲାସର ସହିତ ବିଜ୍ଞପିତ କରୁଛୁ କି, ଆମ ପ୍ରକାଶିତ ଓ ତାଙ୍କର "ଅଭିଶପ୍ତ ଗନ୍ଧର୍ବ" ଗଳ୍ପ ସଙ୍କଳନଟି ଉଣେଇଶ ଅଣାଅସି, ଅଶୀ ଓ ବୟାଅସୀ ମସିହା ଭିତରେ ସର୍ବଶ୍ରେଷ୍ଠ ସାହିତ୍ୟକୃତି ରୂପେ ଚତୁର୍ଥ ସାରଳା ପୁରସ୍କାର ଅର୍ଜନ କରିଛି ।

କହିବାରେ ଦ୍ୱିଧା ନାହିଁ ଯେ, ସାମ୍ପ୍ରତିକ ଓଡ଼ିଆ କଥା ସାହିତ୍ୟରେ ନୀଳମଣି ବାବୁଙ୍କ ଗଳ୍ପଗୁଡ଼ିକ ସମାଜର ସବୁସ୍ତରୀୟ ପାଠକ ପାଠିକାମାନଙ୍କ ଭିତରେ ଯେତେ ଭବରେ ଓ ଯେଉଁପରି ଭବରେ ସମାଦୃତ ହୋଇଥାଏ—ତାହା ଖୁବ୍ କମ୍ ଲେଖକଙ୍କ ଭଗ୍ୟରେ ସମ୍ଭବ ହୁଏ । ତାଙ୍କ ଗଳ୍ପଗୁଡ଼ିକର ଏତେ ବ୍ୟାପକ ଆବେଦନର ମୂଳ କାରଣ ହେଲ— [illegible] ମଣିଷ ଜୀବନର ଓ ସମାଜର ଏକ [illegible] ଅଭିଜ୍ଞତାର ବୈଚିତ୍ର୍ୟ ଫୁଟି ଉଠିଥାଏ । ସେ କୌଣସି ଏକ ନିର୍ଦ୍ଦିଷ୍ଟ ଶ୍ରେଣୀସମାଜ ଭିତରେ ଯେମିତି ଆବଦ୍ଧ ନୁହନ୍ତି—ସେମିତି ଚତନାର ଏକ ନିର୍ଦ୍ଦିଷ୍ଟ ସ୍ତର ଭିତରେ ବି କେବେ ଆବଦ୍ଧ ରହନ୍ତି ନାହିଁ । ଷୟ ନିର୍ବାଚନ ଓ ଉପସ୍ଥାପନାରେ—ଚରିତ୍ର ନିର୍ବାଚନ ଓ ଚିତ୍ରଣରେ ପରିବେଶ ର୍ବାଚନ ଓ ବର୍ଣ୍ଣନାରେ—ଭବ ବା ଅନୁଭୂତି ଗୁଡ଼ିକର ବିଶ୍ଳେଷଣ ବା

ସଂଶ୍ଲେଷଣ ପ୍ରକ୍ରିୟାରେ—ସେ ଯେତିକି ମୁକ୍ତ, ସ୍ୱାଧୀନ, ସହଜ ଓ ସାବଲୀଳ—ସେତିକି ମଧ୍ୟ ସୁସଂଗତ, ସୁସଂହତ ଓ ସୁରସବନ୍ତ । ତାଙ୍କର ବିଷୟ ନୁଗ ବା ସ୍ଥାନକାଳପାତ୍ରୋଚିତ ଭାଷାଶୈଳୀ ମଧ୍ୟ ଅଭିବ୍ୟକ୍ତିରେ ଏତେ ବିଚିତ୍ର ଓ ଜୀବନ୍ତ ଯେ—ପୁଣି ଏତେ ସହଜ ଓ ବିଦଗ୍ଧ ଯେ—ତାହା ସବୁଶ୍ରେଣୀର ପାଠକ ପାଠିକାଙ୍କ ଅନ୍ତରକୁ ଛାଏଁ ଛାଏଁ ସ୍ପର୍ଶ କରିଯାଏ । ତାଙ୍କର ସମର୍ଥନକାରୀ ସମାଲୋଚକମାନେ ତାଙ୍କ ଗଳ୍ପ ଗୁଡ଼ିକର ଭାଷାଶୈଳୀ ଉପରେ ଖୁବ୍ ଗୁରୁତ୍ୱ ଅର୍ପଣ କରିଥାନ୍ତି । ସେମାନଙ୍କ ମତରେ ଓଡ଼ିଆ ଗଳ୍ପ ସାହିତ୍ୟରେ ଭାଷାଶୈଳୀରେ ଏତେ ବ୍ୟାପକ ବିଚିତ୍ର ପରୀକ୍ଷା ବା ପ୍ରୟୋଗ ତାଙ୍କ ଛଡ଼ା ତାଙ୍କ ସମକାଳୀନ ଆଉ କୌଣସି ପ୍ରତିଭବାନ ପ୍ରତିଷ୍ଠିତ ଗାଳ୍ପିକମାନଙ୍କ ଲେଖାରେ ଦେଖାଯାଏ ନାହିଁ ।

ଉଦାହରଣ ସ୍ୱରୂପ, 'ତାଙ୍କରି ଲେଖନୀରୁ ସୃଷ୍ଟ "ପିଙ୍ଗଳା ସେ ଅନ୍ୟ ଜଣେ" ଗଳ୍ପଟି ପଢିସାରିଲା ପରେ ଜଣେ ଯଦି "ମିଛୁ ଅବଧାନ ଦର୍ପଦଳନ ବିସମ୍ବାଦ" ଗଳ୍ପଟି ପଢେ—ତେବେ ସେ କେବେ ବିଶ୍ୱାସ କରିପାରିବ ନାହିଁ ଯେ ଶେଷୋକ୍ତ ଗଳ୍ପଟି ମଧ୍ୟ ସେଇ ଏକା ନୀଳମଣି ବାବୁ ଲେଖିଛନ୍ତି । ତାଙ୍କ ଗଳ୍ପଗୁଡ଼ିକର ଅନ୍ୟତମ ବିଶେଷତ୍ୱ ହେଲା—ତାଙ୍କର ରସିକତା ବୋଧ (Sense of humour) ହାସପରିହାସ ନିପୁଣତା ବା ବ୍ୟଙ୍ଗ ବିଦ୍ରୂପ ପରାୟଣତା । ତାଙ୍କର ବହୁ ଗଳ୍ପରେ ଏକ ଚଟୁଳ ହାସ୍ୟ ଚପଳତା ସହିତ ଏକ ଗଭୀର କାରୁଣ୍ୟର ଅଶ୍ରୁସଜଳତା ଓତଃପ୍ରୋତ ହୋଇ ମିଶି ଯାଇଥାଏ—ଏବଂ ଗୋଟିଏ ରସଧାରାରେ ପରିଣତ ହୋଇ ବହିଯାଉ ଥାଏ । ବେଳେବେଳେ ତାଙ୍କ ଗଳ୍ପଭିତରେ କଳ୍ପନା ଓ ସତ୍ୟ, ସ୍ୱପ୍ନ ଓ ବାସ୍ତବତା, ସ୍ୱର୍ଗୀୟତା ଓ ମର୍ତ୍ତ୍ୟତା, ବେଦନ ଓ ରସିକତା, ଗାମ୍ଭୀର୍ଯ୍ୟ ଓ ଚପଳତା, ଆବେଗ ଓ ଯୁକ୍ତି, ବିଦ୍ରୂପ ଓ କରୁଣା, ସ୍ଥୂଳତା ଓ ସୂକ୍ଷ୍ମତା ଏପରି ଭାବେ ମିଶି ଏକାକାର ହୋ[illegible] ଯାଇଥାଏ ଯେ ତାଙ୍କର ବିପକ୍ଷ ସମାଲୋଚକମାନେ ଏଥିଲାଗି ତାଙ୍କୁ ପ୍ରଥମ ଶ୍ରେଣୀୟ [illegible] କର ମର୍ଯ୍ୟାଦା ଦେବାକୁ କୁଣ୍ଠିତ ହୁଅନ୍ତି । କିନ୍ତୁ ଏ ସମ୍ବନ୍ଧେ ଲେଖକଙ୍କର ନିଜମତ ହେଲା—"ମୁଁ ନିଜେ ମୋ ଜୀବନରେ କିମ୍ବା ଅନ୍ୟର ଜୀବନରେ ଦୁଇ ରୀତଭାବକୁ ପୃଥକ୍ ଭାବେ ପ୍ରକାଶ ପାଇଥିବାର ଦେଖିନାହିଁ କି ଅନୁଭ[illegible]

କରିନାହିଁ । ବାସ୍ତବ ଜୀବନରେ ବିଭିନ୍ନ ବୈପରିତ୍ୟ ଗୁଡ଼ିକ ଭିତରେ ଯେମିତି କିଛି ଅଛିଦ୍ରପ୍ରାଚୀର ମୁଁ କେବେ ଲକ୍ଷ୍ୟ କରିନାହିଁ । ବରଂ ମୁଁ ଭଲ ଭାବରେ ଲକ୍ଷ୍ୟ କରିଛି ଯେ–ଜୀବନର ଅତି ଗୁରୁତ୍ୱପୂର୍ଣ୍ଣ ସଙ୍କଟ ମୁହୂର୍ତ୍ତ ଗୁଡ଼ିକ ଉପରେ ହଠାତ୍ ନାଟକୀୟ ଭାବେ କୁଆଡ଼ୁ ଗୋଟିଏ ଅତି ଲଘୁଚପଳ ହାସ୍ୟକର ହାଓଆ ହଠାତ୍ ଆସି ବହି ଚାଲିଯାଏ । ଜୀବନର ଅତି ସୂକ୍ଷ୍ମ ସୁକୁମାର ସୁଲଳିତ ସୁଗଭୀର ଅନୁଭୂତିମୟ ସପ୍ନିଳ ମୁହୂର୍ତ୍ତ ଗୁଡ଼ିକ ଉପରେ ହଠାତ୍ କେମିତି କୁଆଡ଼ୁ ଏକ ଅତିସ୍ଥୂଳ, ରୁକ୍ଷ, ରୂଢ଼ ବାସ୍ତବତାର ଅଟ୍ଟହାସ୍ୟମୟ ଝଞ୍ଜା ହଠାତ୍ ଆସି ବହି ଚାଲିଯାଏ । ଏକଥା ମଧ୍ୟ ସତ ଯେ ମୁଁ ସେହିପଟଟିକୁ ପୂର୍ବ ପଟ ଅପେକ୍ଷା ଗୌଣକରି ଦେଖାଏ । ମାତ୍ର ପୁରା ଲୁଚାଇ ଦିଏ ନାହିଁ । ଲୋପକରି ଦିଏନାହିଁ–ଯେପରି ଅନ୍ୟମାନେ କରନ୍ତି ।

ଲେଖକ ନିଜର ବକ୍ତବ୍ୟକୁ ଆହୁରି ପ୍ରାଞ୍ଜଳ କରିବାକୁ ଯାଇ ଦୁଇଟି ଉଦାହରଣ ଦେଇ କହନ୍ତି–

"କୌଣସି ଦୃଶ୍ୟର ଚିତ୍ର ଗ୍ରହଣ କଲାବେଳେ ମୁଁ ଦୃଶ୍ୟଟିକୁ ମୋ କାମେରା ପାଇଁ ସଜ୍ଜିତ ବା ପ୍ରସ୍ତୁତ କରି ରଖେ ନାହିଁ । ସେହିପରି କୌଣସି ଶବ୍ଦ ବା ସ୍ୱରକୁ ରେକର୍ଡ କଲାବେଳେ ଚାରିଆଡ଼ୁ ଝରକା ଦୁଆର ବନ୍ଦ କରିଦେଇ ମୋ ଟେପରେକର୍ଡରର ସୁଇଚ ଖୋଲେ ନାହିଁ । ତେଣୁ ବେଦୀ ଉପରେ ଝିଅଜୋଇଁଙ୍କର ହାତଗଣ୍ଠି ପଡ଼ୁଥିବା ଗୁରୁତ୍ୱପୂର୍ଣ୍ଣ ଫଟୋଟି ଉଠାଇ ସାରି ମୁଁ ଦେଖେ ଯେ ଖୁବ୍ ସ୍ପଷ୍ଟଭାବେ ଉଠିଥିବା ସେଇ ଦୃଶ୍ୟଟି ସହିତ ବେଦୀତଳେ ସେଇ ଏକା ମୁହୂର୍ତ୍ତରେ ପରସ୍ପର ଅଧିକାର ପାଇଁ କାମୁଡ଼ାକାମୁଡ଼ି ହେଉଥିବା ଦୁଇଟି ଘେଗିଣା ବୁ[illegible] କୁକୁରଙ୍କର ଦୃଶ୍ୟଟି ମଧ୍ୟ ଯେତେ ଆଂଶିକ ବା ଅସ୍ପଷ୍ଟ ହେଲେ ବି ଉଠିଯାଇଛି । [illegible]ବି ଦାସଙ୍କ ପଟ୍ଟନାୟକଙ୍କର ଲଳିତ ଖେୟାଲ ସଙ୍ଗୀତଟିକୁ ମୋ ରେଡିଓରୁ ଟେପ୍ ରେକର୍ଡିଙ୍ଗ୍ କରିସାରି–ପରେ ସେହି ଟେପ୍‌ଟିକୁ ବଜାଇ ମୁଁ ଶୁଣିବାକୁ ପାଏ ଯେ, ଗୀତ ମଝିରେ ମଝିରେ ମୋ ବାଡ଼ିପଟେ ଆମ୍ବଗଛ ଡାଳରେ ବସି ରାବୁଥିବା ନିଃସଙ୍ଗ କୁଆଟିର କର୍କଶ କାକାରବ ମଧ୍ୟ ଯେତେ କ୍ଷୀଣ ହେଲେ ବି ତା' ସହିତ ବାଜିଉଠୁଛି । ତେଣୁ ମୋତେ ଯେ ଯାହା କହନ୍ତୁ–ନିନ୍ଦନ୍ତୁ ନୀତିନିପୁଣାଃ ଯଦିବା ସ୍ତୁବନ୍ତୁ–

ଏହାହିଁ ମୋର ସ୍ୱାଭାବିକ ଶିଳ୍ପୀ–ଧର୍ମ । ଏବଂ ପ୍ରତ୍ୟେକ ସତ୍‌ଶିଳ୍ପୀର ଏହି ସ୍ୱଧର୍ମକୁ ନ ବୁଝିପାରିଲେ–କେହି ତା' କୃତିର ମର୍ମ ବୁଝି ପାରିବେ ନାହିଁ । ମଧ୍ୟ ଉପଭୋଗ କରିପାରିବେ ନାହିଁ ।"

ଏହି ସ୍ୱାଭିମାନୀ ଏବଂ କିଞ୍ଚିତ୍ ଅହଙ୍କାରୀ ଲେଖକଙ୍କ ସ୍ୱମୁଖରୁ ତାଙ୍କ ନିଜ ପକ୍ଷ ସମର୍ଥନରେ ନିଃସୃତ ଯେଉଁ ବକ୍ତବ୍ୟଟି ଆମେ ଏଠାରେ ଉଦ୍ଧୃତ କଲୁ–କହିବା ବାହୁଲ୍ୟ ଯେ ତାଙ୍କର ବହୁ ସପକ୍ଷ ସମାଲୋଚକ, ବହୁ ମୁଗ୍ଧ ଅନୁଗାମୀ ଓ ଭକ୍ତ ଏବଂ ଅସଂଖ୍ୟ ଅନୁରକ୍ତ ପାଠକ ପାଠିକା ତାଙ୍କ ପ୍ରିୟ ଲେଖକଙ୍କ ସମ୍ବନ୍ଧେ ସେହି ଏକା ମତହିଁ ଆଜି ପର୍ଯ୍ୟନ୍ତ ପୋଷଣ କରି ଆସିଛନ୍ତି ଓ ତାଙ୍କ ଲେଖା ପଛରେ ଏବଂ ତାଙ୍କ ପଛରେ ଆଜି ପର୍ଯ୍ୟନ୍ତ ବି ଲାଗି ରହିଛନ୍ତି ।

ଏବଂ ଏକଥା ବି ସତ ଯେ, ସ୍ୱାଧୀନତା ପରବର୍ତ୍ତୀ କାଳଠାରୁ ଆଜି ପର୍ଯ୍ୟନ୍ତ ଏତେ ଦୀର୍ଘ କାଳଧରି ନୀଳମଣି ବାବୁ ଅବିଶ୍ରାନ୍ତ ଭାବରେ ତାଙ୍କର ଲେଖନୀ ଚାଳନା କରି ଆସିଛନ୍ତି ଓ କେବଳ ଗଳ୍ପ ନୁହଁ–ଉପନ୍ୟାସ, ରମ୍ୟରଚନା, ପ୍ରବନ୍ଧ, ସମାଲୋଚନା, କବିତା ଏବଂ ନାନାବିଧ ସରସ ରଚନା ଦ୍ୱାରା ତାଙ୍କର ପାଠକ ପାଠିକା ମାନଙ୍କୁ ଦୀର୍ଘ ତିରିଶି ବର୍ଷ ଧରି ମୁଗ୍ଧ କରି ରଖି ଆସିଛନ୍ତି । ଓଡ଼ିଶାର ଯେ କୌଣସି ମାସିକ ସାହିତ୍ୟ ପତ୍ରିକାର ବିଶେଷ ସଂଖ୍ୟାମାନଙ୍କରେ ନୀଳମଣି ବାବୁଙ୍କର ଗଳ୍ପଟିଏ ପଢିବାକୁ ପାଠକ ପାଠିକାମାନଙ୍କ ଆନ୍ତରିକ ଉତ୍ସାହ ବହୁବାର ଲକ୍ଷ୍ୟ କରାଯାଇଛି ।

ତାଙ୍କର ଗଳ୍ପଗୁଡ଼ିକ ପଢି ସାରିଲା ପରେ ପାଠକଙ୍କର ମନରେ ଜୀବନର ଉଚ୍ଚତମ ମୂଲ୍ୟ ଗୁଡ଼ିକ ପ୍ରତି ଶ୍ରଦ୍ଧା ଜାଗ୍ରତ ହୋଇଥାଏ । ଏବଂ [illegible] ଯନ୍ତ୍ରଣା ଭିତରେ ବି ଜୀବନ ପ୍ରତି ଅନୁରାଗ ବା[illegible] ବୃଦ୍ଧି ପାଇଥାଏ । ଅନେକ ସମୟରେ ମଣିଷ ଜୀବନର ଏହି ରୁକ୍ଷ କଠୋର ପାର୍ଥିବ ପରିସ୍ଥିତି ଭିତରେ ବି କିଛି କିଛି ସୂକ୍ଷ୍ମ ଓ ସୁକୁମାର ଲୋକୋତ୍ତର ଚେତନାର ଅମୃତ ସ୍ୱାଦ ମିଳିଥାଏ । କେବେ ପୁଣି ନୈରାଶ୍ୟର ଘମାଘୋଟ ଅନ୍ଧକାର ଭିତରେ ଆଶା, ବିଶ୍ୱାସ, ପ୍ରତ୍ୟୟ ଓ ପ୍ରେମପ୍ରୀତିର ଆଶ୍ୱାସନାମୟ ବିଦ୍ୟୁତାଲୋକ ହଠାତ୍ ଉଦ୍‌ଭାସିତ ହୋଇ ଉଠେ ।

ଆମପକ୍ଷରେ ଆନନ୍ଦର କଥା ଯେ ଆମେ ତାଙ୍କର ନବତନଗଳ୍ପ ସଙ୍କଳନ "ବୃନ୍ଦାବନର ଶେଷଧୂପ" କାଠିଟି ଆମର ପ୍ରିୟ ପାଠକ ପାଠିକାଙ୍କ ଚିତ୍ତ-ପ୍ରକୋଷ୍ଠରେ ଲଗାଇ ଦେଉଛୁ । ଆମର ଆଶା, ତାର ଶାନ୍ତ ମଧୁର ପୂତ-ସୌରଭରେ ସମସ୍ତଙ୍କର ପ୍ରାଣମନ ପୂରି ଉଠିବ ।

ଏହି ସଙ୍କଳନଟିର ଅଧିକାଂଶ ଗଳ୍ପ ମୁଖ୍ୟତଃ ପଞ୍ଚଜନ୍ୟ, ସମାବେଶ, ଓ ଧରିତ୍ରୀର ବାର୍ଷିକ ସଂଖ୍ୟା ମାନଙ୍କରେ ପ୍ରକାଶ ପାଇଥିଲେ। ଏବଂ ସେଗୁଡ଼ିକ ପାଠକ ପାଠିକାଙ୍କ ଶୁଭଦୃଷ୍ଟି ଆକର୍ଷଣ କରିଥିଲେ । କହିବା ବାହୁଲ୍ୟ ଯେ ଏହି ସଙ୍କଳନସ୍ଥ ଦୀର୍ଘାକୃତି ବିଶିଷ୍ଟ ଗଳ୍ପ ଗୁଡ଼ିକ ତାଙ୍କର ଅନ୍ୟାନ୍ୟ ସଙ୍କଳନସ୍ଥ ଗଳ୍ପଗୁଡ଼ିକ ଠାରୁ ବିଷୟବସ୍ତୁ, ଭବ ଓ ରଚନା ଶୈଳୀରେ ବହୁ ପରିମାଣରେ ପୃଥକ । ଏ ଗଳ୍ପ ଗୁଡ଼ିକର ଚରିତ୍ର ଓ ପରିବେଶ ପ୍ରାୟ ହିଁ ଦେବାଦେବୀ ଓ ଦେବାଳୟ ମାନଙ୍କୁ ନେଇ ଗଠିତ ହୋଇଛନ୍ତି କେତେକ ଗଳ୍ପ ପୁଣି ଲୌକିକ କିମ୍ବଦନ୍ତୀମାନଙ୍କୁ ଆଶ୍ରୟ କରିଥିଲା ବେଳେ, ଆଉ କେତେକ ପୁଣି ଲେଖକଙ୍କର ନିଜସ୍ୱ ଅଭିଜ୍ଞତା ଓ ଅନୁଭୂତି ଭିତରୁ ସମ୍ଭବ ହୋଇଛନ୍ତି । ତେଣୁ ରଚନା ଶୈଳୀରେ କେବେ କେଉଁଠି ଯଦି ପୌରାଣିକ ବାଚନଭଙ୍ଗୀ ଫୁଟି ଉଠିଛି—କେବେ ପୁଣି କେଉଁଠି ପ୍ରଗଲ୍‌ଭକଥକତାର ଛନ୍ଦ ଓ ସ୍ୱର୍ ମଧ୍ୟ ଫୁଟି ଉଠିଛି ।

ଭଷା ମଧ୍ୟ କେବେ ଦିବ୍ୟ, କେବେବା ଅଦିବ୍ୟ, କେବେ ପୁଣି ଦିବ୍ୟାଦିବ୍ୟ ମିଶାମିଶି । ମନେହୁଏ—ପ୍ରାଚୀନ ମହାଜନମାର୍ଗ—ପରମ୍ପରସିଦ୍ଧ ଏହି ମିଶ୍ର ଭଷାଶୈଳୀ ହିଁ ଏ ବହିଟିର ଗଳ୍ପଗୁଡ଼ିକର ବ୍ୟାଖ୍ୟାନ ଲଗି ପ୍ରଶସ୍ତ ମାଧ୍ୟମ । ପ୍ରତିଟି ଗଳ୍ପରେ ପୁଣି କିଞ୍ଚିତ୍ ସ୍ୱପ୍ନମୟତା, କିଛି କିଛି ବାସ୍ତବତା, କିଛିକିଛି ଆବେଗାତ୍ମକ ବିଶ୍ୱାସ, କିଛିକିଛି ଚିରନ୍ତନ ପ୍ରତିଷ୍ଠିତ ମୂଲ୍ୟ ଗୁଡ଼ିକ ପ୍ରତି ସମ୍ଭ୍ରମ ଅବା ମର୍ଯ୍ୟାଦାବୋଧ, କିଞ୍ଚିତ୍ ହାସ ପରିହାସ, କିଛିକିଛି ବ୍ୟଙ୍ଗ ବିଦ୍ରୂପ ଏବଂ କିଞ୍ଚିତ୍ କାରୁଣ୍ୟ ଓ ବିଷାଦ ବୋଧର ଏକ ବ୍ୟାମିଶ୍ର ପ୍ରଭବ ମଧ୍ୟ ପାଠକ ପାଠିକାଙ୍କୁ ଏକ ଅଭିନବ ରସାସ୍ୱାଦନ ପାଇଁ ସୁଯୋଗ ଦେଇଛି ।

ପରିଶେଷରେ ଯେଉଁ ପାଠକ ପାଠିକାମାନେ ନୀଳମଣିବାବୁଙ୍କର "ଅଭିଶପ୍ତ ଗନ୍ଧର୍ବ" ପଢିସାରି ତାଙ୍କ ପାଖରୁ ଆଉ ଖଣ୍ଡିଏ ଗଳ୍ପ ବହି ପଢିବାକୁ ଖୁବ୍ ବ୍ୟାକୁଳ ହୋଇ ଆଶାକରି ରହିଥିଲେ—ସେମାନଙ୍କର ହାତରେ ଆମେ ଆଜି ଏହି "ବୃନ୍ଦାବନର ଶେଷଧୂପ" ଟି ବଢ଼ାଇ ଦେଇ ନିଜକୁ କୃତାର୍ଥ ମନେ କରୁଛୁ ।

**ପ୍ରକାଶକ**

# ଏଥିରେ ଅଛି--



ମୁଦ୍ରଣ ପ୍ରମାଦ ଯୋଗୁ ପୃଷ୍ଠା ୧୮୪ ପରେ ୧୮୫ ନ ହୋଇ

୧୮୭ ହୋଇ ଯାଇଛି ।

# ମୁଁ କାହିଁକି ଲେଖେଁ ?

ମୁଁ କାହିଁକି ଲେଖେଁ ? ଏ ପ୍ରଶ୍ନ ମତେ କିଏ ପଚାରିଲେ ମତେ ବଡ଼ ଅସ୍ୱସ୍ତି ଲାଗେ । ଯଦିଓ ଏ ପ୍ରଶ୍ନ ମୋତେ ମୋର ବାଲ୍ୟକାଳରୁ ବହୁ ଲୋକ ପଚାରି ଆସିଛନ୍ତି । କିନ୍ତୁ ଏ ପର୍ଯ୍ୟନ୍ତ କାହାକୁ ଏ ପ୍ରଶ୍ନର ଉତ୍ତର ଦେଇନାହିଁ । ଦେଇପାରି ନାହିଁ । କଣ ଉତ୍ତର ଦେବି ? ଆପଣ କ'ଣ ସୂର୍ଯ୍ୟଙ୍କୁ ପଚାରିବେ– ସେ କାହିଁକି ଆକାଶର ଦୀପରେ ନିତିପ୍ରତି ଜଳୁଛନ୍ତି ? ଚନ୍ଦ୍ରଙ୍କୁ ପଚାରିବେ– ସେ କାହିଁକି ସୁଧାମୟ ଜ୍ୟୋତ୍ସ୍ନାରେ ରାତିର ପୃଥିବୀକୁ ଆହ୍ଲାଦିତ କରନ୍ତି ? ମେଘମାନଙ୍କୁ ପଚାରିବେ—ସେମାନେ କାହିଁକି ସପ୍ତ ସମୁଦ୍ରରୁ ଜଳ ଶୋଷଣ କରି, ପୃଥିବୀ ଉପରେ ବୃଷ୍ଟି ରୂପରେ ଝରି ପଡ଼ୁଛନ୍ତି ? ଫୁଲଟିକୁ ପଚାରିବେ କି—ସେ କାହିଁକି ତାର ରୂପ ରଙ୍ଗ ଆଉ ବାସ ଚହଟାଇ ଫୁଟିରହିଛି ? ଆପଣ ପଚାରି ପାରନ୍ତି । ସେମାନେ କିନ୍ତୁ ଉତ୍ତର ଦେବେ ନାହିଁ । ନୀରବ ରହିବେ । ତା'ମାନେ ନୁହଁ ଯେ ସେମାନେ ଆପଣଙ୍କ ପ୍ରଶ୍ନକୁ ଉପେକ୍ଷା କରୁଛନ୍ତି । ଅସଲ କଥାଟି ହେଲା, ସେମାନେ ଏହାର କି ଉତ୍ତର ଦେବେ ? ଯଦି ନିତାନ୍ତ ଆପଣ ଉତ୍ତର ଚାହାନ୍ତି, ତେବେ ସେମାନଙ୍କର ବିଧାତାକୁ—ଯେ ସେମାନଙ୍କୁ ସୃଷ୍ଟି କରି ଏଇ କାମରେ ନିୟୋଜିତ କରିଛନ୍ତି—ତାଙ୍କୁ ଯାଇ ପଚାରନ୍ତୁ ।

ମୋ କଥା ବି ଜାଣନ୍ତୁ, ଗୋଟିଏ ଦିଗରୁ ସେହିମିତି । ମା’ ପେଟରୁ କବିଟିଏ ହୋଇ ଜନ୍ମ ହୋଇଛି । ସାହିତ୍ୟିକର କଳା ନେଇ ଜନ୍ମ ହୋଇଛି । ନବ ନବ ଉନ୍ମେଷଶାଳିନୀ ପ୍ରଜ୍ଞା ନେଇ ଜନ୍ମ ହୋଇଛି । ଖୁବ୍ ତୀବ୍ର ତୀକ୍ଷ୍ଣ ସଂବେଦନ-ଶୀଳ ଜ୍ଞାନେନ୍ଦ୍ରିୟମାନଙ୍କୁ ନେଇ ଜନ୍ମ ହୋଇଛି । ପାଇଛି ମଧ୍ୟ ଅପୂର୍ବ ସୃଜନଶୀଳ କଳ୍ପନାଶକ୍ତି । ଅଣାକାରକୁ ଆକାର ଦେଇ ପ୍ରମୂର୍ତ୍ତ କରିପାରିବାର ଅସାଧାରଣ କ୍ଷମତା । ତେଣୁ ତ ମୁଇଁ କେବଳ ଏ ପୃଥିବୀକି ଗଭୀର ଭାବେ ହୃଦୟ ଦେଇ ଦେଖିବି । ଏହା ସଙ୍ଗେ ସଂପୃକ୍ତ ହୋଇ ଯା’କୁ ଭଲ ପାଇବି । ଏହାର ଗୁଣ-ଦୁର୍ଗୁଣ, ପାପ-ପୁଣ୍ୟ, ଉତ୍ଥାନ-ପତନ, ସବୁକିଛିକୁ ମୋର ନିଜର ବୋଲି ଭାବିବି । ନିତ୍ୟ ଏହାର ମଙ୍ଗଳ ମନାସିବି । ମୋର ଏହି ପ୍ରିୟ ପୃଥିବୀ ଯେମିତି ବର୍ତ୍ତମାନ ଠାରୁ ଆହୁରି ଟିକିଏ ଅଧିକ ସୁନ୍ଦର ହୁଏ, ଆହୁରି ଟିକିଏ ଅଧିକ ମଧୁର ହୁଏ, ସହନୀୟ ହୁଏ, ଆଉରି ଟିକିଏ ମହନୀୟ ହୁଏ, ଆଉରି ଟିକିଏ ଅଧିକ ସୁସଙ୍ଗତ ହୁଏ, ସୁବୋଧ୍ୟ ହୁଏ, ଆଲୋକିତ ହୁଏ ଏବଂ ସର୍ବୋପରି ଏହାର ସ୍ରଷ୍ଟା ଓ ଲକ୍ଷ୍ୟର ଆଉରି ଟିକିଏ ଅଧିକ ନିକଟବର୍ତ୍ତୀ ହୁଏ, ସେଇ କଥାରେ ମୁଁ ଦିନ ରାତି ଘାରି ହେବି । ପୁଣି, ସେହି ଦିଗରେ ଯାହା କିଛି କରିବାର ଥାଏ, ସେ କଥାମାନ ଭାବିବି—ମୋ ଦେହାତି ଯାହା ଯେତିକି ହୋଇପାରିବ, ସେ କଥାମାନ କରିବି ଏବଂ ସେହି ଦିଗରେ ହଜାର ହଜାର ବର୍ଷ ଧରି ଯେଉଁ ମହାନ୍ ମଣିଷମାନେ ଯେଉଁ ବାଟରେ ଯେଉଁସବୁ ସାଧ୍ୟସାଧନା, ଯଶକୀର୍ତ୍ତି ଆଉ ସିଦ୍ଧି ଋଦ୍ଧି କରିଯାଇଛନ୍ତି, ସେମାନଙ୍କର ଗୁଣସବୁ ସୁମରି ସୁମରି ନିଜ ଭିତରେ ଅନୁକ୍ଷଣେ ବିଗଳିତ ହେଉଥିବି ଏବଂ ଏହାପରେ ମୋ ହୃଦୟରୁ ଯୋଉସବୁ କଥାମାନ ଯୋଉପ୍ରକାର ଭାଷା ଆଉ ଛନ୍ଦରେ ସ୍ୱତଃ ସହଜ ଭାବେ ବାହାରି ଆସିବ, ତାକୁ ପାଟିରେ କହି ଚାଲିବି । ନହେଲେ କଲମ ଧରି ଲେଖି ଚାଲିବି । ମୋର ମନେହୁଏ, ମୁଁ ଯଦି ମୂଳରୁ ସଙ୍ଗୀତଜ୍ଞ ହୋଇଥାନ୍ତି, ତେବେ ବୀଣା ବଜାଇ ଗୀତ ଗାଉଥାନ୍ତି । ଯଦି ଚିତ୍ରକର ହୋଇଥାନ୍ତି, ତେବେ ତୂଳୀ ରଙ୍ଗ ଧରି ଛବି ଆଙ୍କୁଥାନ୍ତି । ଯଦି ଶିଳ୍ପୀ ହୋଇଥାନ୍ତି, ନିହାଣ ମୁଗୁର ଧରି ମୂର୍ତ୍ତି ଗଢୁଥାନ୍ତି । କିନ୍ତୁ ମୁଁ ଏ କଥା ମଧ୍ୟ ଭାବେ ଯେ, ଆମ ସମସ୍ତେ ସେଇ ଗୋଟିଏ କାମ କରି ଚାଲିଛୁ । କଲମ କଣ ମୋ ହାତର ବୀଣା ନୁହଁ, ନା ତୂଳୀ ନୁହଁ, ନା ମୁଗୁର ନୁହଁ ? ସେମିତି ଶିଳ୍ପୀ ହାତର ନିହାଣ ମୁଗୁର ବି କଣ କଲମ ନୁହଁ ନା ବୀଣା ନୁହଁ ?

ଅସଲ କଥା ହେଲା 'ଗାନ' । ଆମେ ସଙ୍ଗୀତଜ୍ଞ, ଶିଳ୍ପୀ ଓ ଲେଖକମାନେ ସମସ୍ତେ ଏଇ ପୃଥିବୀର ମର୍ମକଥାକୁ ଶୁଣିବା ଲାଗି ସର୍ବଦା କାନପାତି ରହିଛୁ ଓ କିଛି ଶୁଣିବା ମାତ୍ରେଇ ତାକୁ ଅନ୍ୟମାନଙ୍କ ଆଗରେ ଗାଇ ଚାଲିଛୁ । ଏ ପୃଥିବୀର ସବୁ ରୂପ, ରସ, ଗନ୍ଧ, ଶବ୍ଦ ଓ ସ୍ପର୍ଶ ସବାଶେଷରେ ଗୋଟିଏ 'ଗାନ'ରେ ପରିଣତ ହୋଇ ଯାଉଛି । ଗୋଟିଏ ଦିଗରୁ ଦେଖିଲେ ଚିତ୍ରକରର ଛବି ମଧ୍ୟ ଗୋଟିଏ ଗାନମୟ ରୂପ । ଏହି ପ୍ରକାଶମାନ ବିଶ୍ୱର ଯେ ସ୍ରଷ୍ଟା, ଯେ ଏ ପୃଥିବୀରେ ସବୁ ଲୀଳାଖେଳାର ସୃଷ୍ଟି କରି ନିଜେ ସେହି ଲୀଳାଖେଳରେ ଆଦିଅନ୍ତ ବୁଡ଼ି ରହିଛନ୍ତି, ସେହି ତ ମତେ ମୋର ଜନ୍ମ ପୂର୍ବରୁ ମାତୃଗର୍ଭରେ ମୋର ସଞ୍ଚାର ମୂହୂର୍ତ୍ତରେ, ମୋ ଭିତରେ ସେହି ସୃଜନ ପ୍ରତିଭାଟି, ସେହି ନିତ୍ୟପ୍ରବୃତ୍ତ ପ୍ରସ୍ରେଦନାଟି, ସେହି ବିଶେଷଧର୍ମଟି ସଞ୍ଚାରି ଦେଇଛନ୍ତି । ମୋର ବିଶ୍ୱାସ, ମୋ ଭିତରେ ସେହି ଦିନୁଁ ସେ ଅଲକ୍ଷ୍ୟରେ ଅବସ୍ଥାନ କରି ମତେ ପ୍ରତି ମୂହୂର୍ତ୍ତରେ ଆଦେଶ ଦେଉଛନ୍ତି, ପ୍ରେରଣା ଦେଉଛନ୍ତି—''ଆରେ ! ମୋର ଏଇ ସୃଷ୍ଟିର ଲୀଳା-ଖେଳାକୁ ହୃଦୟ ଦେଇ ଦେଖ୍—ଏଥିସହ ଅମ୍ଳାରେ ସଂପୃକ୍ତ ହୁଅ । ଆଉ ଶେଷରେ ଯାହା କିଛି ଅନୁଭବ କଲୁ, ଯାହା କିଛି ଯା'ର ଅର୍ଥ ବୁଝିଲୁ, ତାକୁ ନେଇ ଗାନ ଆରମ୍ଭ କର । ତାକୁଇ ବର୍ଣ୍ଣନା କରି ଚାଲ । ତୋତେ ମୁଁ ଶବ୍ଦ ପରେ ଶବ୍ଦ ଯୋଗାଇ ଚାଲିବି । ଅସଂଖ୍ୟ ଛନ୍ଦ ଆଉ ଶୈଳୀର ଭଣ୍ଡାର ତୋ' ଆଗରେ ଖୋଲିଦେବି । ଅସଂଖ୍ୟ ସୁର୍ ମୁଁ ତୋତେ ଧରେଇ ଦେବି । ସେହି ସବୁର ମାଧ୍ୟମରେ ପ୍ରକାଶ କର ମୋର ଏହି ସୃଷ୍ଟିର ଜୀବନଲୀଳାର ରହସ୍ୟମାନଙ୍କୁ । ତାହା ହିଁ ହେବ ତୋର ନିଜର ମଧ୍ୟ ଆତ୍ମପ୍ରକାଶ ; ଯାହା ଅବ୍ୟକ୍ତ ମୁଁ ତାକୁ ବ୍ୟକ୍ତ କରୁଛି । କିନ୍ତୁ ମୋର ଏହି ବ୍ୟକ୍ତଲୀଳା ମଧ୍ୟ ଅନ୍ୟ ପାଖରେ ରହସ୍ୟ ହୋଇ ରହିଯାଉଛି । ମୁଁ ଈଶ୍ୱର,' ତେଣୁ ମୁଁ ଅବ୍ୟକ୍ତର ପ୍ରଜାପତି । ତୁ ମଧ୍ୟ ଜଣେ ମୋରି ଭଳି ସ୍ରଷ୍ଟା । ମାତ୍ର ତୁ ହେବୁ ବ୍ୟକ୍ତର ପ୍ରଜାପତି । ତୁ କବି । ତେଣୁ ତୁ ମୋ ବ୍ୟକ୍ତ ବିଶ୍ୱର ଲୀଳାକୁ ନେଇ ଅନ୍ୟ ଏକ କାବ୍ୟଜଗତ ନିର୍ମାଣ କର ଏବଂ ଏହିସବୁ ଅନ୍ୟ ଲୋକ-ମାନେ ତୋ' ଜଗତର ସାହାଯ୍ୟରେ ମୋ ଜଗତର ମର୍ମକୁ ହୃଦୟଙ୍ଗମ କରିପାରିବେ । ତୁ ହେବୁ ବିଶ୍ୱ ଓ ମୋ ଭିତରେ ବୁଝାମଣାର ସେତୁ ଆଉ ମାଧ୍ୟମ ।

ଏ ଜଗତର ଅନ୍ୟ ମଣିଷମାନେ କେବଳ ବଞ୍ଚନ୍ତି । ବଞ୍ଚି ରହିବାର କୌଶଳ-ମାନ ଆବିଷ୍କାର କରନ୍ତି—ଉଦ୍ଭାବନ କରନ୍ତି । କିନ୍ତୁ ବଞ୍ଚିବାର ବିଚିତ୍ର ଅନୁଭବ ଶକ୍ତି ସେମାନଙ୍କର ନାହିଁ । ସେମାନଙ୍କର ଚିତ୍ତଭୂମି ବିଗଳିତ ହୁଏ ନାହିଁ ଏବଂ ଚିତ୍ତ ବିଗଳିତ ନ ହେଲେ ବଞ୍ଚିବାର ରସବୋଧ ହୁଏ ନାହିଁ । ରସବୋଧ ହିଁ ଆନନ୍ଦ । ଅବିଗଳିତ-ଚିତ୍ତ-ବ୍ୟକ୍ତିମାନେ ସୁଖ ଦୁଃଖ ଭୋଗ କରନ୍ତି । ମାତ୍ର ଆନନ୍ଦବୋଧ କରନ୍ତି ନାହିଁ । ସବୁ ସୁଖ ଦୁଃଖ ଅନୁଭବର ଅତିରିକ୍ତ ଯେ ଆନନ୍ଦବୋଧ ତାହା ଚିତ୍ତର ବିଗଳନ କିମ୍ବା ବିସ୍ତାରଣ ନ ହେଲେ ଆସେ ନାହିଁ । ତେଣୁ ଜୀବନର ଚମତ୍କାରିତା ସେମାନେ କାହୁଁ ବୁଝିବେ ? ସେମାନେ ଜୀବନର ଉପରିଭାଗରେ ବାହ୍ୟବିଭବକୁ ନେଇ ବଞ୍ଚୁଥାନ୍ତି । ସେମାନଙ୍କ ପାଖରେ ଘଟଣାଗୁଡ଼ିକର ଅର୍ଥ ଧରାପଡ଼େ ନାହିଁ । ସେମାନଙ୍କ ଆଖିରେ ଚରିତ୍ରମାନଙ୍କର ଅନ୍ତଃକରଣ ଦୃଶ୍ୟ ହୁଏନାହିଁ । ଭାବମାନେ ମୂର୍ତ୍ତି ଧରି ସେମାନଙ୍କ ଆଗରେ ଠିଆ ହୋଇଯାନ୍ତି ନାହିଁ । ବିଗ୍ରହ ସେମାନେ—ଯୋଉଠି ହସିବାର କଥା ସେଠି କାନ୍ଦୁଥାନ୍ତି । ଯୋଉଠି କାନ୍ଦିବାର କଥା, ସେଠି ହସୁଥାନ୍ତି । ଯୋଉଠି ଆଗେଇ ଯିବାର କଥା, ସେଠି ପଛେଇଯାନ୍ତି । ଯୋଉଠି କରୁଣା କରିବା କଥା. ସେଠି ଘୃଣା କରନ୍ତି । ଯାହାକୁ ପ୍ରେମ କରିବା କଥା, ତାକୁ ହିଂସା କରନ୍ତି । ଯୋଉଠି ତ୍ୟାଗ କରିବା କଥା, ସେଠି ଭୋଗ କରିବାକୁ ଉନ୍ମତ୍ତ ହୋଇ ଉଠନ୍ତି । ଏହିଭଳି ସେମାନଙ୍କ ପ୍ରତି ତୋର କର୍ତ୍ତବ୍ୟ ଅଛି । ଜୀବନର ଅସଲ ଭାବଗୁଡ଼ିକୁ ଶବ୍ଦମାନଙ୍କ ଭିତରେ ବିଗ୍ରହବନ୍ତ କରି ସେମାନଙ୍କ ହୃଦୟରେ ସାମ୍ବାଦିତ କର—ସମ୍ବେଦିତ କର । ତଦ୍ଦ୍ୱାରା ସେହି ମୂଢ଼ଚେତାମାନଙ୍କର ଚିତ୍ତ ବିଗଳିତ ହେବ—ନତୁବା ବିସ୍ତାରିତ ହେବ । ଏଇ ଉଦ୍ଦେଶ୍ୟରେ ତୁ ଲେଖିଗଲ । ତୋର ଲେଖା ଭିତରେ ଏହି ଦ୍ରବୀକରଣ ଶକ୍ତି, ସ୍ଫଟିକରଣ କ୍ଷମତା ସଞ୍ଜୀବିତ ହୋଇ ରହୁ । ଏ ପୃଥିବୀର ଭୌତିକ ଘଟଣା ଓ ଚରିତ୍ରଗୁଡ଼ିକୁ ଭାବଗର୍ଭିତ ଶବ୍ଦମାନଙ୍କ ଭିତରେ ପୁନର୍ବାର ରୂପାୟନ କର । ମୋର ଏହି କ୍ଷର ପୃଥିବୀର କ୍ଷର ଲୀଳାଖେଳାକୁ ଅକ୍ଷରମୟ କରି ତୋଳିଧର । ତୋର ଚତୁଃପାର୍ଶ୍ୱରେ ଥିବା ଅଭାବୀ ହୃଦୟଗୁଡ଼ିକୁ ଭାବପୂର୍ଣ୍ଣ କରିବା ଲାଗି ତୋର ସାଧନା ଅବ୍ୟାହତ ରହୁ ।

ଏବଂ ବନ୍ଧୁଗଣ ! ସେଇ କଥା ହିଁ ତ ମୁଁ କରୁଛି କଲମ ଧରିବା ଦିନୁଁ ଆଜି ପର୍ଯ୍ୟନ୍ତ । ଏ ଜଗତରେ ନରନାରୀମାନେ ଓ ଇତର ପ୍ରାଣୀମାନେ ପ୍ରତି ମୁହୂର୍ତ୍ତରେ କି ଯେ କାଣ୍ଡକାରଖାନାମାନ ଭିଆଇ ଯାଉଛନ୍ତି ଏବଂ ସେହିସବୁ କାଣ୍ଡକାରଖାନାର ବାହାର ଓ ଭିତର ରୂପକୁ ଅକ୍ଷର ନିର୍ମିତ ଶବ୍ଦରଜିରେ ଧରି ରଖିବାକୁ ମୋର ପ୍ରାଣାନ୍ତକ ଚେଷ୍ଟା ଚାଲିଛି ଜୀବନଯାକ । ଏହା ଗୋଟିଏ ଅତ୍ୟନ୍ତ କଷ୍ଟସାଧ୍ୟ କର୍ମ । ମାତ୍ର ସେହି କଷ୍ଟକର କାର୍ଯ୍ୟଟି ମୁଁ ମୋ କାନ୍ଧରୁ ସ୍ୱେଛାରେ ଖସାଇ ଦେଇ ପାରିବିନାହିଁ—ଯେ ପର୍ଯ୍ୟନ୍ତ ମୋର କର୍ତ୍ତା ମୋ ଭିତରେ ରହି ମୋତେ ଏଥିରୁ ଚିରଦିନ ପାଇଁ ଛୁଟି ନ ଦିଅନ୍ତି ବା ନିବର୍ତ୍ତାଇ ନ ଦିଅନ୍ତି ସେତେଦିନ ଯାଏ ମୁଁ ଲେଖି ଚାଲିଥିବି । କାହାର ନିନ୍ଦା ପ୍ରଶଂସା ଶୁଣିବାକୁ ମୋର ତରନାହିଁ । ମୋର ମନ, ହୃଦୟ ଓ ଆଖି-କାନ ପ୍ରଭୃତି ଜ୍ଞାନେନ୍ଦ୍ରିୟମାନେ ପ୍ରତି ମୁହୂର୍ତ୍ତରେ ଅନ୍ୟ ଲୋକଙ୍କ କଥା ନେଇ ମାତିଥାନ୍ତି । ଅନ୍ୟ ଲୋକଙ୍କ ସହିତ ଲିପ୍ତ ଥାନ୍ତି । ଭବଜଗତର ଅନ୍ଧି ସନ୍ଧି ଆଉ ଗଳିକନ୍ଦିରେ ଘୁରି ବୁଲୁଥାନ୍ତି । ସେମାନଙ୍କୁ ନିଜର ଦାବୀ ପାଉଣା କଥା ଭାବିବାକୁ ବା ଫୁରସତ କାହିଁ ?

ଏବଂ ଏହି ସଂସାର ହିଁ ତ ଅସଲ ; ଏଇ ସଂସାରକୁ ନେଇ ଓ ଏହି ସଂସାର ପାଇଁ ତ ମୁଁ ଲେଖେ । ଏପରିକି ଯେତେବେଳେ ମୁଁ ଅନ୍ୟ ଜଗତର କଥାକୁ ନେଇ ମାତିଥାଏ, ଅଥବା ଅନ୍ୟ ଜଗତର କଥା କହୁଥାଏ, ସେତେବେଳେ ବି ମୋର ଏହି ପରିଚିତ ପ୍ରିୟ ସଂସାରଟିର ମଙ୍ଗଳକାମନା ମୋ ଭିତରେ ମୁଖ୍ୟ ଉଦ୍ଦେଶ୍ୟ ହୋଇ ରହିଥାଏ । ଅନ୍ୟ ଜଗତରୁ ଆଲୋକ ଆଣି ଏ ଜଗତର ଲିଭନ୍ତା ଦୀପଗୁଡ଼ିକୁ ଜଳାଇ ଦିଏ । ଅନ୍ୟ ଜଗତରୁ ସମ୍ପଦ ଆଣି ଏ ଜଗତରେ ବାଣ୍ଟିଦିଏ । ଅନ୍ୟ ଜଗତରୁ ମଧୁ ସଂଗ୍ରହ କରି ଏ ଜଗତର ଭଣ୍ଡ ଗୁଡ଼ିକୁ ପୂର୍ଣ୍ଣ କରୁଥାଏ ।

ମୋର ବିଶ୍ୱାସ, ମୁଁ ମୋ ଜୀବନରେ ଯାହା କିଛି ଲେଖେଁ—କିଛି ମିଛ ଲେଖେ ନାହିଁ । ମୋ ମନରୁ ଗୋଟେ କିଛି ଫାନ୍ଦି କରି ଲେଖେ ନାହିଁ । ଜଗତରେ ଯାହା ଘଟେ, ତାହା ମୁଁ ନିଜେ ଅନୁଭବ ନ କରି ଲେଖେ ନାହିଁ । ଆଉ ମଧ୍ୟ ଆମର ଏ ଜଗତରେ ଯାହା ଘଟିବା ଉଚିତ ବୋଲି ମୁଁ ମନେକରେ,

ତାହା ବି ମୁଁ ନିଜେ ମୋ ନିଜ ଜୀବନରେ ପ୍ରଥମେ ପ୍ରୟୋଗ ନ କରି ଲେଖେ ନାହିଁ । ମୁଁ ମୋ ଜୀବନରେ ଅନେକ ମିଛ କଥା ପାଟିରେ କହିଛି । କିନ୍ତୁ ଗୋଟିଏ ହେଲେ ବି ମିଛ ଶବ୍ଦ ମୋ ଲେଖନୀରୁ ବାହାରି ନାହିଁ । ମୁଁ ଜାଣେ, ମୋ ହାତରେ କଲମ ପଡ଼ିଲେ, ତାହା ମୋ ଆୟତ୍ତରେ ଚାଲେ ନାହିଁ, କଲମର ଆୟତ୍ତରେ ମୁଁ ଚାଲେ । ମୋର କଲମ ମୋ ଅହଙ୍କାରକୁ ପ୍ରଶ୍ରୟ ଦିଏନାହିଁ । ତା'ର ଘନିଷ୍ଠ ସମ୍ପର୍କ ମୋର ଆତ୍ମା ସହିତ—ଅଥବା ମୋ ଭିତରର ଶିଳ୍ପୀସତ୍ତାଟି ସହିତ । ସେଇଥିପାଇଁ ତ ମୋ କଲମର ଆଗ ପଛ ବିଚାର ନାହିଁ । ମୋ କଲମ କାହାକୁ ଡରେନାହିଁ । କୌଣସି ସଙ୍କଟରେ ସଙ୍କୁଚି ଯାଏ ନାହିଁ । ବୁଲେଇ ବଙ୍କେଇ କହେ ନାହିଁ । ଯାହା କହେ, ସିଧା କହେ । କିନ୍ତୁ ତା'ହେଲେ ବି ରୁଚିସମ୍ମତ କରି କହେ । କଳାସମ୍ମତ ବାକ୍ୟ କହେ ।

ଏ ଜଗତରେ ପ୍ରକୃତ ସତ୍ୟଟି କଣ, ଯଥାର୍ଥ ସୌନ୍ଦର୍ଯ୍ୟଟି କଣ ଓ ଯଥାର୍ଥ ମଙ୍ଗଳଟି ମଧ୍ୟ କଣ ଏବଂ ଏ ସବୁକୁ କେଉଁଠି କିପରି ଠାବ କରିହେବ ସେ ଦିଗରେ ମୁଁ ମୋ ନିଜ ଜୀବନକୁ ବାସ୍ତବ କ୍ଷେତ୍ରରେ ନିୟତ ନିୟୋଜିତ ରଖିଥାଏ । ମୋର ଧାରଣା ଜଣେ ସତ୍ ଲେଖକ ବିଶେଷତଃ କଥାକାର, ଏକାଧାରରେ ଭୋଗୀ ଓ ଯୋଗୀ – ଅନୁରାଗୀ ଓ ବୈରାଗୀ । ଏକାଧାରରେ ପୁଣି ମୂକ ଓ ବାଚାଳ । ସତ୍ ଲେଖକଟିଏ ନିଜ ଭିତରେ ଖୁବ୍ ନୀରବ, ଧ୍ୟାନଶୀଳ । ସେଥିଯୋଗୁଁ ତାର କଲମ ଅଗରୁ ଶବ୍ଦ ଓ ବାକ୍ୟ-ମାନ ଅନର୍ଗଳ ବୃଷ୍ଟି ହେଉଥାନ୍ତି । ପୃଷ୍ଠଭୂମିରେ ଧୀର ସ୍ଥିର ନୀରବ ଗମ୍ଭୀର ଉଦାର ଆକାଶଟିଏ ଅଛି ବୋଲି ସିନା ମେଘମାନେ ଏମିତି ବର୍ଷା ଗାଳୁଥାନ୍ତି !

"ସତ୍ୟ" ପଛରେ ଧାଇଁଲା ବେଳେ ମୁଁ ଜଣେ ଦାର୍ଶନିକ ଓ ଯୋଗୀ । ଶିବ ବା ମଙ୍ଗଳ ପଛରେ ଧାଇଁଲା ବେଳେ ମୁଁ ଜଣେ କର୍ମୀ ଓ ସୁନ୍ଦର ପଛରେ ଧାଇଁଲା ବେଳେ ମୁଁ ଜଣେ ପ୍ରେମୀ ଏବଂ ମହତ୍ ପଛରେ ଧାଇଁଲା ବେଳେ ମୁଁ ଜଣେ ଭକ୍ତ । ତେଣୁ ମୋର ଲେଖା ଭିତରେ ନିଶ୍ଚୟ ଜ୍ଞାନ,

କର୍ମ, ପ୍ରେମ ଓ ଭକ୍ତିର ଉପାଦାନ ରହିଥିବ—ସେଥିଲାଗି ପ୍ରେରଣା ମଧ୍ୟ ରହିଥିବ ।

ମୁଁ ମଧ୍ୟ ନିଧାର୍ଯ୍ୟ ଭବେ ସମାଜ ସଚେତନ । ମୁଁ ମୋର ନିକଟତମ ସମାଜକୁ ଉନ୍ନତ କରିବା ଲଗି ବହୁ ସାମାଜିକ ଦାୟିତ୍ୱ ମୁଣ୍ଡକୁ ନେଇଥାଏ ଓ ମତେ ସେଥିପାଇଁ ବହୁ ସମୟ ବ୍ୟୟ କରିବାକୁ ହୁଏ ! ଗୋଟିଏ ଦୃଷ୍ଟିରୁ ଦେଖିଲେ ମୁଁ ପରିବାରଠାରୁ ଆରମ୍ଭ କରି ଦେଶ ପର୍ଯ୍ୟନ୍ତ ସବୁରି ସଙ୍ଗେ ନିଜକୁ ବହୁ ସମ୍ବନ୍ଧରେ ବାନ୍ଧି ରଖିଥାଏ ଏବଂ ମୋର ସାମାଜିକ ମୂଲ୍ୟବୋଧ ଆହତ ହେଲେ ମୋର ଲେଖନୀ ବେଳେବେଳେ ଖୁବ୍ ତୀବ୍ର ଭବେ ବ୍ୟଙ୍ଗ ବିଦ୍ରୁପମୟ ହୋଇଯାଏ । କିନ୍ତୁ ମୁଁ ମୋ ନିଜ ଭିତରେ ବଡ଼ ଏକୁଟିଆ ଉଦାସୀ ବ୍ୟକ୍ତିଟିଏ । ମୋ ଭିତରର ସବୁଠାରୁ ନିର୍ଜନ ଓ ନିଃଶବ୍ଦ ଅଗଣା ଭିତରେ ମୁଁ ଏକାକୀ ମହାଶୂନ୍ୟକୁ ଗ୍ୱହିଁ ଚୁପ୍‌ଗ୍ୱପ୍ ବସିଥାଏ । ତା' ଭିତରକୁ କେହି ପ୍ରବେଶ କରି ପାରନ୍ତି ନାହିଁ । ମୁଁ ମୋର ଭଗବାନଙ୍କୁ ମଧ୍ୟ ସେଠାରେ ଅକାଳେ ସକାଳେ ଅତର୍କିତ ଭବରେ ପ୍ରବେଶ କରିବାକୁ ମନା କରି ଦେଇଥାଏ । ଏହି ଏକୁଟିଆପଣ ଯୋଗୁଁ ମୋର ଆତ୍ମମର୍ଯ୍ୟାଦାବୋଧ ଖୁବ୍ ତୀବ୍ର ଆଉ ଗଭୀର । ମୁଁ ମୋର ଲେଖା ଭିତରେ ପ୍ରତିଟି ଚରିତ୍ରକୁ ବ୍ୟକ୍ତି ହିସାବରେ ଯଥେଷ୍ଟ ମର୍ଯ୍ୟାଦା ଦିଏ । ସମାଜକୁ ସବୁବେଳେ ବ୍ୟକ୍ତିର ମୁଣ୍ଡ ଉପରେ ଗ୍ୱପି ଦିଏ ନାହିଁ ବା ସମାଜ ପାଖେ ବ୍ୟକ୍ତିକୁ ବଳି ଦିଏ ନାହିଁ । କିନ୍ତୁ ଆପଣମାନେ ଲକ୍ଷ୍ୟ କରିବେ—ମୋର ଲେଖା ଭିତରେ ସବୁ ଚରିତ୍ର ସମାଜ ସଙ୍ଗେ ସ୍ୱାଧୀନ ଭବେ ପ୍ରେମରେ ଛନ୍ଦାଛନ୍ଦି । ମୁଁ ଗୋଟାଏ ରଜନୈତିକ ଗଷ୍ଟ ଉପରେ ବିଶ୍ୱାସ କରେ ନାହିଁ । ମୋର ଧାରଣା ରଜ-ନୈତିକ ଗଷ୍ଟ ଗୋଟାଏ ଅହଂକାରୀ ପ୍ରମତ୍ତ ଆସୁରିକ ଶକ୍ତି । ତାହା ଗଣତାନ୍ତ୍ରିକ ଗଷ୍ଟ ହେଉ ବା କମ୍ୟୁନିଷ୍ଟ ଗଷ୍ଟ ହେଉ, ମୁଁ ସାଂସ୍କୃତିକ ଗଷ୍ଟ ଗଠନର ପକ୍ଷପାତି । ସେଥିପାଇଁ ମୋର ସହୃଦୟ କ୍ରିଟିକ୍‌ମାନେ ମୋ ଲେଖା ଭିତରୁ ବ୍ୟକ୍ତିଚେତନା ଓ ସମାଜଚେତନାର ଏକ ଉଦାର ପ୍ରେମମୟ ମିଳନ ଲକ୍ଷ୍ୟ କରିଥାନ୍ତି ।

ସେହିପରି ମଧ୍ୟ ମୋତେ ବହୁ ସମୟରେ ଜୀବନର ହସକାନ୍ଦ ପୃଥକ୍ ହୋଇ ଦିଶେ ନାହିଁ । ପାପପୁଣ୍ୟ ଅଲଗା ଅଲଗା ହୋଇ ଦିଶେ ନାହିଁ । ଜୀବପରମଙ୍କ

ଲୀଳା ନରନାରୀଙ୍କ ମିଥୁନ ଲୀଳା ଭଳି ଦୃଶ୍ୟ ହୁଏ । ବାସ୍ତବ ଓ ସ୍ୱପ୍ନ ମିଶି ମାଶି ଗୋଟିଏ ସତ୍ୟପ୍ରାୟ ପ୍ରତିଭାତ ହୁଏ । ଦେହ ଓ ଆତ୍ମା ଗୋଟିଏ ବେଦୀରେ ଯଜ୍ଞରତ ହେଲାଭଳି ଓ ଏକଇ ଦେବତା ଉଦ୍ଦେଶ୍ୟରେ ବହନ କଲାଭଳି ଦେଖାଯାନ୍ତି । ଏବଂ ମୋର ବୁଦ୍ଧିମାନ କ୍ରିଟିକମାନେ ମୋର ଲେଖା ଭିତରୁ ଏଇ ସତ୍ୟଟି ଉଦ୍‌ଘାଟନ କରିଥାନ୍ତି ଦେଖି ମୁଁ ଆଶ୍ୱସ୍ତ ହୁଏ । ମୁଁ ମୋର ଦେଶ ସଙ୍ଗେ ମୋର ପ୍ରଦେଶଟିକୁ ଅତ୍ୟନ୍ତ ଭଲପାଏ । ମୋର ଓଡ଼ିଆ ଜାତି ଏବଂ ତାର ଐତିହ୍ୟକୁ ଗଭୀର ଭାବେ ଶ୍ରଦ୍ଧା କରେ । ଏବଂ ଏ ଜାତିର ଭବିଷ୍ୟତ ଉପରେ ମୁଁ ଖୁବ୍ ଆସ୍ଥାବାନ । ମୁଁ ଯାହା କିଛି ଲେଖେ ମୋ ମାତୃଭାଷାରେ ହିଁ ଲେଖେ । ମୁଁ ମୋର ମାତୃଭାଷାଟିକୁ ଭଲ ଭାବେ ଅଧ୍ୟୟନ କରିଛି । ଏବଂ ଏହି ମୋର ପ୍ରିୟତମ ଭାଷାଟିକୁ ଜୀବନ ଯାକ ଭଲ ଭାବେ ଶିଖିବି ବୋଲି ମୁଁ ଆଉ କୌଣସି ଭାଷାକୁ ପାରଙ୍ଗମ ହେଲା ଭଳି ଶିଖିଲି ନାହିଁ । ମୋର ମଧ୍ୟ ସେଥିଲାଗି ଆଗ୍ରହ ନାହିଁ କି ସମୟ ନାହିଁ । ଉଦାହରଣ ସ୍ୱରୂପ ମୋର ଇଂରେଜୀ ଓ ବଙ୍ଗଳା ଭାଷା, ସାହିତ୍ୟରେ ଜ୍ଞାନ କିଛି କମ୍ ନୁହେଁ । ଏବଂ ସେହି ଭାଷା ଦୁଇଟି ମାଧ୍ୟମରେ ହିଁ ମୁଁ ଉଚ୍ଚାଙ୍ଗ ସାହିତ୍ୟ, ଇତିହାସ, ଦର୍ଶନ, ମନସ୍ତତ୍ତ୍ୱ, ବିଜ୍ଞାନ, ସମାଜତତ୍ତ୍ୱ ଓ ଧର୍ମ ଗ୍ରନ୍ଥାଦି ଅଧ୍ୟୟନ କରିଛି । ସେ ଭାଷାରେ ଲିଖିତ ବହୁ ଉନ୍ନତ ଲେଖା ମୁଁ ଓଡ଼ିଆରେ ଅନୁବାଦ କରିଛି । କିନ୍ତୁ ମତେ ଇଂରେଜୀରେ ଦଶ ଧାଡ଼ି କଥା କହି ଆସେ ନାହିଁ— କି ଲେଖି ମଧ୍ୟ ଆସେ ନାହିଁ । ତାର କାରଣ, ମୋର ସାରା ଜୀବନ ମୁଁ କେବଳ ଓଡ଼ିଆ ଭାଷାରେ ସର୍ବୋତ୍ତମ ଅଭିବ୍ୟକ୍ତି ଲାଗି ସାଧନା କରି ଆସିଲି । ଏବଂ ମୋର ଏହି ପ୍ରାଚୀନ ସମୃଦ୍ଧ ଭାଷାର ବହୁ ବିଚିତ୍ର ବର୍ଣ୍ଣାଢ୍ୟ ଗଭୀର ଧ୍ୱନି ବ୍ୟଞ୍ଜନାମୟ ବାକ୍ୟ ଶୈଳୀଗୁଡ଼ିକୁ ସଂଗ୍ରହ କରିବାରେ, ଆବିଷ୍କାର କରିବାରେ ଓ ନୂତନ ଭାବେ ସୃଷ୍ଟି କରିବାରେ ମୋର ସମସ୍ତ ସମୟ ଓ ଆଗ୍ରହ ବ୍ୟୟ କଲି । ସେଇଥିପାଇଁ ତ ମୋର କ୍ରମଶଃ ମୋ ବିଷୟରେ ଗୋଟିଏ ଧାରଣା ଦୃଢ଼ ହୋଇଯାଇଛି ଯେ ମୋର ସମସାମୟିକ କୌଣସି ପ୍ରତିଭାବାନ ଗଦ୍ୟ ଲେଖକ ମୋ ଭଳି ଗଦ୍ୟରେ ଏତେ ବିଚିତ୍ର ବହୁବିଧ ବାକ୍ୟଶୈଳୀ ସୃଷ୍ଟି କରି ନାହାନ୍ତି । ଆଉ ମଧ୍ୟ ଏତେ ବିଭିନ୍ନ ସ୍ବରରେ ଏତେ ବିଭିନ୍ନ ଭାବ ବା ଅନୁଭୂତି କେହି ପ୍ରକାଶ କରି

ନାହାନ୍ତି । ମୁଁ ତ କେବଳ ଗଳ୍ପ ଉପନ୍ୟାସ ଲେଖି ନାହିଁ । ବହୁ ରମ୍ୟରଚନା ଲେଖିଛି, ପ୍ରବନ୍ଧ ଲେଖିଛି, ନିବନ୍ଧ ଲେଖିଛି, ସମାଲୋଚନା ଲେଖିଛି, କାବ୍ୟିକ ଗଦ୍ୟ ଲେଖିଛି, ସାମାଜିକ ଓ ରାଜନୈତିକ ସମସ୍ୟାଗୁଡ଼ିକୁ ନେଇ ସାମ୍ବାଦିକୀ-ଶୈଳୀରେ ବହୁ ରଚନା ଲେଖିଛି । କିନ୍ତୁ ମୋର ଗୋଟିଏ ଲେଖା ଗୋଟିଏ ଲେଖାଠାରୁ ରଚନାଶୈଳୀରେ ଦୃଶ୍ୟମାନ ଭାବେ ପୃଥକ୍ । ରଚନାଶୈଳୀରେ ଏହି ବିଚିତ୍ର ବିଭିନ୍ନତା ମୋର ନିଜ ଜୀବନଚର୍ଯ୍ୟାର ବିଚିତ୍ର ବିଭିନ୍ନ ସ୍ତର ଯୋଗୁ ସମ୍ଭବ ହୋଇଛି ।

ଆଉ ଗୋଟିଏ କଥା ମୁଁ ଦୃଢ଼ଭାବେ କହିପାରେ । ତା'ହେଲା—ମୁଁ ଲେଖେଁ କେବଳ ମୋର ଓଡ଼ିଆଭାଷୀ ଭାଇଭଉଣୀମାନଙ୍କ ପାଇଁ । ସେମାନଙ୍କ ମନର କଥାକୁ ମୁଁ ଯଦି ମୋର ମାତୃଭାଷାରେ ବ୍ୟକ୍ତ କରିପାରିଛି ବୋଲି ଓ ସେମାନଙ୍କ ହୃଦୟ ମନକୁ ସ୍ପର୍ଶ କରି ପାରିଛି ବୋଲି, ସେମାନେ ମୋତେ ସାର୍ଟିଫିକେଟ ଦିଅନ୍ତି, ତା'ହେଲେ ମୁଁ ନିଜକୁ କୃତାର୍ଥ ମନେକରେ । ମୋ ଲେଖା ହିନ୍ଦୀରେ ଅନୂଦିତ ହୋଇ ସର୍ବଭାରତୀୟ ଦୃଷ୍ଟି ଆକର୍ଷଣ କରୁ କିମ୍ବା ଇଂରାଜୀରେ ଅନୂଦିତ ହୋଇ ଆନ୍ତର୍ଜାତିକ ଦୃଷ୍ଟି ଆକର୍ଷଣ କରୁ, ସେ ବ୍ୟାପାରରେ ମୋର ତିଳାର୍ଦ୍ଧେ ଆଗ୍ରହ ନାହିଁ । ସରାଗ ବି ନାହିଁ । ଅବଶ୍ୟ କିଏ ମୋର ଲେଖା କୋଉ ଭାଷାରେ ସ୍ୱତଃପ୍ରବୃତ୍ତ ହୋଇ ଅନୁବାଦ କଲେ ମୋର ଆପତ୍ତି ନାହିଁ । କିନ୍ତୁ ସର୍ବଭାରତୀୟ ବା ଆନ୍ତର୍ଜାତିକ ପାଠକଗୋଷ୍ଠୀ ପ୍ରତି ମୋର ଗରଜ ନାହିଁ—କି ସେମାନଙ୍କ ପ୍ରଶଂସା ଶୁଣିବାକୁ ମୁଁ ଉତ୍କଣ୍ଠ ନୁହେଁ । ମାତ୍ର ମୋର ଜାତିଭାଇମାନଙ୍କୁ ମୋର ପ୍ରତିଟି ବାକ୍ୟ ଶୁଣାଇବା ଲାଗି ଓ ସେମାନଙ୍କଠାରୁ ଅଭିମତ ଶୁଣିବା ଲାଗି ମୁଁ ସର୍ବଦା ବ୍ୟଗ୍ର ଓ ଚେଷ୍ଟିତ ।

ଜଣେ ଲେଖକ ହିସାବରେ ମୁଁ ନିଜକୁ ଜଣେ ଶ୍ରମିକ ବା ଚାଷୀ ଭଳି ମନେ-କରେ । ମୁଁ କେବଳ ମନଫୁଲୁଣା ଗୀତଗାଇ ବା ମନୋରଞ୍ଜନ କଥକତା କରି ସମୟ କାଟେ ନାହିଁ । ମୋ ପିଲାଦିନେ ଆମ ଗାଁ ଚଇତି ଘୋଡ଼ାନାଟ ସମ୍ପ୍ରଦାୟର ରାଉତ ବୁଢ଼ା ଗାଉଥିବା ପଦିଏ ଦାଇକାଗୀତ ମୋର ସବୁବେଳେ ମନେଥାଏ । ତାହା ହେଲା—

ବାଟରେ ମାଇଲି ବୋଡ଼ା
(ଆରେ, ବାଡ଼ିରେ ଲଗିଛି ଖଡ଼ା)
ରାତିରେ ନଗ୍ନ ଏ ଚଉତିଘୋଡ଼ା
ସାଆନ୍ତେ ହୋ ! ଦିନରେ କୁଟଇ ଚୂଡ଼ା ।

ଏହି ପଦଟି ପ୍ରତି ମୋର ଶିଳ୍ପୀଆତ୍ମାର ଗଭୀର ସମର୍ଥନ ରହିଛି । ମୁଁ ଗୋଟିଏ କେବଳ ଲେଟସ୍‌ଭୁକ୍ ସ୍ୱପ୍ନବିଳାସୀ ଖାମ୍‌ଖେୟାଲୀ କବିଟିଏ ନୁହଁ । କବିତାଟିଏ ଗାଇବି ବୋଲି ବା କଥାଟିଏ କହିବି ବୋଲି ମୁଁ ସମାଜଠାରୁ ତାର ଆର୍ଥିକ ମୂଲ୍ୟ ଦାବୀ କରେନାହିଁ । ସ୍ୱତନ୍ତ୍ର ସମ୍ମାନ ମଧ୍ୟ ଦାବୀ କରେ ନାହିଁ । ମୁଁ ମୋର ଓ ମୋ ପରିବାରର ପେଟପାଟଣା ଲାଗି ଦିନଯାକ କାୟିକ ଓ ମାନସିକ ଶ୍ରମ କରୁଥାଏ । କିନ୍ତୁ ମୋ ପାଇଁ ରାତିଟି ହେଲା ଅନୁଭବମୟ । ମୁଁ ରାତିରେ ଶୁଏ ନାହିଁ । ମୋ ଆଖିରେ ନିଦ ନ ଥାଏ । ମୋ ପ୍ରକୃତି ପିଲାଦିନୁଁ ଏମିତି ଯେ ରାତିହେଲେ ମୋତେ ଉଚ୍ଚାଟ ଲାଗେ । ସାରାରାତି ମୋତେ ନିଶା ଖାଇଲା ଭଳି ବୋଧହୁଏ । ରାତିକୁ 'ନିଶା' ବୋଲି କାହିଁକି କହନ୍ତି କେଜାଣି ? ଏଇ ରାତିରେଇ ମୋର ଅନ୍ତର୍ଦୃଷ୍ଟି ଖୋଲିଯାଏ । ଭବଜଗତର ରହସ୍ୟପରଦା ଖୋଲି ଖୋଲି ଯାଏ । ଏଇ ରାତିରେ ହିଁ ଜୀବନର ବହୁ ରହସ୍ୟ ରସମୟ ଅର୍ଥ ବହନ କରି ଶବ୍ଦମାନଙ୍କ ଭିତରେ ବିଗ୍ରହବନ୍ତ ହୋଇଉଠନ୍ତି । ଗୋଟିଏ କଥା ସଙ୍ଗେ ଆଉ ଗୋଟିଏ କଥା ଯୋଡ଼ି ହୋଇଯାଏ । ଗୋଟିଏ ଚରିତ୍ର ସଙ୍ଗେ ଆଉ ଗୋଟିଏ ଚରିତ୍ର ସାଙ୍ଗ ହୋଇଆସେ । ଗୋଟିଏ ଘଟଣା ସଙ୍ଗେ ଆଉ ଗୋଟିଏ ଘଟଣାର ଯୋଗସୂତ୍ର ମିଳିଯାଏ । ମୋତେ ଲାଗେ ସତେ କି ମୁଁ ଭୂତଗ୍ରସ୍ତ ହୋଇଛି । ଅଥବା ମତେ କାଳେଣୀ ଲାଗିଛି କିମ୍ବା କିଏ ସବୁ ଅଶରୀରୀସତ୍ତାମାନେ ମୋ ଉପରେ ସବାର ହୋଇ ଯାଇଛନ୍ତି । ମୋ ଭିତରେ ଅତୀତ ବର୍ତ୍ତମାନ ଓ ଭବିଷ୍ୟତ ଏକାଠି ଗୋଳି ହୋଇଯାଏ ।

ମାତ୍ର ତଥାପି ମୁଁ ମୋର ସମସ୍ତ ଅନୁଭୂତିକୁ ମୋର କଲମମୁନରେ ଶବ୍ଦ-ସମର୍ପିତ କରି ପାରେ ନାହିଁ । କଣ ଲେଖିବି, କିପରି ଲେଖିବି ତାହା ନିଜେ ସ୍ଥିର କରି ପାରେନାହିଁ । ମୋର ମନେ ହୁଏ ଆମର ଆଦିକବି ଶୂଦ୍ରମୁନି ସାରଳା ଦାସ ଠିକ୍ କହିଛନ୍ତି—

'ଶିଶୁ ବୁଦ୍ଧି ମୋହର ବୟସ ଅଳପଟି.
କୁସ୍ଥାନେ ବସିଲି, ନ ବସିଲି ବିପ୍ରଗୋଷ୍ଠୀ
ଆହେ ସୁଜ୍ଞଜନେ ମୋତେ ସେ ଯାହା କହଇ
ଅରୁଣ ଉଦୟ କାଳେ ମୁଁ ତାହା ଲେଖଇ ।'

ମତେ ତ ଲାଗୁଛି ନିତାନ୍ତ ସତ କଥା ଏ । ମୁଁ ଯେତେବେଳେ ଭାବଜଗତରେ ବୁଡ଼ିଥାଏ, ମତେ ବୋଧହୁଏ ମୁଁ ରାତ୍ରିରେ ହିଁ ଅଧାନିଦ, ଅଧାଜାଗ୍ରତ ଅବସ୍ଥାରେ ରହି ସବୁକଥା ଦେଖୁଛି ଓ ଅନୁଭବ କରୁଛି । ମାତ୍ର ମୋତେ ଯେତେବେଳେ ଲେଖିବାକୁ ପ୍ରେରଣା ଆସେ, ମତେ ଲାଗେ ସତେକି ମୋ ଭିତରଟା ଫର୍ଚା ହୋଇ ଆସୁଛି । ସତକୁ ସତ ଅରୁଣୋଦୟ ହୋଇ ଆସୁଛି ଏବଂ ମୋ ଭିତରେ କିଏ ଜଣେ ଲୁଚିରହି ସତେ ଯେପରି ମତେ କଣ ଲେଖିବାକୁ ହେବ ଡାକି ଯାଉଛି ଓ ମୋର କଲମ ତାକୁ ସ୍ୱଚ୍ଛନ୍ଦରେ ଲେଖି-ଚାଲିଛି । ମୋ ଭିତରେ ରହି କିଏ ସେ ମୋତେ କୃପାକରି ପଦମାନ ଡାକିଯାନ୍ତି ? ପଙ୍କଜବାସିନୀ ଦେବୀ ଉତ୍କଳ ଭାରତୀ ମା' ସାରଳା କି ? କେଜାଣି ? ହୋଇଥାଇ ପାରନ୍ତି କାରଣ ଓଡ଼ିଆ ଭାଷା ଓ ସାହିତ୍ୟର ଅଧିଷ୍ଠାତ୍ରୀ ଦେବୀ ସେ । ଏ ଭାଷା ଓ ସାହିତ୍ୟକୁ ବଞ୍ଚାଇ ରଖିବାର, ପରିପୁଷ୍ଟ କରିବାର ଦାୟିତ୍ୱ ତାଙ୍କରି ଏକା ! ତା' ନ ହେଲେ ଦିନଯାକ ହଳବୁଲାଇ ପେଟ ପୋଷୁଥିବା ମୂର୍ଖ ସିଦ୍ଧେଶ୍ୱର ପରିଡ଼ା ଅଠରଖଣ୍ଡ ଭାରତ ଲେଖି ଓଡ଼ିଆ ଭାଷାର ଆଦିକବି ସାରଳା ଦାସ ହୋଇଥାନ୍ତେ କିପରି ? ମା' ସାରଳାଙ୍କ କୃପା ବିନା ? କଥା ଏଇଆ । ଆମ ସମସ୍ତଙ୍କ କଥା ମଧ୍ୟ ଏଇଆ ଏବଂ ଏହିପରି ।

ସୁଧୀବୃନ୍ଦ ! ମୁଁ କାହିଁକି ଲେଖେଁ—ଏ ପ୍ରଶ୍ନର ମୁଁ ଉତ୍ତର ଦେବାକୁ ବସି ନ ଥିଲି । ମାତ୍ର ଯାହା ସବୁ ବାଗ୍ଲଙ୍କ ପରି ନିଜ ବିଷୟରେ ମୁଁ ଗପିଗଲି, ସେଥିରୁ ଯଦି ଆପଣମାନେ ଆପଣଙ୍କ ପ୍ରଶ୍ନର ଉତ୍ତର ପାଇଯାନ୍ତି, ତେବେ ଉତ୍ତମ କଥା ! ନ ପାଇଲେ କିନ୍ତୁ ମୋର ଆଉ ଚାରା ନାହିଁ । ଏ ପ୍ରସଙ୍ଗରେ ମୁଁ ମୋର ପତ୍ନୀଙ୍କର ବକ୍ତବ୍ୟ ଉଦ୍ଧାର କରୁଛି । ସର୍ବଦା ଗୃହକର୍ମନିରତା, ମୋ ସଂସାରର ସମ୍ପୂର୍ଣ୍ଣ ଜଞ୍ଜାଳ ଓ ଦାୟିତ୍ୱ ବହନକାରିଣୀ ମୋର ପ୍ରିୟତମା

ପତ୍ନୀ ଶ୍ରୀମତୀ ପ୍ରସନ୍ନକୁମାରୀ ଦେବୀ ମୋର ଲେଖକ ଜୀବନ ଉପରେ ମନ୍ତବ୍ୟ ଦେଇ କହନ୍ତି– ତୁମ ଦେହାତି ଆଉ କିଛି ହୋଇପାରିବ ନାହିଁ । ତେଣୁ ତୁମେ ବସି ବସି ଖାଲି ଲେଖି ଗ୍ଭଲିଛ । ମୁଁ ପଗ୍ଭରେ–ଆଚ୍ଛା, ତଦ୍ୱାରା ମୁଁ କିଛି ଭୁଲ କରୁଛି କି ? ସେ କହନ୍ତି–ନା ! ଲେଖିବା ଅବଶ୍ୟ ମନ୍ଦ କାର୍ଯ୍ୟ ନୁହେଁ । କିନ୍ତୁ ତା'ଠାରୁ ଢେର ଢେର ଭଲ କାମ ଅଛି । ମୁଁ ପଗ୍ଭରେ–ଯଥା ? ସେ କହନ୍ତି ରୋଷେଇ କରିବା, ସିଲେଇ କରିବା, ବଜାର କରିବା, ଲୁଗାପଟା ସଫା କରିବା, ଖିଅର କରିବା, ଜୋତା ସଫା କରିବା, ଗୃହବାସ କରିବା ଇତ୍ୟାଦି ଇତ୍ୟାଦି । ମୁଁ ଏକଥା ଶୁଣି ଚୁପ୍ ହୁଏ । କାରଣ ମୋର ମଧ୍ୟ ଧାରଣା ଯେ କେବଳ ଲେଖିବାଟା ଗୋଟେ ଆଦୌ କାର୍ଯ୍ୟପଦବାଚ୍ୟ ନୁହେଁ । ତାହା ଗୀତ ଗାଇବା ପର୍ଯ୍ୟାୟର ବ୍ୟାପାର । ଯୋଉ ଲୋକ କେବଳ ଲେଖୁଥାଏ–ସେ ଗୋଟାଏ ବୁଡ୍‌ବକ୍ କିମ୍ବା ଦାୟିତ୍ୱହୀନ କର୍ମକୁଣ୍ଠ ଲୋକ । ତେଣୁ ମୋ ବିଷୟରେ ମୋ ସ୍ତ୍ରୀଙ୍କର ବକ୍ତବ୍ୟର ପ୍ରଥମ ଭଗଟି ସତ୍ୟ ନୁହେଁ । ମୋତେ ସବୁ କାମ ଆସେ । ହଳ ବୁଲାଇବାଠାରୁ ଜୋତା ସଫା ପର୍ଯ୍ୟନ୍ତ ଏବଂ ବହୁକାର୍ଯ୍ୟ ମଧ୍ୟ ମୁଁ କରେ । ମୋ ପକ୍ଷରେ ଲେଖା ବ୍ୟାପାରଟି ଏକ ସୃଜନଶୀଳ ଅବସର ବିନୋଦନ । ଲେଖାଲେଖି ବ୍ୟାପାରକୁ ଥୋକାଏ ସାଧନା ବା ତପସ୍ୟା ବୋଲି କାହିଁକି କରନ୍ତି କେଜାଣି ! ମୁଁ ତ ଭବେ ଲେଖାଲେଖି ଆଦୌ ସାଧନା ବା ତପସ୍ୟା ହୋଇ ନ ପାରେ । ବରଂ ଜଣେ ଲେଖକ ତାର ଜୀବନକୁ ମୃତ୍ୟୁ ପର୍ଯ୍ୟନ୍ତ ଯଦି ସାହିତ୍ୟିକ କରି ରଖିପାରିଲା– ତା'ହେଲେ ସେଇଟାଇ ହେବ ତାର ଜୀବନସାଧନା । ଦିନଯାକ ଚୁଡ଼ା କୁଟୁଥିବା ଓ ମାଛ ମାରୁଥିବା ସେଇ କେଉଟଟି ।

ସୁଧୀବୃନ୍ଦ ! ମୋର ଲେଖକ ଜୀବନ ସମ୍ବନ୍ଧେ ଶେଷ କଥାଟି କହିଦେଇ ମୁଁ ଏଥରକ ବିଦାୟ ନେବି । ଏହି ଲେଖାଟି ବର୍ତ୍ତମାନ ଗତି ଅନିଦ୍ରା ହୋଇ ଲେଖିଲା ବେଳକୁ ମତେ ବର୍ତ୍ତମାନ ଚଉବନ ବର୍ଷ ବୟସ ଘୋଟକ ଗତିରେ ଗ୍ଭଲିଛି–ଗ୍ଭଲିଛି ତ ନୁହଁ, ଦଉଡୁଛି । ମୋ ଜୀବନ ବହୁ ଝଡ଼ଝଞ୍ଜାରେ ସମାକୀର୍ଣ୍ଣ ଏବଂ ବହୁ ବିଚିତ୍ର ଅନୁଭବମୟ ଅଭିଜ୍ଞତାରେ ରସବନ୍ତ, ସମୃଦ୍ଧ ଓ ବର୍ଣ୍ଣାଢ୍ୟ । କିନ୍ତୁ ଏ ସଂସାରରେ ବହୁ ଲୋକ ମଧ୍ୟ ମୋରି ଭଳି ଅଭିଜ୍ଞତା ପାଇଥିବେ । କିନ୍ତୁ ସେହି ସବୁ ସ୍ୱାର୍ଥସର୍ବସ୍ୱ ଅଭିଜ୍ଞତାରୁ ସାହିତ୍ୟ ସୃଷ୍ଟି ହୁଏ

ନାହିଁ । ଭାବପ୍ରଧାନ ଅଭିଜ୍ଞତା ହିଁ ସାହିତ୍ୟିକ ଲାଗି ଯଥାର୍ଥ ଅଭିଜ୍ଞତା । ଏ ସଂସାର ସାଙ୍ଗେ କିଏ କୋଉପ୍ରକାରେ ସଂପର୍କିତ ; ମାତ୍ର ସାହିତ୍ୟିକଟିଏ ଏ ସଂସାର ସାଙ୍ଗେ କେବଳ ରସମୟ ସମ୍ପର୍କ ହିଁ ସ୍ଥାପନ କରିଥାଏ । ମୋ କ୍ଷେତ୍ରରେ ମଧ୍ୟ ଏଇଆ । ଯଥାର୍ଥ କବି ବା ଲେଖକ କାହା ସଙ୍ଗେ ପ୍ରେମର ସମ୍ପର୍କ ରଖୁ କି ଘୃଣାର ସଂପର୍କ ରଖୁ—ଉଭୟ କ୍ଷେତ୍ରରେ ତାହା ରସମୟ ସମ୍ପର୍କ ହେବାକୁ ବାଧ୍ୟ । ଲେଖକ ଆଗରେ ସବୁକିଛି ରସମୟ—ଧ୍ୱନିମୟ, ବ୍ୟଞ୍ଜନାମୟ ଆଉ ତାତ୍ପର୍ଯ୍ୟପୂର୍ଣ୍ଣ । ପୁଣି କବି ଲେଖକମାନଙ୍କର ଯେ ଈଶ୍ୱର, ସେ ହେଉଛନ୍ତି "ରସୋ ବୈ ସଃ" ।

ମୋ ବିଷୟରେ ମୁଁ ଅବିକଳ ସେଇଆ କହିବି । ମୋର କେହି ଶତ୍ରୁ ନାହାନ୍ତି । କିନ୍ତୁ ମୋ ସହିତ ଯେଉଁମାନେ ଶତ୍ରୁତା ବି କରି ଆସିଛନ୍ତି, ସେମାନଙ୍କ ବିଷୟ ମୋର ଯେତେବେଳେ ମନେପଡ଼େ, ମୋର ଭାବମୟ ରାତ୍ରିର ସ୍ୱପ୍ନ ଭିତରେ ସେମାନେ ମୋର ହୃଦୟରେ ସଂପୂର୍ଣ୍ଣ ରସମୟ ବିଗ୍ରହ ରୂପେ ଉଭା ହୁଅନ୍ତି—ଯେପରି ମୋର ମିତ୍ରମାନେ ମଧ୍ୟ ଉଭା ହୁଅନ୍ତି । ସେତେବେଳେ ମୋ ମନରେ ବିଚିତ୍ରଭାବେ ଏକ କୌତୁକରସର କ୍ଷରଣ ହୁଏ ଏବଂ ତତ୍ ସଙ୍ଗେସଙ୍ଗେ ମୋର ଆଖିରୁ ମଧ୍ୟ ଲୁହ ବହିଯାଏ । ସାରା ସଂସାରକୁ ଅନୁଭବ କଲାବେଳେ ସେମିତି ମୋର ଆଖିରେ ଲୁହ ଜମିଥାଏ ଏବଂ ଓଠରେ ହସ ଜମିଥାଏ । ସେଇଥିପାଇଁ ତ ମୋର ରସିକପାଠକ-ପାଠିକାମାନେ ମୋ ଲେଖା ଭିତରେ ହସକାନ୍ଦର ଏକ ମିଶାମିଶି କୌତୁକ ରସ ଉପଲବ୍‌ଧି କରିଥାନ୍ତି । ସେଇଥିପାଇଁ ତ ମୋର ବିଦଗ୍‌ଧ ପାଠକ-ପାଠିକାମାନେ ମୋ ଲେଖା ଭିତରେ ହସକାନ୍ଦର ଏକ ମିଶାମିଶି କୌତୁକ ଲୀଳା ପ୍ରତ୍ୟକ୍ଷ କରିଥାନ୍ତି । କବି ଦୀନକୃଷ୍ଣଙ୍କ ବାକ୍ୟର ସାହାଯ୍ୟ ନେଇ ମୁଁ ମଧ୍ୟ ମୋ ଲେଖା ସମ୍ବନ୍ଧେ କହୁଛି—

କେତେ କଉତୁକ ଅଛନ୍ତି ଏଥି
କେବଳ କ୍ଷୀର ସିନ୍ଧୁ ପ୍ରାଏ ମଣ୍ଡି
କର ରସ ଜାତ
କରି ଧୀଷଣା ମନ୍ଦର ପର୍ବତ ।

ମୋର ଜନ୍ମଦାୟିନୀ ପରମାରାଧ୍ୟା ମାଆ ମତେ ମାତ୍ର ପନ୍ଦର କୋଡ଼ିଏଟି ଶବ୍ଦ ଓ ବାକ୍ୟ ଶିଖାଇଥିଲା । ମାତ୍ର ମୁଁ ଏ ପର୍ଯ୍ୟନ୍ତ ହଜାର ହଜାର ଶବ୍ଦରେ ହଜାର ହଜାର ରସାତ୍ମକ ଓ ଅର୍ଥାତ୍ମକ ବାକ୍ୟ ସୃଷ୍ଟିକରି ତା'ର ଚରଣ-କମଳରେ ନିବେଦନ କରି ସାରିଲିଣି । ମୋ' ମାଆ ଅକ୍ଷର ଶିଖି ନ ଥିଲା । କିନ୍ତୁ ତା'ରି ସୁଧାସ୍ରାବୀ ପାଟିରୁ ପ୍ରଥମ କରି ଯୋଉ ମଧୁବୋଳା ଭାଷା ଶୁଣିଥିଲି ଓ ଯୋଉ ଭାଷାରେ ପ୍ରଥମ କରି ତା' ସଙ୍ଗେ ମୋର ଟିକିହୃଦୟରେ ଟିକି ଟିକି ଭାବଗୁଡ଼ିକର ଆଦାନପ୍ରଦାନ ହୋଇଥିଲା, ସେଇ ଭାଷା ମୋର ମାଆ ଭଳି ପ୍ରିୟ, ମାଆ ଭଳି ପୂଜ୍ୟ, ମାଆ ଭଳି ସେବ୍ୟ । ଏବେ ଦିନେ, ଏକ ବର୍ଷ ତଳେ, ମୋ ଲିଖିତ ପ୍ରାୟ ପଚିଶ ଖଣ୍ଡ ବହି ତା'ର ଶ୍ରୀଚରଣ ତଳେ ସ୍ତୁପାକାରରେ ରଖି ହାତରେ ଚଳୁ ଧରି ପାଣି ବୁଲାଇଦେଲି । ମୋ' ମା' ପଚାରିଲା—ଏ ବହି ସବୁ କ'ଣ କିରେ ? ମୁଁ କହିଲି—ବୋଉ ! ଏ ସବୁ ମୁଁ ଲେଖିଛି । ମାଆ ପଚାରିଲା—କାହିଁକି ଲେଖିଛୁ ?

ତା'ର ଏ ପ୍ରଶ୍ନ ଶୁଣି ମୁଁ ଅବାକ୍ ହୋଇଗଲି । ମୋ ଆଖିରେ ଲୁହ ଜକେଇ ଆସିଲା । ଆବେଗକମ୍ପିତ କଣ୍ଠରେ କହିଲି—ତୋ'ରି ପାଇଁ ଲେଖିଛି ବୋଉ—ତୋ'ରି ପାଇଁ ।

ମୋର ବୟାଅଶୀ ବର୍ଷ ବୟସା ମାଆର ଜରଜର୍ଜରିତ ଶ୍ଳଥ ମୁଖମଣ୍ଡଳରେ ଏକ ଅନିର୍ବଚନୀୟ କୌତୁକମିଶ୍ରିତ ଆନନ୍ଦର ଉଦ୍‌ଭାସନ ହୋଇଗଲା । ସେ ତାର ପାକୁଆ ପାଟିରେ ହସିଦେଇ କହିଲା—ମୋ' ପାଇଁ କ'ଣ ଲେଖିଛୁରେ ? ମୁଁ କ'ଣ ପାଠ ପଢ଼ିଛି ? ମୋ' ବାପା ତ ମତେ ପାଠ ପଢ଼େଇ ନ ଥିଲେ ! ତା' କଥାରେ ମୁଁ କିଛି ଉତ୍ତର ନ ଦେଇ କେବଳ ତାକୁ କୁଣ୍ଢାଇ ଧରିଲି ଏବଂ ଖୁବ୍ ଗର୍ବ, ଖୁବ୍ ଉଲ୍ଲାସ, ଖୁବ୍ କୃତଜ୍ଞତାରେ ପରିପୂର୍ଣ୍ଣ ହୃଦୟ ନେଇ, କେବଳ ଗୋଟିଏ କଥା ବାରମ୍ବାର ଭାବାପ୍ଳୁତ କଣ୍ଠରେ କହି ଲାଗିଲି—ତୋ'ରି ପାଇଁ ଲେଖିଛି ଲୋ ବୋଉ ! ତୋ'ରି ପାଇଁ । ମୋ ଅଜା ଗଣ ପକାଇ କହୁଛି—ତୋରି ପାଇଁ କେବଳ ତୋ'ରି ପାଇଁ ଲେଖିଛି । ଶୁଣ୍ ବୋଉ ଶୁଣ୍—

"କହଇ ଦାସ ଜଗନ୍ନାଥ—ଭାଷା ପ୍ରବନ୍ଧେ ଭାଗବତ ।"

ଆହା ! ପରମ ଭଗବତ କବି ଜଗନ୍ନାଥ ଦାସ, ଶୂଦ୍ରମୁନି ମହାକବି ସାରଳା ଦାସ, ମତକବି ବଳରାମ ଦାସ, କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, ପ୍ରେମଭକ୍ତିର ମହାଜନ କବି ଅଭିମନ୍ୟୁ, ଭକ୍ତଚରଣ, ଦୀନକୃଷ୍ଣ, କବିସୂର୍ଯ୍ୟ, ଗୋପାଳକୃଷ୍ଣ, ବନମାଳୀ, ବେଣୁଧର, ସାଲବେଗ, ମହାତ୍ମା ଭୀମଭୋଇ, ରାଧାନାଥ, ଗଙ୍ଗାଧର, ଫକୀର ମୋହନ, ଗୋପବନ୍ଧୁ, କାଳିନ୍ଦୀ ଚରଣ, ଗୋପୀନାଥ, ମାନସିଂ, ସଚ୍ଚିରାଉତରାୟ ପ୍ରମୁଖ ମହାନ୍ କବିମାନେ ଯେଉଁ ମହାନ୍ ଭାଷାରେ ଅପୂର୍ବ କାବ୍ୟକବିତା ସୃଷ୍ଟି କରିଅଛନ୍ତି, ସେଇ ପୂଜ୍ୟପାଦମାନଙ୍କର ଉତ୍ତରାଧିକାରୀ ଉତ୍ତରସାଧକ ରୂପେ ସେହି ଭାଷାରେ ହିଁ ଆଜି ପର୍ଯ୍ୟନ୍ତ ମୁଁ ଲେଖି ଚାଲିଛି । ଏହାଠାରୁ ବଳି ଆପ୍ତକାମ ଆନନ୍ଦଦାୟକ, ଗୌରବଜନକ ଓ ସୁକୀର୍ତ୍ତିବନ୍ତ ସାଧନା ଓ ସିଦ୍ଧି ମୋର ଏଇ ସାମାନ୍ୟ ଜୀବନରେ ବା ଆଉ କ'ଣ ଅଛି ?

ବନ୍ଧୁଗଣ ! ମୋ'ଠାରୁ ଏତେକ ଶୁଣିଲା ପରେ, ଆଉଥରେ ମତେ ଯେମିତି କେହି ପଚାରିବେ ନାହିଁ—ମୁଁ କାହିଁକି ଲେଖେଁ । ସତକୁସତ ମୋ ପାଖରେ ଏ ପ୍ରଶ୍ନର ସଠିକ ଉତ୍ତର ନାହିଁ । କିନ୍ତୁ କେହି ପଚାରିଦେଲେ, ଏମିତି ବାଉଳାଙ୍କ ପରି କ'ଣ ଗୁଡ଼ାଏ ଏଣୁତେଣୁ ଗପିଚାଲିବି ।

ହେଉ ! ଏତିକିରେ ମୋର ପ୍ରଗଲ୍‌ଭ ରସନା ଓ ଲେଖନୀ କ୍ଷାନ୍ତ ହେଉ ।

ଜୟ ମା' ଉତ୍କଳଭାରତୀ ପଙ୍କଜବାସିନୀ ମା' ସାରଳା । ଜୟ ଜୟ ।

॥ ॥ ॥

(୧୯୮୦ ଓଡ଼ିଆ ଯୁବଲେଖକ ସମ୍ମେଳନ, ଭୁବନେଶ୍ୱର ଅଧିବେଶନରେ ପଠିତ ।)

## ଶିବକୂଟ

( ପ୍ରଥମ ଦୃଶ୍ୟ )

ଆଜି ତୋ' ଇଜ୍ଜତ ମହତ ସାରିବିରେ ପୁନିଶର । ତୋ' ଦେବତା ପଣିଆ ଛଡ଼େଇବି । ତୋ' ମହାଦେବପଣିଆକୁ ବାରେଣ୍ଡା ଦି'କଡ଼ା କରିଦେବିରେ ପୁନିଶର । ତୋ'ର ସିନା ସବୁଦିନେ । ମୋର କିନ୍ତୁ ଦିନେ । ଆରେ ତୁ କି ଦେବତା ବୋଲଉଛୁରେ ! ତୋର କି ମହିମାରେ ? ତୋର କି ପ୍ରାକର୍ମରେ ? ଆରେ ତୋର ଯଦି ସେମିତି ସତକୁ ସତ ମହିମା ପ୍ରାକର୍ମ ଥା'ନ୍ତା, ତା'ହେଲେ ଆମର ଏମିତି ଏଇ ଦଶା ହୋଇଥା'ନ୍ତା ? ତୁ ପର କୋଉଠି ଜାଅନ୍ତା ଦେବତା । ଡାକିଲେ ଉଓ କରଉ । ଆରେ ନିଆଁଲଗା ବାଡ଼ିଖିଆ ପୁନିଶର । ଆମ ବେଳକୁ ତ କାହିଁ ତୋ' ପାଟିରୁ ପଦୁଟିଏ କିଛି ବାହାରିଲା ନାହିଁ ? ତୋ' ପାଟିରେ ଖୋଡ଼ ଫୁଟିଗଲା କିରେ ଉଇଶୁଆ ଦେବତା ? ହଇରେ ହେ ? ତୁ ମହନୀ ପଧାନର କୋଷ ବେମାରୀକି ଭଲ କଲୁଟି । ଆଠ ଦିନ ଅଖିଆ ଅପିଆ ପଡ଼ିରହିଲା ତୋ' ବୃଷଭ ପଛରେ । ଖାଲି ପ୍ରତିଦିନ ବେଲ ପତ୍ରଟିଏ ଆହାର କରେଇ । ସେଇଠୁ ଦିନେ ଘଡିରେ ତାକୁ ସପନେଇଲୁ । କହିଲୁ— ସାତ ମାଠିଆ ଗାଈ ଦୁଧରେ ମତେ କ୍ଷୀରଶାୟୀ କର । ଶହେ ଏକ

ଚମ୍ପାଫୁଲ ମୋ ମୁଣ୍ଡରେ ଚଢ଼ା । ସେଇଠୁ ମୋ ପାଦୁକକୁଣ୍ଡରେ ହାତ ବୁଡ଼େଇ ମୁଠାଏ କାଦୁଅ ପଙ୍କ ଆଖିବୁଜି ଖାଇଦେବୁ । ତୋତେ କୋଷ୍ଠ ବେମାରୀ ଛାଡ଼ିଯିବ । ମହନୀ ପଧାନ ସେଇଆ କଲା । ସମସ୍ତେ ଦେଖିଛନ୍ତି– ସେଇଦିନୁଁ କେମିତି ତା' ଘିଅରୁ ସବୁତକ ଛଉ ନିଭିଗଲା । ତା' ଗୋଡ଼ଫୁଟା ଆଙ୍ଗୁଠିଗୁଡ଼ାକ ପୁଣି କେମିତି ଗଜେଇ ଉଠିଲା । ସେମିତି, ସପନୀ ମହାପାତ୍ରକୁ ମକଦ୍ଦମାରେ ଜିତେଇ ଦେଲୁ ନାହିଁ ? ସେ କ'ଣ ସତରେ ଜିତିଥା'ନ୍ତା ? ତାକୁ ପୁଣି ସପ୍ତରଥୀ ଘେରି ଥେଲେ । ଆଉ ଗଉତ ମାଇପ ପାଗେଳୀ ହୋଇ ଯାଇଥିଲା । ସେ ବି ସେମିତି ତୋ' ପାଖରେ ଅଧ୍ୟା ପଡ଼ିବାରୁ, ତା' ମୁଣ୍ଡ ଠିକ୍ ହୋଇଗଲା । ଗୋପାଳ ସେନାପତିର ପିଠି ଘାଆ ଜମା ଶୁଖୁ ନ ଥିଲା । ପୂଜ ଭରଭର ହୋଇ ତା' ପିଠି ଦଲ ଦଲ ଦିଶୁଥିଲା । ତାକୁ ସେମିତି ଦୟା କଲୁ । ତା' ଘାଆ ଶୁଖିବାକୁ ଆଠଦିନ ଲଗିଲା ନାହିଁ । ଆରେ ପୁନିଶର । ଆମେ ତୋ' ସେବାକାରୀ । ତୁ ଦେବତା ହୋଇ କେମିତି ବୁଝୁନୁରେ ? ମୋ ଗେରସ୍ତ ତା' ବାଲୁତ କା'ଳୁ ତୋର ସେବା ପୂଜା କରି ଆସୁଛି । ତୋ' ମୁଣ୍ଡରେ ସବୁଦିନେ ଗରଏ ପାଣି ନ ଢାଳିଲେ, ଟେଳାଏ ନବାତ ନ ଘଷିଲେ, ଗିନାଏ ଚନ୍ଦନ ଘୋରି ନ ବୋଳିଲେ, ଧୁତୁରା, ଗଇସ, ଚମ୍ପା, କନିଅର ଯୋଉ ଫୁଲ ହେଉ ନ ଚଢ଼େଇଲେ, ବେଲ ପତ୍ରୀରେ ତୋତେ ନ ଘୋଡ଼େଇଲେ, ସେ ନିଜେ କୋଉଦିନ ପାଣି ଟୋପାଏ ତୁଣ୍ଡକୁ ନିଏ ନାହିଁ । ଆରେ, ଗୁଳିଶି ବର୍ଷ ହେଲା ସେ ତୋର ସେବାରେ ଖଟି ଆସିଛି । ଗୁଳିଶି ବର୍ଷ ହେଲା ତୋ' ମୁଣ୍ଡରେ ଲହୁଣୀ ନବାତ ଘଷି ଆସିଛି । ଆଉ କୁଆଡ଼ିକି ମନ ଦେଇ ନାଇଁ । ଗୃଷକୁ ନାଇଁ କି ବାସକୁ ନାଇଁ । ଘରେ ପିଲଙ୍କ ମୁହଁକୁ ଅନେଇ ନାଇଁ । ମାଇପ ମୁହଁକୁ ଅନେଇ ନାଇଁ । ତୋଅରି ଆଶାରେ, ତୋଅରି ଭରସାରେ ତା' କୁଟୁମ୍ବଯାକ ପଡ଼ିଛୁ ଗୁଳିଶି ବର୍ଷ ହୋଇଗଲା । ଆମେ ଏମିତି କୋଉ ଦୋଷ କରିଥିଲୁ ଯେ ତୁ ଆମକୁ ଏମିତି କଲବଲ କରି ମାରୁଛୁ ! ଆରେ ! ପୂଜାରୀ କୁଳରେ ଜନ୍ମ ଦେଲୁ, ନା ଗୃଷ, ନା ବଣିଜ, ନା ଗୁକିରି, କ'ଣ ଆମର ଅଛି ? ଛଅ ପ୍ରାଣୀ କୁଟୁମ୍ବ । ସଭିଙ୍କ ମୁହଁରେ ପୂର ଆଧାର ଗଣ୍ଡିଏ ବି ଦେଇ ପାରୁନାହୁଁ । 

ମିତି କ'ଣ ଆମେ ଚଳୁଛୁ, ତା' ଆମକୁ ଜଣା । ତତେ କ'ଣ ଜଣା

ଅଛି ? ସାତସିଆଁ ଶାଢ଼ୀ ଖଣ୍ଡିଏ ପିନ୍ଧିଛି ଯେ ପିଠି ଲୁଚେଇଲେ ଛାତି ଲୁଚୁ ନାହିଁ କି ଛାତି ଲୁଚେଇଲେ ପିଠି ଲୁଚୁ ନାହିଁ । ହେ ପୁନିଶର । ସତ କହ । ମୋ ଗେରସ୍ତ ତୋର କିଛି ଦୋଷ କରିଛି ? ସତ କହ । ମୋ ବଡ଼ପୁଅ ଶ୍ୟାମଘନ ଚୋରି କରିଛି ରଘୁ ସେନାପତି ନାତୁଣୀ ବେକରୁ ସୁନାହାର ? ସତ କହ । ସତ କହ କହୁଛି । ତୁ ଦେଖିଛୁ ? ଶ୍ୟାମଘନ ମୋର ଚୋରି କରିଛି ? ରଘୁ ସେନାପତିର ନଅ ଦଶବର୍ଷର ନାତୁଣୀ ତୋ' ପାଖକୁ ଲହୁଣୀ, ନବାତ, କଦଳୀ, ନଡ଼ିଆ ଆଣି ଥୋଇଥିଲା ଭୋଗ କରିବାକୁ । ମୋ ଗେରସ୍ତ ନ ଥିଲା । ମୋ ବଡ଼ପୁଅ ଶ୍ୟାମଘନ ଦେଉଳ ଜଗିଥିଲା । ତାକୁ ଦେଖି ରଘୁ ସେନାପତି ନାତୁଣୀ କହିଲା—ହେ ଶ୍ୟାମ । ଚଞ୍ଚଳ ଭୋଗ କରିଦେ । ଆଜି ସୋମବାର । ଘଣ୍ଟାଜଳ ନେଇକରି ଗଲେ ମୋ ଅଜା ପ୍ରସାଦୀ ପାଇବ । ମଟରରେ ବସି ପୁରୀ ଯିବ । ଆଜି ମକଦ୍ଦମା ତାରିଖ । ଯୋଗିନୀଖିଆ ରଘୁ ସେନାପତିର ସବୁ ଦିନେ ମକଦ୍ଦମା ତାରିଖ । ସବୁ ଦିନେ ପୁରୀ ଦଉଡୁଥିବ କଚେରୀ କାମରେ ଆଉ, ତା'ର ଯୋଉ ନାତୁଣୀ ଖଣ୍ଡକ ଚନ୍ଦ୍ରମା—ସଂସାର ଯାକର ଛଦ୍ମମତକ ତା'ରି ଠେଇଁ । ଏମିତି ଛୋପରୀ, ଏମିତି ଗହାବାଳୀ, ଏମିତି ଚତୁରୀ ଛଇଛଟକୀ ଏ ଖଣ୍ଡମଣ୍ଡଳରେ ନ ଥିବେ । ସେ ଏମିତି କହିଲାରୁ ମୋ ଶ୍ୟାମଘନ ତା' ହାତରୁ ଡାଲା ନେଇ ତୋ' ଦେଉଳକୁ ପଶିଲା । ନଡ଼ିଆ ଭାଙ୍ଗି ତୋ' ମୁଣ୍ଡରେ ପାଣି ଢାଳିଲା । ଲହୁଣୀ, ନବାତ, କଦଳୀ ତୋ' ଶିରରେ ଘଷିଲା । ଭୋଗ କଲା, ଚଣ୍ଡ ଟିକିଏ ରଖି ପ୍ରସାଦୀତକ ଚନ୍ଦ୍ରମା ହାତକୁ ବଢ଼ାଇଦେଲା । ସେ ଡାଲାଧରି ଚାଲିଗଲା । ଶ୍ୟାମଘନକୁ ପଚାରିବାରୁ ସେ ତ ମୋ ଆଗରେ ଏଇଆ କହିଲା ? ସେ ଯାହା କହୁ, ସବୁ ତ ପୁଣି ତୋ'ରି ଆଗରେ ହୋଇଥିବ ? ତୁଉ ତ ଫେର୍ ସବୁକଥା ଦେଖିଥିବୁ । ସତ ମିଛ ଜାଣିଥିବୁ । କହିଲୁ ଭଲା, କେତେବେଳେ ମୋ ଶ୍ୟାମଘନ ରଘୁ ସେନାପତିର ସେଇ ଛୋପରୀ ଛଇଛଟକୀ ନାତୁଣୀ ଚନ୍ଦ୍ରମା ବେକରୁ ଡରେଇ ଠକେଇ ସୁନାହାର ଛଡ଼େଇ ନେଲା ? ଫେର୍ ଯଦିଷ୍ଟ ସେ ଛଡ଼େଇ ନ ନେଲା, ତା'ହେଲେ, ତା'ହେଲେ ମୋ ପୁଅ ବାକ୍ସରୁ ତା' ସୁନାହାର କେମିତି ବାହାରିଲାରେ ବାଡ଼ିଖିଆ ମହାଦେବ ?

ହେ ପୁନିଶର । ସତ କହ । ସତରେ ଯଦି ତୁ ଜୀଅନ୍ତା ଠାକୁର ହୋଇଥିବୁ, ସତରେ ଯଦି ତୋର ସେମିତି ମହିମା ଥିବ, ତା'ହେଲେ ଏଇଠି, ଏଇ ଘଡି ଅଧରେ, ଘରିଆଡ଼ ଶୂନ୍‌ଶାନ୍ ଅନ୍ଧାର ଭିତରେ ତୁ ମୋ ଆଗେ ଉଭା ହୋଇ ସତକଥା କହିଦେବୁ । ମୋ ଶ୍ୟାମଘନ ସେ ଟୋକୀ ବେକରୁ ଡରେଇ ମରେଇ ସୁନାହାର ଛଡ଼େଇ ନେଇଛି କି ନାହିଁ । ଆରେ ମୋ ପୁଅକୁ ମୁଁ ଚିହ୍ନି ନାହିଁ ? ସେ ଟୋକା ତା' ବାପାଠଉଁ ବଳେ । ମାଛିକି ମଅ ବୋଲି କହିବ ନାହିଁ । ଦି'ଓଳି ଉପାସ ରହିଲେ ବି ତା'ପାଟିରୁ ବଚନ ବାହାରିବ ନାହିଁ । ମୋ ସାନପୁଅ ଦୁଃଖିଆ ନାଁରେ ହେଲେ କହିଥାନ୍ତା ! ମୁଁ ତା'ହେଲେ ବିଶ୍ୱାସ କରିଥାନ୍ତି । ସେଇଟା ହୁରୁମାଟାଏ । ପେଟ ବିକଳିଆଟାଏ । ଟାଉକାଟାଏ । ଯାହା ତାହା ହାତରୁ ଛଡ଼େଇ ନବ । ପାଟିରେ ପୁରେଇ ଦବ । ତାର ଆଗ ପଛ ନାହିଁ । ଲଜ୍ଜା ସରମ ନାହିଁ । ଯାହା ବୁଝିଥିବ ସେଇଆ । ଯାହା ମନହେବ, ତା' କରିବ । ହେଲେ, ତା' ପର ପିଲ୍ଲ ବି କେବେ ଘେରି ଗହାଜାନି କରିବା ମୁଁ ଶୁଣି ନାହିଁ । ବାପ ତ ନିଦା ବିଷ୍ଣୁ । କାହା ଜିନିଷ ଦେଖି ହାଇଁପାଇଁ ହେବା ମୁଁ ଦିନେ ବି ଦେଖି ନାହିଁ । ଦିନଯାକ ଚ ତୋ' ପାଖେ ପଡ଼ିଥାଏ । ତୋ' ସେବା ପୂଜା କରୁଥାଏ । ଘଡିରେ ପହୁଡ଼ ପକେଇ ଘରକୁ ଯିବ ଯେ ଭଗତ ପୋଥି ଧରି ବସିବ । ଭଗତ ପଢ଼ା ସଇଲେ ଗାଇ ବାଛୁରୀଙ୍କ ସେବା କରିବ । ଦୁଧ ଦୁହିଁବ । ଯାହା ଗଣ୍ଡିଏ ବାଢ଼ିଦେବ ଖାଇଦେବ । ବିଛଣା ଧଇଲେ ଘୁଙ୍ଗୁଡ଼ି ମାରିବ । ପିଲ୍ଲଏ ବି ସେମିତି । ବାପଠଉଁ ବଳି ନିରୀହ, ବାପଠଉଁ ବଳି ନିର୍ମାଖୀ । ସେ ପୁଣି ଘେରି କରିବେ ? କାହାକୁ ଠକିବେ ?

ହେ ପୁନିଶର ! ସତ କହ ! ମୋ ଶ୍ୟାମଘନ ରଘୁ ସେନାପତି ନାତୁଣୀ ବେକରୁ ସୁନାହାର ଠକେଇ ନେଇଛି ? ତୁ ଦେଖିଛୁ ? ହଇରେ ! ଘ୍ଲିଶିବର୍ଷ କାଳ ତୋ' ସେବା କରି ମୋ ଗେରସ୍ତ ଏଇ ଫଳ ପାଇଲ୍ଲ ? ମୋ ବଡ଼ପୁଅକୁ ପୁଣି ଘେରି ଅପରଧରେ ଆଜି ପୁଲିସି ବାନ୍ଧି ନେଲ୍ଲ ଥାନାକୁ ? ତା' କାନମୋଡ଼ି ମୋରି ଆଗରେ ତା' ଗାଲ୍ଲରେ ଠାଇଠାଇ କରି ଚଟକଣା ମାରିଲ୍ଲ ? ଘେଳ ବାଡ଼ିରେ ବାଡ଼େଇଲ୍ଲ ? ମୋ ମୁଣ୍ଡରେ ବଜ୍ର ପଡ଼ିଯାଉରେ ପୁନିଶର ! ମୁଁ ସେଇ ଗରିବ ଗେରସ୍ତର ମାଇପ ହେଇ, ସେଇ ଗରିବ

ନିର୍ମାଖୀ ଛୁଆଙ୍କ ମାଆ ହେଇ ମୋ ବଧି ସବୁ ସହିଛି । ହେଲେ, ଏ ଅପବାଦ ସହି ପାରୁନାହିଁ । ମୋ ଛାତି ଫାଟି ଯାଉଛିରେ ପୁନିଶର ! ସତରେ କଣ ମୋ ଶ୍ୟାମଘନ ଚୋର ? ହାର ଚୋରି କରିଛି ? ଆରେ ମୋ ଗର୍ଭରୁ ଚୋର ଜନ୍ମ ହୋଇଛି ? ସତକହ । ଆଜି ତୋତେ କଦାଷନ ଛାଡ଼ିବି ନାହିଁ । ତୋର ସବୁ ଦିନେ ତ ମୋର ଦିନେ । ବହୁ କଦର୍ଥନା ତୁ ଆମ୍ଭଙ୍କୁ ଦେଇଛୁ । ଆମେ ଖେଦ ଉପାସରେ ଦିନ କାଟିଛୁ । ମୋ ବଡ଼ଝିଅ ବାହା ହେବାର ବରଷ ପୂରି ନାହିଁ, ଗଣ୍ଡ ହେଲା । ସେ କଷ୍ଟ ବି ସହିଛୁ । ମୋ ପିଲାମାନେ ଚୂଲିକି ହେଲେ ନାହିଁ—କି ଜାଲକୁ ହେଲେ ନାହିଁ—ସେ କଥା ମଧ୍ୟ ସହିଛୁ । ମୋ ବାପଘର କେହି ପାଣି ମୁନ୍ଦିଏ ଦେବାକୁ ରହିଲେ ନାହିଁ, ସେ କଥା ବି ସହିଛୁ । ଗୋଟାଏ ପିଲାକୁ ମୋର ଛୋଟା କରି ପକାଇଛୁ । ସେ କଥା ବି ସହିଛୁ । ମଝିଆଁ ଝିଅ ବାହାଘରକୁ ଦାମ ବାରିକ ଘରୁ ଜମି ବନ୍ଧା ଦେଇ ଟଙ୍କା ଆଣିଥେଲୁ । ସେ ଟଙ୍କା ସୁଧ ମୂଳ ହେଇ ପାଞ୍ଚ ବରଷରେ ବୋଝେ ହେଲା । ସୁଝି ପାରିଲୁ ନାହିଁ । ଦାମ ବାରିକ ଆମର ବାଡ଼ି ତଳ ଭତହାଣ୍ଡି ଜମିତକ କବଲା କରି ନେଲା । ତାକୁ ବି ସହିଛୁ । ହେଲେ, ଏ ଅପବାଦ ମୁଁ ଆଉ ସହି ପାରିବି ନାହିଁ । ମୋ ପୁଅ ଚୋରି କରିଛି—ଏତେକ ଭବିଲା ବେଳକୁ ମୋ ଛାତି ଫାଟି ଯାଉଛି । ମୁଁ ଆଉ ସହି ପାରିବି ନାହିଁ । ଏଇଠି ତୋ ଆଗରେ ବିଷ ଖାଇ ମରିବି । ହେଇଟି ଦେଖ୍, ହାତରେ ଏ କଣ ଧରିଛି କହିଲୁ ? ଏଣ୍ଡ୍ରେସ ପୁଡ଼ିଆ । ଖାଇବି—ତୋରି ଉପରେ ମୂର୍ଚ୍ଛାର ହୋଇ କଚାଡ଼ି ପଡ଼ିବି । ତୋର ଲହୁଣୀ, ନବାତ ଘଷା କାୟାକୁ ଅପବିତ୍ର କରିବି । ତୋ ଇଜ୍ଜତ ମହତ ସାରି ଦେବିରେ ପୁନିଶର । ସତ କହ, ସତରେ ଯଦି ତୋର ଏତେ ମହିମା, ଏତେ ପ୍ରାକ୍ରମ, ସତରେ ଯଦି ତୁ ଏଡ଼େ ପ୍ରତ୍ୟକ୍ଷ ଦେବତା, ଡାକିଲେ ଉଓ କରଉ—ତେବେ ଏଠି ତ ଏଇନେ କେହି ନାହିଁ—ଅନ୍ଧାର ରତି—ନିଶା ଗର୍ଜୁଛି—ମୋ ଆଗରେ ତ୍ରିଶୂଳ ଧରି ଉଭା ହୋଇଯା' ଆଉ ତୋ' ସୋଚଖୁରେ ଯାହା ଦେଖୁଛୁ—ମୋ ଆଗରେ ସଫା ସଫା କହିଯା । ଯଦି ମୋ ପୁଅ ନିର୍ଦ୍ଦୋଷ, ତା'ହେଲେ ଆଜି ରତି ନ ପାହୁଣୁ ରଘୁ ସେନାପତି ଘରେ ତୋ ନାଗସାପ ପଶି ତାକୁ ଦଂଶି ଦଉ, ତା' ଜୀବନ ଯାଉ, ନ ହେଲେ, ତା'ର ସେଇ ଛଇଛଟକୀ ନାତୁଣୀକି ଦଂଶିଦଉ, ତା' ଜୀବନ ଯାଉ, ଆଉ ଯଦି ମୋ ପୁଅ ସତକୁ ସତ ଚୋରି

କରିଥାଏ, ତା'ହେଲେ ତାକୁ ଖେମା କର । ତାକୁ ଥାନାରୁ ମୁକୁଳେଇଦେ । ତା ବୁଦ୍ଧି ବଦଳେଇ ଦେ । ତାକୁ ତା' ବାପବୁଦ୍ଧି ଦେ । ତା' ଭିତରୁ ଲୋଭ କାଢ଼ିଦେ । ତାକୁ ସୁନା କରିଦେ । ତା'ପାଇଁ ମୁଁ ପ୍ରାଶ୍ଚିତ କରିବି । ଚୋରି ଆଗରେ ଏଣ୍ଡ୍ରେସ ଖାଇ ବୃଷଭ ପଛପଟେ ଏ ଜୀବନ ତ୍ୟଜା କରିବି । ହେ ପୁନିଶର ! ଉଭା ହ'—ଉଭା ହ' ମୋ ଆଗରେ । ମଣିଷ ଦେରିକା ମୋ ଆଗରେ ସଫା ସଫା କହିଦେ କଣ ହୋଇଛି ? ମୋ ପୁଅ ଶ୍ୟାମଘନ ରଘୁ ସେନାପତି ନାତୁଣୀ ବେକରୁ ସୁନାହାର ଠକେଇ ନେଇଛି ? ଆଉ କଣ ସେ ଟୋକୀକି ଫୁସୁଲା ଫୁସୁଲି କରି ତା'ଠାରୁ ହାରଟା ନେଇଯାଇଛି ? ସେକଥା କେବେ ହେଇ ନ ଥିବରେ ପୁନିଶର । ସେ ଯୋଉ ଘହାବାଳୀ ଟୋକୀ, ତାକୁ କିଏ ଫୁସୁଲେଇ ପାରିବ ? ସେ ବରଂଚ ପାଞ୍ଚଟା ଭେଣ୍ଡଆଙ୍କ ନାକକାନ କାଟି ଛାଡ଼ିଦେବ । ତା' ହେଲେ ମୋ ଶ୍ୟାମଘନ ବାକୁସକୁ ତା' ସୁନାହାରଟା ଆସିଲା କୁଆଡୁ ? ଓଃ ! ହେ ପୁନିଶର ! ଏ କି ଦେବକୂଟ ମାୟା !!...ଓଃ ! ଏ କ'ଣ ? ଏ କ'ଣ ? ମତେ କ'ଣ ଚାରିଦିଗ ଶୂନ୍ୟ ନାଗୁଛି । ମୋର ବୁଦ୍ଧିଜ୍ଞାନ ହଜିଯାଉଛି । ଅନ୍ଧାର, ଅନ୍ଧାର, ଅନ୍ଧାର, ଓଃ । ଏ କ'ଣ ? ହେ ପୁନିଶର ! କିଏ ମତେ ଟେକି ନଉଛି ? କିଏ ମତେ କଚାଡ଼ି ଦଉଛି ? ମୋ ଆଖି ବୁଜି ହୋଇ ଯାଉଛି । ମୁଁ ଆଉ କିଛି ଦେଖି ପାରୁନାଇଁ, ମୋର ଚେତା ବୁଡ଼ିଯିବ କି ଆଉ ? ହେ ପୁନିଶର । ହେ ପୁନିଶର । ହେ ପୁନିଶର । ମୋ ଜୀବ ଛାଡ଼ିଗଲା ଭଳି ମତେ ନାଗୁଛି, ମତେ ଏତିକି ବେଳେ ହେଲେ କହିଦେ, ଥରୁଟେ ହେଲେ କହିଦେ ଯେ ମୋ ପୁଅ ସୁନାହାର ଚୋରି କରିନାହିଁ । ମୁଁ ଏତିକି ଶୁଣିଲେ ଖୁସିରେ ମରିଯିବି । ମୋର ଆଉ ଏ ଜୀବନକୁ ଲୋଭ ନାହିଁ । ହେ ପୁନିଶର । ଓଃ, ଓଃ, ମୋ ଧିଅ ତ ଝିମିଝିମି ହେଇଯାଉଛି । ମୋ ପ୍ରାଣ ଛାଡ଼ି ଛାଡ଼ି ଆଉଛି । ଓଃ ! ନାଃ—ମୁଁ—ମୁଁ—ମୁଁ—ହେ ପୁନିଶର ।...........

( ଦ୍ୱିତୀୟ ଦୃଶ୍ୟ )

ହେ ପୁର୍ଣ୍ଣେଶ୍ୱର । ହର ହର ମହାଦେବ । ବଂ ବଂ ଭୋଳାନାଥ । ଆପଣ ତ ସବୁ ଜାଣନ୍ତି । ମୁଁ କ'ଣ ସତରେ ଚନ୍ଦ୍ରମା ବେକରୁ ତା' ସୁନାହାର ଠକି

ନେଇଛି ? ରଘୁ ସେନାପତି ନାତୁଣୀ ଚନ୍ଦ୍ରମା ତା' ବୁଢ଼ାବାପାକୁ ମୋ ନାମରେ କ'ଣ ଏଇ ଚୋରୀ ଅପବାଦ ଦେଲା ? ଏତେବଡ଼ ମିଛ କହିବାକୁ ତା' ଜିଭ ଅଟକିଗଲା ନାହିଁ ? ନାତୁଣୀଠଉଁ କଥାଣ ଶୁଣି ରଘୁ ସେନାପତି ମୋ ବିରୁଦ୍ଧରେ ପୋଲିସିରେ ଖବର ଦେଲା ? ପୋଲିସ ମତେ ଘରୁ ବାନ୍ଧି ଆଣି ଏଠି ହାଜତରେ ରଖିଛି । ପୋଲିସ ମୋ ଗାଲରେ କଷିକରି ଛଅଟା ଚଟକଣି ମାରିଲା । ସତ କହ ବୋଲି ଧମକାଇଲା । ମୁଁ ଧିରପଣରେ ସତ କହିଲି । ମୁଁ ଚନ୍ଦ୍ରମା ବେକରୁ ସୁନାହାର ଚୋରି କରିନାହିଁ ବା ଛଡ଼ାଇ କରି ଆଣିନାହିଁ ବୋଲି ଉଚିତ କଥା କହିଲି । ପୋଲିସ ଆମ ଘର ତଲାସ କଲା । ମୋ ବାକୁସ ଖୋଲିଲା । ସେଇ ସୁନାହାରଟାକୁ ବାହାର କଲା । ଗାଁ ଜାକର ଲୋକ ଜମା ହୋଇଥାନ୍ତି । ସେଇଠୁ ପୋଲିସ ମତେ ତା' ଗୋଲବାଡ଼ିରେ ପାହାର ପରେ ପାହାର କଷି ଦେଇଗଲା । ମୋ କହୁଣି ଆଉ ଆଣ୍ଠୁଗଣ୍ଠି ଉପରେ ମାଡ଼ ଚଢ଼େଇଲା । ମତେ ଧମକେଇଲା । କହିଲା—ଶଳା ପୂଜାରୀ ଟୋକା । ତୁ ଚୋରି କରିନୁ ତ ଏ ଚେନ୍ ତୋ' ବାକୁସକୁ ଆଇଲା କେମିତି ? କ'ଣ ମହାଦେବ ଯା ଭିତରେ ଭର୍ତ୍ତି କରିଦେଲେ ? ନା' ତୋ' ମାଆ ଜନ୍ମ କଲା ବେ ? ହଇରେ ଶଳା ? ତତେ କ'ଣ ଆଉ ରଘୁ ସେନାପତିର ଦଶବର୍ଷର ନାତୁଣୀ ବାହାହବ ବୋଲି ସୁନାହାରରେ ବରଣମାଳା ପକେଇ୍ ଦେଲା ? ଶଳା, ଛଡ଼େଇ ଆଣିନୁ ଯଦି, ତା'ହେଲେ ତାକୁ ଫୁସୁଲେଇ କରି ଆଣିଥିବୁ । କହବେ ଶଳା । ମାନି ଯା' । ଏତିକି କହି ପୋଲିସ ମୋ ଗାଲରେ ଦୁଇଟା ବ୍ରହ୍ମ ଚାପୁଡ଼ା କଷି ଦେଲା । ମୁଁ କିଛି କହୁ ନ ଥାଏ । ଗାଁ ଜାକର ଲୋକ ଠିଆ ହୋଇ ଦେଖୁଥା'ନ୍ତି । ପୋଲିସ୍ ପୁଣି ମୋ ଚୁଟିକୁ ଧରି ଝିଂକି ଝିଂକି କହିଲା—ହେ ଶଳା ପୂଜାରୀ ଟୋକା । ତୋ' ବାକୁସରୁ ମାଲ୍ ବାହାରିଲା ନା ନାହିଁ ? ତୁ କହୁଚୁ କ'ଣ ? ତୁ ଚୋରି କରିନୁ ? ଛଡ଼େଇ ଆଣିନୁ ? ଆବେ ତୁ ତାକୁ ପିଲା ଲୋକ ଦେଖି ଫୁସୁଲେଇ ଆଣିନୁ ? ଡରେଇକରି ଆଣିନୁ ? ମାନିଯା'ବେ ଚଞ୍ଚଳ । ନ ହେଲେ ତୋ' ମୁଣ୍ଡ ଫଟେଇ ଦେବି । ତୋ' ଗୋଡ଼ ଭାଙ୍ଗିଦେବି । ରଘୁ ସେନାପତି ବୁଢ଼ା ସେଠି ଠିଆ ହୋଇଥାଏ । ସେ ଆମ ଗାଁର ସବୁ ଠାରୁ ଧନୀ ମହାଜନ । ତା'ର ଅମାପ ଧନ । ତା' ଘରେ ସୁନା ଆଉ ରୂପା ହଣ୍ଡା ହଣ୍ଡା ହୋଇ

ପୋତା ହୋଇଛି ବୋଲି ଲୋକେ କହନ୍ତି । ଗାଁଟା ଝାଙ୍କ ସମସ୍ତେ ତା'ର ଧାଉଆ । ତା'ର ସବୁଦିନେ ମକଦ୍ଦମା ଲାଗିଥାଏ । ତା' ହୃଦୟରେ ଦୟାପଦ ନାହିଁ । ହେଲେ, ତା'ର ଆପଣଙ୍କ ତୁଲେ ଅଚଳା ଭକ୍ତି । କାହାକୁ ପଇସାଟିଏ ସୁଧ ଛାଡ଼ିବ ନାହିଁ । କିନ୍ତୁ, ହେ ପୂର୍ଣ୍ଣେଶ୍ୱର । ସେ ଆପଣଙ୍କ ପାଇଁ ଦୁଇଟା ରୂପା ନାଗ ଆଉ ଦୁଇଟା ତମ୍ବା ନାଗ ଦେଇଛି । ଆପଣଙ୍କ ବୃଷଭ ଉପରେ ପକ୍କା ଗୁମ୍ବୁଆ ବନେଇ ଦେଇଛି । ପ୍ରତିଦିନ ସେ ଆପଣଙ୍କ ପାଖକୁ ଭୋଗ ପଠାଏ । ଆପଣଙ୍କ ଅନୁଗ୍ରହରୁ ତା'ର ସବୁ କଥାରେ ଉନ୍ନତି ହୋଇଛି । ସବୁ ମକଦ୍ଦମାରେ ତା'ର ଡ଼ିଗ୍ରୀ ହେଉଛି । ସେ ଆପଣଙ୍କ ବଡ଼ ଭକ୍ତ । ଅଥଚ, ପୋଲିସ ଆଗରେ ସେଦିନ ସେ ମୋ ନାମରେ କେମିତି ମିଛ କହିଦେଲା ! ସେ କହିଲା—ମୁଁ କୁଆଡ଼େ ତା' ନାତୁଣୀ କି କହିଲି—ମତେ ପୂର୍ଣ୍ଣେଶ୍ୱର ସପନେଇଛନ୍ତି, ସେଇ ତୋ ବେକରୁ ସୁନାହାରଟା ମତେ ଦେଇ ଦେ, ମୁଁ ମହାଦେବଙ୍କ ଉପରେ ଚଢ଼େଇବି । ତା'ହେଲେ ତୋ' ଅଜାର ଏଇ ମକଦ୍ଦମାରେ ଡ଼ିଗ୍ରୀ ହେବ । ତା' ନ ହେଲେ, ତୋ' ଅଜା ଏ ମକଦ୍ଦମାରେ ହାରିବ ଆଉ ଜେଲ୍ ଯିବ । ମୋ କଥାଶୁଣି କୁଆଡ଼େ ତା'ର ବାଳୁତ ନାତୁଣୀ ଚନ୍ଦ୍ରମା ଭୟରେ ତା' ବେକରୁ ସେଇ ଦୁଇ ଭରି ଓଜନର ସୁନା ଚେନ୍‌ଟା କାଢ଼ି ମତେ ଦେଇ ଦେଲା । ହେ ପୂର୍ଣ୍ଣେଶ୍ୱର । ଆପଣ ତ ସବୁ ଦେଖିଛନ୍ତି, ସବୁ ଶୁଣିଛନ୍ତି । ଏ କଥା ସତ ? ଚନ୍ଦ୍ରମା ତା' ଅଜାକୁ ଏମିତି ମିଛ କହିଛି ? ନା ତା' ଅଜା ମନରୁ ଏତେକ ଫାନ୍ଦି ପୋଲିସ ଆଗରେ କହିଲା ? ପୋଲିସ ନିଜେ କୁଆଡ଼େ ଚନ୍ଦ୍ରମାକୁ ପଚାରିବାରୁ ସେ ଠିକ୍ ଏଇ ଜମାନ୍‌ବନ୍ଦୀ ଦେଲା । ଚନ୍ଦ୍ରମା ଏମିତି ଡାହା ମିଛ କହି ପାରିଲା ? ଆପଣ ତ ଚନ୍ଦ୍ରମାକୁ ଦେଖିଛନ୍ତି । ତା'ର କ'ଣ ବାଳୁତ ବୁଦ୍ଧି ? ତାକୁ କିଏ ଠକି ପାରିବ ?

ପୋଲିସ ଆଗରେ ରଘୁ ସେନାପତି ଠାରୁ ଏ କଥା ଶୁଣି ଗାଁ ଲୋକ ମୋ ଆଡ଼ିକି ଘୃଣାରେ ଅନେଇଲେ । ସମସ୍ତେ ସେ କଥା ବିଶ୍ୱାସ କରିଗଲେ । ମୋ ପାଇଁ କେହି ପଦେ କହିଲେ ନାହିଁ । ଗାଁ ବାଲାଙ୍କର ବା ଦୋଷ କ'ଣ ? ସେମାନେ ତ କେହି କିଛି ସ୍ୱ-ଚକ୍ଷୁରେ ଦେଖି ନାହାନ୍ତି । ତା' ଛଡ଼ା ରଘୁ ସେନାପତିକୁ ସମସ୍ତଙ୍କର ଡର । ପେର ତା' ଜୋଇଁ ଏମ୍. ଏଲ୍. ଏ. ହୋଇଛନ୍ତି । ରଘୁ ସେନାପତି ପାଟିରୁ କଥା ସରୁ ନ ସରୁଣୁ ପୋଲିସ ମୋ

ନାକକୁ ଖୋଟାଏ ଘୁଷି ମାରିଲା । କହିଲା, ଶଳା ମାନି ଯା'ବେ । ଚଞ୍ଚଳ ମାନି ଯା' । ମୋ ନାକରୁ ରକ୍ତ ବୋହି ପଡ଼ିଲା । ମୁଁ କାନ୍ଦି ପକେଇଲି । କହିଲି, ପୂର୍ଣ୍ଣେଶ୍ୱର ମହାଦେବ ସାକ୍ଷୀ ଅଛନ୍ତି । ମୁଁ ଯଦି ଏ ହାର ଚୋରି କରିଥିବି, କି ଛଡ଼େଇ ଆଣିଥିବି, କି ତାକୁ ମିଛ କଥାରେ ଫୁସୁଲେଇ ଆଣିଥିବି, ତେବେ ମତେ ଆଜିଠଉଁ ତିନିଦିନ ଭିତରେ ପୂର୍ଣ୍ଣେଶ୍ୱରଙ୍କ ନାଗ ଦଂଶିବ । ମୋ ପାଟିରୁ କଥା ଶୁଣୁଶୁଣୁ ପୁଣି ଥରେ ମୋ ମାଆ ସେଇଠି ପଡ଼ି ଅଚେତ ହୋଇଗଲା । ପୋଲିସ୍ ମୋ ଅଣ୍ଟାରେ ଦଉଡ଼ି ବାନ୍ଧିଲା । ମୋତେ ହାତକଡ଼ି ପକାଇ ଏଇ ଥାନାକୁ ଆଣିଲା । ଏଇ ହାଜତ ଘରେ ମତେ ବନ୍ଦୀ କରି ରଖିଛି । କାଲି ସକାଳୁ ମତେ ପୁରୀ ନବ । ସେଠି ବଡ଼ ହାକିମ ମୋର ବିଚାର କରିବେ । ମତେ ଜେଲ୍‌ରେ ପୂରାଇବେ । ମତେ ଆଜି ଏଠି ଦିନଯାକ ଖାଇବାକୁ ଦେଇ ନ ଥିଲେ । ସଞ୍ଜବୁଡ଼େ ଦୁଇଟା ରୋଟି ମୋ ପାଖକୁ ଫୋପାଡ଼ି ଦେଇଗଲା । ଗୋଟେ ଟିଣ ଡବାରେ ଡବାଏ ପାଣି ଥୋଇ ଦେଇ ଗଲା । ମୁଁ ରୁଟିକି ଛୁଇଁଲି ନାହିଁ । ସେ ପାଣିକି ମଧ୍ୟ ପାଟିକି ନେଲି ନାହିଁ । ମୁଁ ଜିଦି ଧରିଛି, ଆଜିଠାରୁ ଅନ୍ନ ଜଳ ତେଜ୍ୟା କରିବି । ହେ ପୂର୍ଣ୍ଣେଶ୍ୱର । ଆପଣଙ୍କ ନାମ ଧରି ନ ଖାଇ ନ ପିଇ ମରିବି । ଆପଣ ମତେ ବିନା କାରଣରେ ଚୋରି ଅପବାଦ ଦେଲେ । ପୋଲିସ ହାତରେ ବନ୍ଧାଇଲେ । ମାଡ଼ ମରେଇଲେ । ହାଜତରେ ପୂରାଇ ବନ୍ଦୀ କରି ରଖିଲେ । ଅଥଚ ମୋ ବାପା ଆପଣଙ୍କ ସେବାକାରୀ । ମୁଁ ମଧ୍ୟ ଆପଣଙ୍କର ସେବାକାରୀ । ମୋ ନାମରେ ଏ ମିଛ ଅପବାଦ ରଟିଲା । ଅଥଚ, ଅସଲ କଥା ତ କେହି ଜାଣିଲେ ନାହିଁ । ମୁଁ ମଧ୍ୟ ଅସଲ କଥାଟି କାହାକୁ କହି ପାରିଲି ନାହିଁ । କହି ମଧ୍ୟ ପାରିବି ନାହିଁ । କହିଲେ କ'ଣ ଏ କଥା କିଏ ବିଶ୍ୱାସ କରିବ ? ମୁଁ ତ ମୋ' ମାଆକୁ ମଧ୍ୟ ଅସଲ କଥା କହି ପାରିଲି ନାହିଁ । କିନ୍ତୁ ମୋ ମାଆ କଣ କେବେ ଚୋର ବୋଲି ଭାବି ପାରିବ ? କିନ୍ତୁ, ପୋଲିସ ଯେତେ-ବେଳେ ସତକୁ ସତ ମୋ ବାକ୍ସରୁ ରଘୁ ସେନାପତି ନାତୁଣୀର ସୁନା ଚେନ୍ ବାହାର କଲା, ସେତେବେଳେ ମୋ ମାଆର ଚେତା ବୁଡ଼ିଗଲା । ମୋ ବାପା କିନ୍ତୁ ସେମିତି ଧୀର ହୋଇ ଠିଆ ହୋଇଥା'ନ୍ତି । ପୋଲିସ ଯାହା ପଚାରୁଥାଏ, ଧୀର ଭାବେ ତା'ର ଉତ୍ତର ଦେଉଥା'ନ୍ତି । ବାପା ମତେ

କିଛି ପଗ୍ଭରିଲେ ନାହିଁ । ପୋଲିସ୍ ମତେ ବାନ୍ଧି ଆଣିଲା ବେଳେ ସେ ଦୁଇହାତ ଯୋଡ଼ି ଉପରକୁ ଗ୍ଭହିଁ କେବଳ ଗୋଟିଏ ଧାଡ଼ି କହିଲେ—ହେ ପୂର୍ଣ୍ଣେଶ୍ୱର ! ହେ ଆଶୁତୋଷ ! ତୋର ଯାହା ଇଚ୍ଛା, ତା' ହେଉ । ତୁଇ ଜାଣୁ ସତ୍ୟ ମିଥ୍ୟା ।

ହେ ପୂର୍ଣ୍ଣେଶ୍ୱର ! ବାପାଙ୍କଠାରୁ ଶୁଣିଛି, ଆପଣଙ୍କର କେଡ଼େ କେଡ଼େ ମହିମା କଥା । ଆପଣ ଦକ୍ଷପ୍ରଜାପତିର ଯଜ୍ଞ ଧ୍ୱଂସ କରିଥିଲେ । ଆପଣ ସଂସାରଯାକର ବିଷ ପାନକରି ସଂସାରକୁ ବିଷଜ୍ୱାଳାରୁ ରକ୍ଷା କରିଛନ୍ତି ଓ ନିଜେ ସେହି ବିଷର ଜ୍ୱାଳା ଭୋଗୁ ଅଛନ୍ତି । ଆପଣ ନୀଳକଣ୍ଠ । ଆପଣ ଯୋଗେଶ୍ୱର । ଆପଣ ରୁଦ୍ର । ଆପଣ କନ୍ଦର୍ପର ଦର୍ପହରଣ କରିଛନ୍ତି । ଆପଣ ମୃତ୍ୟୁକୁ ଜୟ କରିଛନ୍ତି । ଆପଣ ଆଶୁତୋଷ । ଅଳ୍ପକେ ଭକ୍ତର ମନୋବାଞ୍ଛା ପୂର୍ଣ୍ଣ କରନ୍ତି । ଆପଣ ପୁଣି ଭୋଳାନାଥ । ଦୋଷୀର ଦୋଷକୁ ଚଞ୍ଚଳ ଭୁଲିଯାନ୍ତି । ହେ ପୂର୍ଣ୍ଣେଶ୍ୱର ! ତା'ହେଲେ ଆପଣଙ୍କ ଆଗରେ ତ ସବୁକଥା ଘଟିଥିଲା । ଆପଣ ନିଶ୍ଚୟ ସବୁ କଥା ଜାଣିଛନ୍ତି । ଆପଣ କହନ୍ତୁ—ରଘୁ ସେନାପତି ନାତୁଣୀ ଚନ୍ଦ୍ରମା ଠାରୁ ମୁଁ ତା' ସୁନାହାର କୌଣସି ପ୍ରକାରେ ଛଡ଼େଇ ଆଣିଛି ? ଆପଣ ଜୁଆଡ଼େ ଅତ୍ୟନ୍ତ ଜୀବନ୍ତ ପ୍ରତ୍ୟକ୍ଷ ମହିମାବନ୍ତ ମହାଦେବ । ଆମେ ବଂଶାନୁକ୍ରମେ ଆପଣଙ୍କର ସେବକ । ଆପଣ କଣ ଜାଣନ୍ତି ନାହିଁ, ମତେ ଆସି ଅଠର ବର୍ଷ ହେଲାଣି, ମୁଁ କେବେ ମିଛ କଥା କହି ନାହିଁ ? କାହାର କିଛି କେବେ ଗ୍ଭେରି କରି ନାହିଁ ? ମୋ ବାପା ପୁଣି କେଡ଼େ ଗରିବ । ଅଥଚ ସେ କେଡ଼େ ଧର୍ମବନ୍ତ ! ମୋ ମାଆର ପେଟକୁ ଦାନା ଅଣ୍ଟେ ନାହିଁ କି ପିଠିକି କନା ଅଣ୍ଟେ ନାହିଁ । ଅଥଚ ସେ କେଡ଼େ ଧର୍ମବତୀ ! ହେ ପୂର୍ଣ୍ଣେଶ୍ୱର ! ରଘୁ ସେନାପତି କଣ ମୋ ବାପା-ମାଆଙ୍କଠାରୁ ଆପଣଙ୍କର ବେଶି ବଡ଼ ଭକ୍ତ ? ହେ ପ୍ରଭୁ । ଆପଣ ଯଦି ସତକୁ ସତ ମହିମାରେ ଥାନ୍ତି, ତେବେ କୌଣସି ପ୍ରକାରେ ଯାହା ସତ କଥା, ତାହା ପ୍ରକାଶ କରି ଦିଅନ୍ତୁ । ମୁଁ ବର୍ତ୍ତମାନ ଏଠି ଏମିତି ହାଜତରେ ପଡ଼ିଛି । ତେଣେ ଘରେ ମତେ ଗ୍ଭେର ବୋଲି ଭାବି ମୋ ମାଆର ଛାତି ବିଦାରି ହୋଇ ଯାଉଥିବ । ସେ ନିଶ୍ଚେ ଆତ୍ମହତ୍ୟା କରିଦେବ । ମୋ ବାକୁସରୁ ଚନ୍ଦ୍ରମାର ସୁନାହାର ବାହାରିଲା ମାନେ, କଣ ମୁଁ ତାକୁ ଅନ୍ୟାୟ ଭାବେ

ଆଣିଛି ? ଏହି ଘଟଣାର ରହସ୍ୟ ଆଉ କିଏ ଜାଣୁ ନ ଜାଣୁ ହେ, ପୂର୍ଣ୍ଣେଶ୍ୱର ! ଆପଣଙ୍କୁ କୋଉ କଥା ଅଛପା ଅଛି ? ଆପଣ ଯଦି ନିଜ ମୁହଁରେ ସତ କଥାଟା କହି ଦିଅନ୍ତେ, କିମ୍ବା ରଘୁ ସେନାପତିଙ୍କୁ ସ୍ୱପ୍ନରେ ଦେଖାଦେଇ କହି ଦିଅନ୍ତେ, କିମ୍ବା ଏଇ ପୋଲିସ ବାବୁଙ୍କୁ ସ୍ୱପ୍ନରେ ଦେଖାଦେଇ କହି ଦିଅନ୍ତେ, ତା'ହେଲେ ସବୁ କଥା ସତକୁ ସତ ଜଣା ପଡ଼ିଯାନ୍ତା । ମୁଁ କିନ୍ତୁ ସତ କଥାଟା ମୋ ମୁହଁରେ କହି ପାରିବି ନାହିଁ । କାହିଁକିନା ମୋ ଛୋଟ ମୁହଁରୁ ସେତେବଡ଼ କଥା ଶୁଣି କେହି ବିଶ୍ୱାସ କରିବେ ନାହିଁ । ଚନ୍ଦ୍ରମା ତ କହି ପାରିଲା ନାହିଁ । ସେ କଣ ତାର ବୁଢ଼ାବାପାକୁ କହିଲା ଯେ ଗୋକୁଳି ତିହାଡ଼ୀଙ୍କ ପୁଅ ଶ୍ୟାମଘନ ତିହାଡ଼ୀ ଠାକୁରଙ୍କନାଁରେ ତା'କୁ ମିଛ କଥା କହି ତାର ଦୁଇ ଭରି ଓଜନର ସୁନା ହାରଟାକୁ ଶିଖେଇ ନେଇଗଲା ବୋଲି ? ଏଡ଼େ ମିଛକଥା ସେ କହି ପାରିଥିବ ? ତା' ଛାତି ଫାଟି ଯାଇ ନ ଥିବ ? କାହିଁକି ସେ ସତ କଥାଟା କହିଲା ନାହିଁ ? ତା'କୁ କଣ ଡର ମାଡ଼ିଲା ? ଏଇଥିପାଇଁ ଡର ମାଡ଼ିଲା ଯେ ସେ ଯଦି ସତ କଥାଟା କହିଦେବ ; ତେବେ ତା' କଥାକୁ କେହି ବିଶ୍ୱାସ କରିବେ ନାହିଁ ? ତା' କଥା ଶୁଣି ସମସ୍ତେ ହସି ଉଡ଼େଇ ଦେବେ ? କହିବେ—ଆରେ ଯାଃ ! ନଅ ଦଶବରଷର ମେଞ୍ଚଡ଼ ଟୋକୀ । କଣ ସବୁ କହିଯାଉଛି ମନକୁ ମନ—ଏଣୁ ତେଣୁ— କେତେ ବଡ଼ ବଡ଼ କଥା । ତା'ହେଲେ, ଏଇ ଭୟରେ କଣ ଆଉ ଚନ୍ଦ୍ରମା ସତ କଥା କହିଲା ନାହିଁ ? କହି ପାରିଲା ନାହିଁ ? ମୁଁ ତାକୁ ଠାକୁରଙ୍କ ନାମରେ ମିଛ କଥା କହି ଡରେଇ ନେଇଗଲି ବୋଲି ମନରୁ ଯୋଡ଼ି କହିଦେଲା ? ତା'ହେଲେ ବର୍ତ୍ତମାନ ସତ କଥାଟା କିଏ କହିବ ? ସେ ତ କହି ପାରିଲା ନାହିଁ, କି ମୁଁ ମଧ୍ୟ କହି ପାରିବି ନାହିଁ । ତା'ହେଲେ, କିଏ କହିବ ? ହେ ପୂର୍ଣ୍ଣେଶ୍ୱର ! ଆପଣ ସ୍ୱୟଂ କହି ପାରିବେ ନାହିଁ ? ଆପଣ ପରା ଏଡ଼େ ପ୍ରତ୍ୟକ୍ଷ ମହିମାବନ୍ତ ଦିଅଁ ? ଆପଣ ପରା ଦେବଦେବ ମହାଦେବ ? ଆପଣ ତ ସେଦିନ ଯାହା ଯାହା ଘଟିଗଲା ସବୁ ଦେଖିଛନ୍ତି ? ସବୁ ତ ଆପଣଙ୍କ ଆଗରେ ଘଟିଗଲା ? ମୋର ତ ଆଉ କେହି ସାକ୍ଷୀ ନାହାନ୍ତି । ଆପଣ ହିଁ ମୋର ଏକମାତ୍ର ଭରସା । ଆପଣ ହିଁ ମୋ ପରି ଅକ୍ଷିତର ଏକମାତ୍ର ସାକ୍ଷୀ । ମୋତେ ଏଇ ଘୋର ଆଉ ଠକ ଅପବାଦରୁ

ରକ୍ଷାକରିବା ପାଇଁ ମୋ ମାଆ ମନରେ ଆଶ୍ୱାସନା ଦେବା ପାଇଁ, ଏବଂ ରଘୁ ସେନାପତିର ଦଶବରଷର ନାତୁଣୀ ଚନ୍ଦ୍ରମାର ମୁଖଲଜ୍ଜ୍ୟା ଦୂରକରିବା ପାଇଁ ଆପଣ ହିଁ ବର୍ତ୍ତମାନ ଏକମାତ୍ର ଭର୍ଜନ । ଆପଣ ଆଜି ରାତିରେ ରଘୁ ସେନାପତି, ମୋ ମାଆ କିମ୍ବା ଏଇ ପୋଲିସି ବାବୁ, ଯାହାକୁ ହେଲେ ସପନାନ୍ତୁ । ନ ହେଲେ ସ୍ୱପ୍ନରେ ଏକାଥରକେ ସେମାନଙ୍କୁ ଦେଖାଦେଇ ସତ କଥାଟା ସଫାସଫା କହିଦିଅନ୍ତୁ । ଆପଣ ଆପଣଙ୍କ ବାସୁଆ ବଳଦ (ଷଣ୍ଢ) ଉପରେ ବସିଥିବେ । ହାତରେ ଆପଣ ତ୍ରିଶୂଳ ଧରିଥିବେ । ବାଘ ଛାଲ ପିନ୍ଧିଥିବେ ଆପଣଙ୍କ ଦେହ ଦୁଧ ଭଳି ଧବଳ ଦିଶୁଥିବ । ଆପଣଙ୍କ କପାଳରେ ଆଉ ଗୋଟିଏ ଆଖି ଥିବ । ସେଥିରୁ ଧକ୍‌ଧକ୍ ହୋଇ ନିଆଁ ହୁଳା ବାହାରୁଥିବ । ଆପଣଙ୍କ ମୁଣ୍ଡରେ ଜଟା ଆକାଶ ଯାଏ ଲମ୍ବିଥିବ । ତା'ଉପରେ ବଙ୍କା ଚନ୍ଦ୍ର ଶୋଭ ପାଉଥିବେ । ତା' ଭିତରୁ ଗଙ୍ଗାମାତା ଝରି ପଡ଼ୁଥିବେ । ଆପଣଙ୍କ ବିଭୂତିଭୂଷଣ ଦେହରେ ନୀଳବର୍ଣ୍ଣର କଣ୍ଠଦେଶ ଅତି ସୁନ୍ଦର ଦିଶୁଥିବ । ଆପଣଙ୍କ ଗଳା, ଶିର, ବାହୁ ଆଉ ପେଟ ଉପରେ କଳା ଆଉ ହଳଦୀ ବର୍ଣ୍ଣର ନାଗସାପମାନେ ଫଣା ଟେକି ବୁଲୁଥିବେ—ଫଅଁ ଫଅଁ ଗର୍ଜୁଥିବେ । ଆପଣ ଗୋଟିଏ ହାତରେ ଡ଼ିବି ଡ଼ିବି ଡମ୍ବରୁ ବଜାଉଥିବେ । ବମ୍ ବମ୍‌ବୋଲି ଗର୍ଜନ କରୁଥିବେ । ଠିକ୍ ଯେମିତି ଆପଣ ଦେଉଳ ଭିତରେ କାନ୍ଥରେ ଅଙ୍କା ହୋଇଥିବା ଆପଣଙ୍କ ଛବି ଭିତରେ ଦେଖାଯାନ୍ତି । ସେଇ ରୂପ ଧରି ଏମାନଙ୍କୁ ସ୍ୱପ୍ନରେ ଦେଖାଦେଲେ, ଏମାନେ ଆପଣଙ୍କୁ ମହାଦେବ ବୋଲି ବିଶ୍ୱାସ କରିବେ । ନ ହେଲେ, ଆଉ ଯେ କୌଣସି ଛଦ୍ମରୂପରେ ଆସିଲେ ଏମାନେ କଦାଷନ ବିଶ୍ୱାସ କରିବେ ନାହିଁ । ହେ ପୂର୍ଣ୍ଣେଶ୍ୱର ! ଆପଣଙ୍କୁ ନେହୁର ହେଉଛି—ଆପଣଙ୍କୁ ଆପଣଙ୍କ ପୁଅ ଗଣେଶ ମାହାପ୍ରୁ କି କାର୍ତ୍ତିକ ମହାପ୍ରୁଙ୍କ ଗଣ ପକାଇ ବିନତି କରୁଛି—ହେଇଟି ଏଇ ଥାନା ହାଜତ ଭିତରେ ମୁଁ ତୁମକୁ ସହସ୍ରଥର ମୁଣ୍ଡିଆ ମାରୁଛି—ଆପଣ ମୋ ପେଇଁ ଏତିକି କର । ବର୍ତ୍ତମାନ ଘୁରିଆଡ଼େ ସାଇଁ ସାଇଁ ନିଶା ଗର୍ଜୁଛି । ଘୁରିଆଡ଼େ ସାଣୁସାଣୁ ଅନ୍ଧାର । ଥାନା ବାରେଣ୍ଡାରେ ମିଞ୍ଜିମିଞ୍ଜି ଲଣ୍ଠନଟିଏ ଅଧାଅଧା ଜଳୁଛି । ସମସ୍ତେ ଶୋଇଗଲେଣି । ପହରବାଲାଏ ଘୁଙ୍ଗୁଡ଼ି ମାରିଲେଣି । ଗହୀର ଆଡ଼ୁ ବିଲୁଆମାନେ ହୁକେ ହୋ' ହୁକେ ହୋ'

ବୋବାଉଛନ୍ତି । ପାଖ ତିନ୍ତୁଳି ଗଛରୁ ବାଦୁଡ଼ୀମାନେ ଫଡ଼ଫଡ଼ ହେଉଚନ୍ତି । ବ୍ରାହ୍ମଣୀ ବେଙ୍ଗଟାଏ ତଣ୍ଟି ଫଟାଇ ରଡ଼ି ଛାଡୁଛି । ସେପଟ ତୋଟା ଗହଳରୁ ପେଚ୍ଚାଟାଏ କୁହ୍ଲେଇ କୁହ୍ଲେଇ ହୁଟ୍ ହୁଟ୍ ହେଉଛି । ହେ ପୂର୍ଣ୍ଣେଶ୍ୱର ! ହେ ଆଶୁତୋଷ ଦୀନବାନ୍ଧବ ମହାଦେବ ! ବର୍ତ୍ତମାନ ଏମାନଙ୍କ ଛଡ଼ା ଆଉ ସମସ୍ତେ ଗହନ ନିଦରେ ଶୋଇ ପଡ଼ିଛନ୍ତି । ମୁଁ ଆଜି ଦିନଯାକ କିଛି ଖାଇ ନାହିଁ । ଜଳ ମଧ୍ୟ ସ୍ପର୍ଶ କରିନାହିଁ । ମୁଁ ଆପଣଙ୍କୁ ଶେଷଥର ପାଇଁ ନେହୁରା ହେଉଛି—ଆପଣ ବର୍ତ୍ତମାନ ରଘୁ ସେନାପତି, ମୋ ମାଆ, ଆଉ ଏଇ ପୋଲିସ ବାବୁଙ୍କୁ ମୋ କହିଲା ପ୍ରକାରେ ରୂପ ଧରି ସ୍ୱପ୍ନରେ ଦର୍ଶନ ଦେଇ, ସତ କଥାଟି ପ୍ରକାଶ କରି ଦିଅନ୍ତୁ । ହେଇଟି, ହେ ପୂର୍ଣ୍ଣେଶ୍ୱର ! ହେ ଆଶୁତୋଷ ! ହେ ଚନ୍ଦ୍ରମୌଳୀ ! ହେ ଗଙ୍ଗାଧର ! ହେ ନାଗଭୂଷଣ ! ହେ ହରହର ମହାଦେବ ! ମୁଁ ଏଇ ଜେଲ ହାଜତ ଭିତରେ ବର୍ତ୍ତମାନଠାରୁ ଆପଣଙ୍କ ଉଦ୍ଦେଶ୍ୟରେ ଅନ୍ନଜଳ ତେଜ୍ୟା କରି ଅଧିଆ ପଡ଼ିଲି । ଆପଣ ମତେ ଏଣିକି ମାରିଲେ ମାର ! ତାରିଲେ ତାର !

( ୩ୟ ଦୃଶ୍ୟ )

ତା'ପରଦିନ ସକାଳ । ସୂର୍ଯ୍ୟ ମାହାପ୍ରଭୁ ମାଆ କୋଳରୁ କେତେବେଳୁ ଉଠି ଆକାଶର ପା' ଭଗରେ ଖେଳା କରୁଛନ୍ତି । ମୃଦୁମୃଦୁ ହୋଇ ଦକ୍ଷିଣା ପବନ ବହୁଅଛି । ପକ୍ଷୀମାନେ ବୃକ୍ଷ ଡାଳରେ ବସି ଆନନ୍ଦରେ କୂଜନ କରୁଛନ୍ତି । ତିଳକପୁର ଗାଁ ଦାଣ୍ଡରେ କିନ୍ତୁ ଲୋକମାନେ ଚଞ୍ଚଳ ହୋଇ ଛୁଟିଛନ୍ତି ପୂର୍ଣ୍ଣେଶ୍ୱର ମହାଦେବଙ୍କ ମନ୍ଦିର ଆଡ଼କୁ । କଣ କଥା ? ରଘୁ ସେନାପତି ଘରେ କାନ୍ଦ ବୋବାଳି ପଡ଼ିଛି । ରଘୁ ସେନାପତିର ଦଶ ବର୍ଷର ସୁନ୍ଦରୀ ଗେଲବସରୀ ନାତୁଣୀ ଚନ୍ଦ୍ରମାକୁ ଶୋଇବା ଅବସ୍ଥାରେ ନାଗସାପ କାମୁଡ଼ିଛି । ତାର ଚେତା ନାହିଁ । ତାକୁ ଟେକି ନେଇ ପୂର୍ଣ୍ଣେଶ୍ୱର ମହାଦେବଙ୍କ ପାଖରେ ପକାଇଛନ୍ତି । ଗଗ ଗଗ ପାଣି ମହାଦେବଙ୍କ କୂଅରୁ କଢ଼ାଯାଇ ତା' ମୁଣ୍ଡରେ ଢଳା ହେଉଛି । ତଥାପି ଚେତା ଫେରୁ ନାହିଁ । ଏଣେ ଲୋକେ ଶ୍ୟାମଘନର ମାଆକୁ ମଧ୍ୟ ଚେତା କରିବାରେ ଲାଗିଛନ୍ତି । କାଲି ରାତିରୁ ସେ ମହାଦେବଙ୍କ ବୃଷଭ ପଛପଟେ ଅଚେତ ହୋଇ ପଡ଼ିଛି । ଗାଁ ଯାକର

ଲୋକେ ପୂର୍ଣ୍ଣେଶ୍ୱରଙ୍କୁ ବିକଳ ହୋଇ ଡକା ପାଡ଼ୁଛନ୍ତି, ହେ ପୂର୍ଣ୍ଣେଶ୍ୱର ! ରକ୍ଷାକର । ଦୁଇଟି ନିରୀହ ପ୍ରାଣୀଙ୍କୁ ରକ୍ଷାକର । ତୁମର ମହିମା ପ୍ରକାଶ କର ପ୍ରଭୁ । ଆହେ ମୃତ୍ୟୁଞ୍ଜୟ । ତୁମର ମହିମା ପ୍ରକାଶ କର ।..............

ଏଣେ ଦିନ ଯେତିକି ବଢ଼ୁଛି, ଲୋକଗହଳି ମଧ୍ୟ ସେମିତି ବଢ଼ିଚାଲିଛି । ତିଳକପୁର ଗାଁ ଲଗାତ୍ ଆଉ ଦଶଖଣ୍ଡ ଗାଁରୁ ମଧ୍ୟ ଶୁଣାଶୁଣିରେ ଲୋକେ ଛୁଟି ଆସୁଛନ୍ତି । ସମସ୍ତେ ପୂର୍ଣ୍ଣେଶ୍ୱରଙ୍କୁ ବିକଳରେ ଡକା ପକାଇଛନ୍ତି । ସମସ୍ତେ ଚାହାନ୍ତି ଏ ଦୁଇଟି ନିରୀହ ପ୍ରାଣୀ ବଞ୍ଚିଯାଆନ୍ତୁ ଓ ମହାଦେବଙ୍କ ମହିମା ପ୍ରକଟିତ ହେଉ । ପ୍ରମାଣିତ ହେଉ । ତା'ହେଲେ ଯାଇ ଚିର କାଳପାଇଁ ସମସ୍ତେ ଆଶ୍ୱସ୍ତ ହୋଇଯିବେ । ସମସ୍ତଙ୍କର ଚିରଦିନ ପାଇଁ ପୂର୍ଣ୍ଣେଶ୍ୱରଙ୍କ ଉପରେ ବିଶ୍ୱାସ ଆସିଯିବ ଓ ଭରସା ଆସିଯିବ । ଆଉ ସେଣିକି ଲୋକମାନଙ୍କର ଆଉ କିଛି ପ୍ରତି ବା କାହା ପ୍ରତି ଭୟ ରହିବ ନାହିଁ। ସମସ୍ତେ ଚିରଦିନ ପାଇଁ ନିଃଶଙ୍କ ହୋଇଯିବେ ।

ବହୁ ସମୟ ବିତିଗଲା । ପ୍ରଥମେ ଆଖି ମେଲା କଲା ରଘୁ ସେନାପତିର ନାତୁଣୀ ଚନ୍ଦ୍ରମା । ଲୋକେ ଆନନ୍ଦ ଉତ୍ସାହରେ ହରିବୋଲ ପକାଇଲେ । ଜୟ ପୂର୍ଣ୍ଣେଶ୍ୱର ମହାଦେବ ! ଜୟ ପୂର୍ଣ୍ଣେଶ୍ୱର ମହାଦେବ ! ତୁମର ମହିମା ପ୍ରକଟ ହେଲା ପ୍ରଭୁ ! ତୁମର ମହିମା ବମ୍ ବମ୍ ଭୋଳାନାଥ । ହର ହର ମହାଦେବ । ହରିଇଇ ବୋଓଓଓଲ......! ଆହେ ମୃତ୍ୟୁଞ୍ଜୟ ! ଆହେ ନୀଳକଣ୍ଠ ! ଆହେ କୈଳାସପତି ! ଜୟ ପ୍ରଭୁ ପୂର୍ଣ୍ଣେଶ୍ୱର ! ଜୟ ପ୍ରଭୁ ପୂର୍ଣ୍ଣେଶ୍ୱର !

ଚନ୍ଦ୍ରମା କ୍ରମେ ଭଲ କରି ଆଖି ମେଲିଲା । ଚାରିଆଡ଼କୁ ଅନାଇଲା । ହାତ-ଗୋଡ଼ ହଲାଇଲା । ପାଣି ପାଣି ବୋଲି ମାଗିଲା । ଲୋକେ ହରିବୋଲ ହୁଳହୁଳିରେ ଗଗନପବନ କମ୍ପାଇ ଦେଲେ । ଘଣ୍ଟ ଘଣ୍ଟା କାହାଳିରେ ମନ୍ଦିର ବେଢ଼ା ଥରି ଉଠିଲା । ଘନଘନ ଶଂଖନାଦ ହେଲା । ବହୁଲୋକ ଆନନ୍ଦରେ ହଜି ଯାଇଥିବା ବିଶ୍ୱାସ ଫେରି ପାଇବା ଆନନ୍ଦରେ ଡ଼ିଆଁତେଇଁ କଲେ ।

ଚନ୍ଦ୍ରମା ଏଥର ଉଠି ବସିଲା । ଲୋକେ ଅତି ଉନ୍ମାଦନାରେ ତା' ଆଗରେ ଘଣ୍ଟ ମାଦଳ ବଜାଇ ଲାଗିଲେ । ଶଂଖ ଫୁଙ୍କିଲେ । କାହାଳି ବଜାଇଲେ ।

କେହି କେହି ତା' ମୁହଁ ପାଖରେ ମାଟି ସରରେ ଝୁଣା ଧୂଆଁ ଆଣି ହଲାଇଲେ । ହରିଇଇ......ବୋଓଓଲ......ହରିଇଇ.........ବୋଓଓଲ......!

ଚନ୍ଦ୍ରମା ଏଥର ଉଠି ଠିଆ ହେଲା । ତାର ଦୁଇ ଆଖି କୁମ୍ଭାଟୁଆ ଆଖି ଭଳି ନାଲ ଦିଶୁଥାଏ । ସେ ନିଶା ଖାଇଲା ଭଳି ଦୋହଲୁଥାଏ । ତାର ମୁଣ୍ଡ ପଛପଟେ ତା'ର ସୁନ୍ଦର ଲମ୍ବ କେଶଗୁଛ ଫିଟି ପଡ଼ିଥାଏ । ସେ ଦୁଇ ହାତକୁ ଦୁଇକଡ଼କୁ ଡେଣା ପରି ମେଲେଇଲା । କେତେକ ଲୋକ ଅଦ୍ଭୁତ ଉନ୍ମାଦନାରେ, ଅପୂର୍ବ ଉଚ୍ଚାଟନରେ ତା' ଆଗରେ ମର୍ଦ୍ଦଳ ସଂଯୋଗରେ ଘଣ୍ଟମାନ ବଜେଇ ଲାଗିଲେ ଓ ବଂ ବଂ ମହାଦେବ—ହର ହର ମହାଦେବ ବୋଲି ପାଟିରେ ଉଚ୍ଚ ସ୍ୱରରେ ତାଳଦେଇ ନାଚିବାକୁ ଆରମ୍ଭ କରିଦେଲେ । ଇତ୍ୟବସରରେ ଦୁଇ ଦଳ କୀର୍ତ୍ତନୀୟା ମଧ୍ୟ ଆସି ପହୁଁଚି ଯାଇ ଝାଂଜ ମୃଦଙ୍ଗ ବଜାଇ ପୂର୍ଣ୍ଣେଶ୍ୱରଙ୍କ ମନ୍ଦିର ପ୍ରାଙ୍ଗଣକୁ ଅପୂର୍ବ ବାଦ୍ୟ ନାଦ ଧ୍ୱନି କୋଳାହଳରେ ପ୍ରକମ୍ପିତ କରି ଚାଲିଲେ । ତା' ଭିତରେ ପୁଣି ଶହଶହ ନାରୀ ପୁରୁଷ ଓ ବାଳକବାଳିକା ଉଚ୍ଚସ୍ୱରରେ ହରିବୋଲ ହୁଳହୁଳି ପକାଇ ଚାଲିଥାନ୍ତି । ଏହି ସମୟରେ ଚନ୍ଦ୍ରମା ଆଗକୁ ଝୁଙ୍କି ପଡ଼ିଲା । ତା' ହାତ ଦୁଇଟି ସେମିତି ଡେଣା ଭଳି ଦୁଇପଟକୁ ମେଲା ହୋଇଥାଏ । ଲୋକେ ପରମ ଉନ୍ମାଦନାରେ ତାକୁ ଉପରକୁ ଟେକି ଧରିଲେ । ଜଣେ ତାକୁ କାନ୍ଧ ଉପରକୁ ଟେକି ନେଲା ଏବଂ ଆଉ ଜଣେ ପାର୍ବତୀଙ୍କ ମଥାରୁ ମେଞ୍ଚାଏ ସିନ୍ଦୂର ଆଣି ତା' କପାଳରେ ବୋଳି ଦେଲା । ଘଣ୍ଟ ମାଦଳ ଆହୁରି ଘନୀଭୂତ ଓ ଉଚ୍ଚକିତ ହୋଇ ବାଜିଲା । ଝାଂଜ ମୃଦଙ୍ଗର ନାଦ ମଧ୍ୟ ଆହୁରି ଉଚ୍ଛୁଳି ଉଠିଲା । ଚନ୍ଦ୍ରମାକୁ କାନ୍ଧରେ ବସାଇଥିବା ବଳବାନ୍ ଲୋକଟି ହଠାତ୍ ନାଚିବାକୁ ଆରମ୍ଭ କରିଦେଲା । ଏବଂ ସେ ନାଚିବାରୁ ଘଣ୍ଟ ବଜାଳି ଓ କୀର୍ତ୍ତନୀୟାମାନେ ମଧ୍ୟ ଖୁବ୍ ପାଟିରେଇ କରି ନାଚିବାକୁ ଆରମ୍ଭ କରିଦେଲେ । ଜୟ ପୂର୍ଣ୍ଣେଶ୍ୱର—ହର ହର ମହାଦେବ—ବଂ ବଂ ଭୋଳାନାଥ —ଆହେ ମୃତ୍ୟୁଂଜୟ ଧ୍ୱନି ଆହୁରି ପ୍ରବଳ ହୋଇ ଉଠିଲା । ଜନତା ବିଶ୍ୱାସ-ପ୍ରାପ୍ତିର ଉନ୍ମାଦନାରେ ପ୍ରମତ୍ତ ହୋଇ ଉଠିଲା ।

ଏହି ସମୟରେ ଚନ୍ଦ୍ରମା ହଠାତ୍ ସେ ଲୋକଟିର କାନ୍ଧରୁ ତଳକୁ ଡେଇଁ ପଡ଼ିଲା । ତା'ପରେ କାଳେସୀ ଲାଗିଲା ଭଳି ଡଗ ଡଗ ହୋଇ ମନ୍ଦିର

ଘରିପଟେ ଚକ୍ରାକାରରେ ଘୂରିବାକୁ ଲାଗିଲା । କୀର୍ତ୍ତନୀୟା ଓ ଘଣ୍ଟମାଦଳିଆ-ମାନେ, ଶଂଖ ଓ କାହାଳୀ ଫୁଙ୍କିଲା ବାଲା—ଧୂପଦାନୀ ଧରିଥିବା ଲୋକେ: ସମସ୍ତେ ଉନ୍ମତ୍ତ ଭଳି ତା' ପଛେ ପଛେ ଛୁଟିଥାନ୍ତି । ସାତଘେରା ବୁଲିସାରି ଚନ୍ଦ୍ରମା ହଠାତ୍ ବୃଷଭର ଖମ୍ବ ଉପରକୁ ଉଠିଗଲା ଓ ବୃଷଭ ଉପରେ ଠିଆ ହୋଇଗଲା । ଏହି ସମୟରେ କାଲିରାତିରୁ ବୃଷଭ ପଛପଟେ ଅଚେତ ହୋଇ ପଡ଼ିଥିବା ଶ୍ୟାମଘନର ମାଆକୁ କେତେକ ଲୋକ ସେଠୁ ଟେକିନେଇ କାଉଁଳି ନଡ଼ିଆ ଗଛ ତଳେ ଶୁଆଇ ଦେଲେ ଏବଂ ତାକୁ ସେଠାରେ ସେମିତି ପକାଇ ଦେଇ ପୁଣି ବୃଷଭ ପାଖକୁ ଛୁଟି ଆସି ଚନ୍ଦ୍ରମା ଆଡ଼କୁ ଅନାଇରହି ହରିବୋଲ ପକାଇବାକୁ ଲାଗିଲେ । ବୃଷଭ ଉପରେ ଠିଆ ହୋଇ ଚନ୍ଦ୍ରମା ସମବେତ ଉନ୍ମତ୍ତ କୋଳାହଳ ମୁଖର ଜନତା ଉଦ୍ଦେଶ୍ୟରେ ଗୋଟିଏ ହାତ ଟେକି କଣ ନିର୍ଦ୍ଦେଶ ଦେଲା ଭଳି ମନେ ହେଲା । ତା'ର ଲମ୍ବାବାଳ ଫିଟି ପଡ଼ିଥାଏ ଓ ପବନରେ ଉଡୁଥାଏ । ତା' କପାଳରେ ସିନ୍ଦୂର ଲେପି ହୋଇ ଦାଉ ଦାଉ ଦିଶୁଥାଏ । ସେ ନାଲି ଶାଢ଼ୀଟିଏ ପିନ୍ଧିଥାଏ ଏବଂ ତା' କାନି ତଳକୁ ଲମ୍ବି ଆସି ଘୁସୁରୁ ଥାଏ । ତା'ର ଶୁଭ୍ର ବକ୍ଷଦେଶ ଖୋଲା ଦିଶୁଥାଏ ଏବଂ ତା' ଭିତରୁ ଦୁଇଟି ଶୁଭ୍ର ପଦ୍ମ କୋରକ ସ୍ପଷ୍ଟ ଉନ୍ମୁଖ ହୋଇ ଫୁଟି ଦିଶୁଥାଏ । ତା'ର ଗ୍ରହାଣି ରକ୍ତିମ ଅଥଚ ଖୁବ୍ ଆଛନ୍ନ ଦିଶୁଥାଏ । ହଠାତ୍ ସେ ଚିତ୍କାର କରି ଉଠିଲା—ବନ୍ଦକର ! ବନ୍ଦକର !

ସଙ୍ଗେ ସଙ୍ଗେ ଅଥଚ କ୍ରମେ କ୍ରମେ କେତୋଟି ସେକେଣ୍ଡ ଭିତରେ ସମସ୍ତେ ନିସ୍ତବ୍ଧ ହୋଇଗଲେ । ସେଇଠୁ ଚନ୍ଦ୍ରମା ସେଇ ଉଚସ୍ୱରରେ ଚିତ୍କାର କରି କହି ଗ୍ଲଲିଲା—ଶୁଣ ସମସ୍ତେ ! ସତକଥା ଶୁଣ । ଶ୍ୟାମଘନ ମୋ ସୁନାହାର ଚୋରି କରିନାହିଁ । ମୁଁ ତାକୁ ବାହାହେବି ବୋଲି ସତ୍ୟ କରି ଏହି ପୂର୍ଣ୍ଣେଶ୍ୱରଙ୍କ ଆଗରେ ତା' ବେକରେ ମୋ ସୁନାହାର କାଢ଼ି ଲମ୍ବାଇ ଦେଇଥିଲି । ଲାଜ ଆଉ ଭୟରେ ମୁଁ ସେ କଥା କହି ପାରିଲି ନାହିଁ । ମୋ ଅଜା ଆଉ ପୋଲିସ ଆଗରେ ମିଛ କହି ଦେଇଥିଲି । ସେଥିପାଇଁ ମତେ ନାଗ ଦଂଶିଲା । ମୁଁ କାଲି ରାତିରେ ଖାଇପିଇ ଶୋଇବାକୁ ଗଲି । କିନ୍ତୁ ମତେ ନିଦ ହେଲା ନାହିଁ । ରାତିଯାକ ଖାଲି ମତେ ଭୟ ଲାଗିଲା । ରାତି ଶେଷ ପହରକୁ ମୋ ଆଖିପତା ବୁଜି ହୋଇ ଆସିଲା । ହଠାତ୍ ପୂର୍ଣ୍ଣେଶ୍ୱର ମହାଦେବ ମୋ

ଆଗରେ ତାଙ୍କ ଷଣ୍ଢ ଉପରେ ଚଢ଼ି ଆସି ଉଭା ହୋଇଗଲେ । ସେ ହାତରେ ତ୍ରିଶୂଳ ଧରିଥାନ୍ତି । ଆର ହାତରେ ଡ଼ିବିଡ଼ିବି କରି ଡମ୍ବରୁ ବଜାଉଥାନ୍ତି । ବାଘଛାଲ ପିନ୍ଧିଥାନ୍ତି । ତାଙ୍କ ଜଟା ଆକାଶକୁ ଛୁଉଁଥାଏ । ତାଙ୍କ ଦେହ ଯାକ ନାଗସାପ ସାଲୁବାଲୁ ହେଉଥାନ୍ତି । ତାଙ୍କ ଆଖି କ୍ରୋଧରେ ଜଳୁଥାଏ । ସେ ମତେ କହିଲେ—ଦେଖ୍ ଚନ୍ଦ୍ରମା । ତୁ ଆଉ ଶ୍ୟାମଘନ ପୂର୍ବଜନ୍ମରେ ସ୍ୱାମୀ ସ୍ତ୍ରୀ ଥିଲ । ଏ ଜନ୍ମରେ ତା' ବେକରେ ବରଣମାଳା ଦେଇ ଫେର୍ କାହିଁକି ମିଛ କହି ମୋ ସେବକକୁ ବନ୍ଧେଇଲୁ ? ତୋତେ ମୋର ନାଗ ଦଂଶିବ । ମାତ୍ର ତୁ ମରିବୁ ନାହିଁ । କିନ୍ତୁ ତୋ ଅଜା ରଘୁ ସେନାପତି ମରିବ । ଏତିକି କହୁ କହୁ ତାଙ୍କ ଦେହରୁ ଗୋଟେ ନାଗସାପ ସାଇଁକିନା ମୋ ଆଡ଼କୁ ଚିହିଙ୍କି ଆସିଲା । ଆଉ ମୋ ଗୋଡ଼ରେ ତିନିଗ୍ରେଟ ମାରି କୁଆଡ଼େ ଉଭେଇଗଲା । ମୁଁ ପାଟିକରି ଉଠିଲି—ଅଜା, ଅଜା ! ଆଈ, ଆଈ ! ସମସ୍ତେ ଉଠ ଉଠ—ମୋତେ ନାଗସାପ କାମୁଡ଼ି ଦେଇ କୁଆଡ଼େ ପଳେଇ ଗଲା । ସାଙ୍ଗେ ସାଙ୍ଗେ ଆଈ ଉଠିପଡ଼ିଲା—ଅଜାଙ୍କୁ ଡାକ ପକେଇଲା । ଅଜା ଦଉଡ଼ି ଆସିଲେ । ଘର ଯାକ ସମସ୍ତେ ଦଉଡ଼ି ଆସିଲେ । ସେତେବେଳକୁ ମୋ ପାଟି ଫେଣ ବାଜୁବାଜୁ ହୋଇଗଲା । ମୁଁ ଆଉ କଥା କହି ପାରିଲି ନାହିଁ । ମୂର୍ଚ୍ଛା ହୋଇ ପଡ଼ିଲି...........

ନିସ୍ତବ୍ଧ ଜନତା ଉଦ୍‌ଗ୍ରୀବ ହୋଇ ଚ୍ହାହିଁ ରହିଥାନ୍ତି । ଚ୍ଚରିଆଡ଼େ ଗୋଟାଏ ଭୟଙ୍କର ଶୂନ୍‌ଶାନ୍ ବ୍ୟାପି ଯାଇଥାଏ । ସେଇଠୁ ଚନ୍ଦ୍ରମା ପୁଣି କହିଲା—

ଏବେ ସମସ୍ତେ ଶୁଣ ! ମତେ ଥାନାକୁ ନେଇଚ୍ଚଲ । ମୁଁ ସେଠି ମଧ୍ୟ ଥାନା-ବାବୁଙ୍କ ଆଗରେ ଏଇ ସତକଥା କହିଦେବି ।

ଲୋକେ ଏତେକ ଶୁଣିବା ମାତ୍ରେ ପ୍ରଥମେ ପ୍ରଥମେ କେତୋଟି ମୁହୂର୍ତ୍ତ ଥକ୍‌କା ହୋଇ ରହିଗଲେ । ତା'ପରେ ସମବେତ ଜନତା ପୁଣି ଉନ୍ମତ୍ତ ହୋଇ ଉଠିଲା । ନୂତନ ଉତ୍ସାହ ଉନ୍ମାଦନା ସମସ୍ତଙ୍କ ଭିତରେ ଖେଳିଗଲା । ସମସ୍ତେ ସମସ୍ୱରରେ ଚିତ୍କାର କରି ଉଠିଲେ—ଜୟ ପ୍ରଭୁ ପୂର୍ଣ୍ଣେଶ୍ୱର ମହାଦେବ ! ଧନ୍ୟ ତୋର ମହିମା ! ଧନ୍ୟ ତୋର ମହିମା ! ହେ ସତ୍ୟର ରକ୍ଷକ ଶିବଶମ୍ଭୁ ! ଜୟ ପ୍ରଭୁ—ହର ହର ମହାଦେବ—ବଂ ବଂ ଭୋଳାନାଥ !

ସତ୍ୟ ପ୍ରକାଶ ହୋଇଗଲା...ଆନନ୍ଦେ ଏକବାର ହରିଇଇଇ...ବୋଓଓଲ... !
ହରିଇଇଇ...ବୋଓଓଲ...!

ଜନତା ଆହୁରି ଉନ୍ମତ୍ତ ହୋଇ ଘଣ୍ଟ ମାଦଳ ବଜେଇଲା । ଝାଞ୍ଜମୃଦଙ୍ଗରେ ମନ୍ଦିର ପ୍ରାଙ୍ଗଣ ପୁଣି କମ୍ପି ଉଠିଲା । ପୁଣି ଘନ ଘନ ଶଂଖ ଧ୍ୱନି ହେଲା । କାହାଳି ବାଜି ଉଠିଲା । ହରିବୋଲ ହୁଳହୁଳିରେ ଗଗନପବନ ପ୍ରକମ୍ପିତ ହେଲା । ଏହି ସମୟରେ କେତେକ ଲୋକ ଯୋଡା ନଡ଼ିଆଗଛ ତଳେ ଅଚେତା ହୋଇ ପଡ଼ିଥିବା ଶ୍ୟାମଘନର ମାଆ ପାଖକୁ ଗଲେ । ସେଠି ସେମାନେ ଦେଖିଲେ ଯେ, ଚନ୍ଦ୍ରମାର ଅଜା ରଘୁ ସେନାପତି ମଧ୍ୟ ଚିତ୍ ହୋଇ ପଡ଼ିଛି । ଆଉ ଅଚେତା ହୋଇଯାଇଛି । ସେମାନେ ସେ ଦୁହିଙ୍କୁ ଚେତା କରଇବା ଲାଗି ବହୁ ଚେଷ୍ଟାରେ ଲାଗିଗଲେ । ମାତ୍ର ବୃଥା ! ସେ ଦୁହେଁଙ୍କାକ ଆଉ ସେହି ଗହନ ନିଦରୁ ଉଠିଲେ ନାହିଁ, କି ଆଖି ମେଲେଇଲେ ନାହିଁ । ଚିରଦିନ ଲାଗି ଶୋଇଗଲେ ।

କିନ୍ତୁ ସେଦିନ ରାତିର ତୃତୀୟ ପ୍ରହର ଶେଷ ହେବା ପର୍ଯ୍ୟନ୍ତ ବି ପୂର୍ଣ୍ଣେଶ୍ୱର ମହାଦେବଙ୍କ ବେଢ଼ାରେ ଝାଞ୍ଜ ମୃଦଙ୍ଗ ବାଜୁଥିଲା, ଘଣ୍ଟ ମାଦଳ ଗାଳିଥିଲା । ଶଂଖ କାହାଳି ବାଜୁଥିଲା । ଆଉ ହରିବୋଲ ହୁଳହୁଳି ଧ୍ୱନି ସହ—ହର ହର ମହାଦେବ—ବଂ ବଂ ଭୋଳାନାଥ ଶବ୍ଦରେ ସେହି ପଲ୍ଲୀ ଗ୍ରାମଟିର ଗଗନ-ପବନ ମୁଖରିତ ହେଉଥିଲା ।...........

ତା' ପରେ କିଛି ଦିନ ବିତିଗଲା, ଏବଂ ସେଦିନର ସେହି ଘଟଣାର ପରିଣତି କଣ ହେଲା, ସେ ସମ୍ବନ୍ଧେ ଖବର ନେବାରେ ଜଣାଗଲା ଯେ ଚନ୍ଦ୍ରମା ନାମ୍ନୀ ସେଇ ଝିଅଟି ପୂରାପୂରି ପାଗଳିନୀ ହୋଇ ଯାଇଥିଲା ଏବଂ ତା'ର ଏମ୍. ଏଲ୍. ଏ. ବାପା ତାକୁ ରାଞ୍ଚି ପାଗଳ ଡାକ୍ତରଖାନାକୁ ପଠାଇ ଦେଲେ ।

ଆଉ ଶ୍ୟାମବନ୍ଧୁ ? ଥାନା ହାଜତରେ ପାଞ୍ଚ ଛଅଦିନ ରହିଲା ପରେ ତାକୁ ମୁକ୍ତି ଦିଆଗଲା । ମାତ୍ର ସେ ଆଉ ଗ୍ରାମକୁ ଫେରିଲା ନାହିଁ । ଶୁଣାଯାଏ ସେ କିଛିଦିନ ପୁରୀରେ ରହିଲା ପରେ ରଥଯାତ୍ରାକୁ ଆସିଥିବା ଦଳେ ନାଗା

ସନ୍ୟାସୀଙ୍କର ସେବାକାରୀ ଭବେ ସନ୍ୟାସ ଗ୍ରହଣ କଲ୍ଲ ଓ ସେହିମାନଙ୍କ ସଙ୍ଗେ କାଶୀ ଧାମକୁ ଗ୍ଲଲିଗଲ୍ଲ । ବର୍ତ୍ତମାନ ସେ ପରମଶିବ ବିଶ୍ବନାଥଙ୍କ ପୂରଣ ପବିତ୍ର କାଶୀକ୍ଷେତ୍ରରେ ରହି ସନ୍ୟାସୀ ଜୀବନଯାପନ କରୁଅଛି ।

( ଉପସଂହାର )

ଅବଶ୍ୟ ଇତିମଧ୍ୟରେ ପୂର୍ଣ୍ଣେଶ୍ଵର ମହାଦେବଙ୍କ ସେବା ପୂଜାରେ ସେପରି କିଛି ଉଲ୍ଲେଖଯୋଗ୍ୟ ଉନ୍ନତି ବା ଅବନତି ଘଟିନାହିଁ । ଯଦିଓ ତାଙ୍କ ମନ୍ଦିର ଭିତରୁ କୋଲପ ଭଙ୍ଗି ଭକ୍ତି ବିଶ୍ଵାସହୀନ ଦୁର୍ବୃତ୍ତମାନେ ତାଙ୍କର ଏକଶତ ସ୍ଥାନ ବନ୍ଧ ରୂପା, ତମ୍ବା ଆଉ ପିତଳର ନାଗମାନଙ୍କୁ ଅପହରଣ କରି ନେଇଛନ୍ତି । ଶ୍ୟାମଘନଙ୍କ ବାପା ଗୋକୁଳି ତିହାଡୀ ଖୁବ୍ ବୃଦ୍ଧ ହୋଇ-ଗଲେଣି । ତାଙ୍କ ଆଖିରେ ପରଳ ପଡ଼ି ତାଙ୍କୁ କିଛି ଆଉ ଭଲଭବେ ଦୃଶ୍ୟ ହେଉନାହିଁ । ତଥାପି ସେ ପୂର୍ଣ୍ଣେଶ୍ଵରଙ୍କ ସେବା ପୂଜାରେ କିଛି ତ୍ରୁଟି କରି-ନାହାନ୍ତି । ସେ ଆଜିକାଲି ବେଶି କାହା ସଙ୍ଗେ କଥାବାର୍ତ୍ତା କରୁନାହାନ୍ତି । କେବଳ ଗୋଟିଏ କଥା ସେ ତିଳକପୁର ଗାଁର କେତେଜଣଙ୍କୁ କହିବାର ଶୁଣାଯାଏ । ତା' ହେଉଛି, ଏଇ କେତେଦିନ ଧରି ପୂର୍ଣ୍ଣେଶ୍ଵର ମହାଦେବଙ୍କ ମନ୍ଦିର ଭିତରେ ଗୋଟାଏ ମସ୍ତବଡ କଳାନାଗ ଆସି ରହୁଛି ଏବଂ ଲିଙ୍ଗଙ୍କୁ ଗୁଡାଇ ଧରି ଉପରକୁ ଫଣା ଟେକି ସୁ-ସୁ ହେଉଛି । କିନ୍ତୁ ଗୋକୁଳି ତିହାଡ଼ୀଙ୍କ ବ୍ୟତୀତ ସେହି ଶିବ ଭୂଷଣ କୃଷ୍ଣକାୟ ନାଗ ମହୋଦୟ ଆଜି ପର୍ଯ୍ୟନ୍ତ ତିଳକପୁର ଗ୍ରାମର ଆଉ କାହାରି ଦୃଷ୍ଟିପଥରେ ଦୃଶ୍ୟମାନ ହୋଇ ନାହାନ୍ତି ।

॥ ॥ ॥

## ଗଣାଧିପତୟେ ନମଃ

ସେଦିନ ଦୀନୁ ବହୁତ ଡେରିରେ ବିଛଣାରୁ ଉଠିଲା । ଡେରୀ ହୁଅନ୍ତା ନାହିଁ ? କାଲି ରତିଟାଯାକ ସାଙ୍ଗମାନଙ୍କୁ ନେଇ ହାଟ ତୋଟାରେ ମେଳନ ଦେଖିଲା । ସଞ୍ଜବୁଡ଼େ କଳ ଘୋଡ଼ାରେ ବସିଲା । ନାଗରଦୋଳାରେ ସାତଥର ବୁଲିଲା । ସେଇଠୁ ଭିନ୍ନ ଭିନ୍ନ ଗାଁର ଠାକୁରମାନେ ବିମାନରେ ବସି ଆସିଲେ ବେଳେ ଯୋଉସବୁ ସାଇଯାତ ହେଲା, ତାକୁ ଦେଖି ନଥିଲେ ମନରେ ଅବଶୋଷ ରହିଯାଇଥାନ୍ତା । ଉଲରପୁରିଆ ଯୋଉ କେଳା-କେଳୁଣୀ ଆଣିଥିଲେ ପୁରପୁରି ନୂଆ । ତାଙ୍କ ନାଚ ମଧ୍ୟ ସବୁ ବର୍ଷଠାରୁ ବଢ଼ିଆ ହେଲା । ଆମଣାକୁଦ ଗାଁର ଷଣ୍ଢ ଲଢ଼େଇ, ଆଉ ଦୀନାପୁର ଗାଁର ଘୋଡ଼ାନାଚ ମଧ୍ୟ ଭାରି ଚମତ୍କାର ହେଲା । ତା' ଛଡ଼ା ହଳଦୀଗଡ଼ିଆ ଗାଁର ଭଲୁନାଚ ; ସୁଜନ-ପୁରିଆଙ୍କର ଶିବପାର୍ବତୀ ଆଉ କାଳିକା ନାଚ ମଧ୍ୟ ସବୁଠୁଁ ବଳିଗଲା । ସୁଜନପୁରିଆଙ୍କ କାଳିକା ଲହ ଲହ ଜିଭ କାଢ଼ି କଳା ଶାଢ଼ୀ ପିନ୍ଧି ବାଳ ମୁକୁଳା କରି ପଛରେ ମେଢ଼ ବାନ୍ଧି, ଗୋଟେ ହାତରେ ମଣିଷ ଖପୁରୀ ଆଉ ଅନ୍ୟ ହାତରେ ରକ୍ତଲଗା ଖଣ୍ଡା ଲଗାଇ ଯେତେବେଳେ ନାଚିଲା—ଆଉ ଢୋଲିଆ ମହୁରିଆମାନେ ତାଳ ଦେଇ ଯେତେବେଳେ ଦୁମୁଦୁମୁ କରି ବାଜା ବଜାଇଲେ—ସେତେବେଳେ ଭୟରେ ଛାତି ଥରିଲା । ହେଲେ, ଖୁବ୍ ମଜା ବି

ଲଗୁଥାଏ । ସାଇପାତ ସରିଲା, ପରେ ପୁଣି ବାଣ ମରାହେଲା । ପଦନପୁରିଆଙ୍କ ଚକ୍ରୀ ବାଣ ସବୁଠୁଁ ସରସ । କିନ୍ତୁ ସୁଜନପୁରିଆଙ୍କ ହାବେଳି ତାଙ୍କୁ ବଳିଗଲା । ଗୋଟେ ହାବେଳୀ ପୁଣି ଜଣକ ଉପରେ ପଡ଼ିବାରୁ ତା' ମୁଣ୍ଡ ଫାଟିଗଲା । ତାକୁ ଡାକ୍ତରଖାନା ଟେକିନେଲେ । ଗୋପୀନାଥପୁର ଶାସେନିଆ କିନ୍ତୁ ଏଥର ଦୁଇଯୋଡ଼ା ନାଗା ବାନ୍ଧିଥିଲେ । ସେମାନେ କି ଭୟଙ୍କର ନାଚ ଦେଖାଉଥାନ୍ତି ? ତା' ସାଙ୍ଗକୁ ପୁଣି ନଟିଆ ଘଡ଼େଇ ବଜାଉଥାଏ ଢୋଲ— ଆଉ ବନାକରୁଡ଼ା ବଜାଉଥାଏ ଯୋଡ଼ି କାହାଳୀ । ତା' ସାଙ୍ଗକୁ ଡ୍ରମ୍ ଆଉ ବିଗୁଲ ବି ବାଜୁଥାଏ । ଏମିତି ମଜା ଲଗୁଥାଏ ଯେ ମନ ହଉଥାଏ, ଏ ଘଡିଟା ଆଉ ନ ପାହାନ୍ତା କି ? ସତ କଥା, ଏମିତି ଏ ଘଡିଟି ଆସେ ବର୍ଷକୁ ମାତ୍ର ଥରୁଟିଏ । ଗଲବର୍ଷ ବି ଏ ଘଡିଟା ଏମିତି ଜମିଥିଲା । କିନ୍ତୁ ଦୀନୁକୁ ଏ ବର୍ଷର ଏ ଘଡିଟା ଯେତେ ଯେମିତି ମଜା ଲଗୁଛି—ଗଲବର୍ଷ ସେତେ ସେମିତି ମଜା ଲଗୁନଥିଲା । ତା'ଛଡ଼ା ଦୀନୁ ଗଲ ବର୍ଷ ସାନ ପିଲଟାଏ ଥିଲା ନା ଆଉ କଣ ? ଏ ବର୍ଷ ତାକୁ ଗଲ ମଗୁଶିରଠାରୁ ଆଠବର୍ଷ ପଶିଲଣି । ଏଇ ବର୍ଷକ ଭିତରେ ଦୀନୁ କେତେବଡ଼ ହୋଇଗଲଣି, କେତେ କଥା ଜାଣିଲଣି ? ଗଲବର୍ଷ କଣ ସେ ଭୁବନେଶ୍ୱର ଦେଖିଥିଲା ? ନନ୍ଦନକାନନ ଦେଖିଥିଲା ? ଲିଙ୍ଗରାଜ ମନ୍ଦିର ଦେଖିଥିଲା ? ଧଉଳିଗିରି ଖଣ୍ଡଗିରି ଦେଖିଥିଲା ? ସେକ୍ରେ-ଟେରୀଏଟ୍ ଆଉ ଆସେମ୍ବ୍ଲି ଘର ଦେଖିଥିଲା ? ଏଇ ଗଲା ନଭେମ୍ବର ମାସରେ ବାପା ତାକୁ ଆଉ ତା' ମା'କୁ ନେଇ ସବୁ ବୁଲେଇ ଦେଖେଇ-ଥିଲେ । ଭୁବନେଶ୍ୱର ! ଇସ୍ କି ମଜା ଜାଗା ? ସଞ୍ଜ ବୁଡ଼ୁବୁଡ଼ୁ ଗ୍ଳରିଆଡ଼େ ଆଲୁଅ । ସତେ କି ସେଠି ସବୁବେଳେ ବାଣ ମରୁଛି । କେତେ ମଟର, କେତେ ସ୍କୁଟର, କେତେ ସାଇକେଲ । ଇସ୍—ସେଠି ସମସ୍ତେ ସବୁବେଳେ ରାସ୍ତାରେ ବୁଲୁଛନ୍ତି—ହୋଟେଲରେ ଖାଉଛନ୍ତି, ମଜା ମାରୁଛନ୍ତି । ବାପା ଭୁବନେଶ୍ୱରରୁ ଫେରିଲାବେଳେ କହିଥିଲେ—ଦୀନୁ ! ମନଦେଇ ପାଠ ପଢ଼ୁଥା, ପାଠ ସରିଲେ ଏଇ ଭୁବନେଶ୍ୱରରେ ଆସି ରହିବୁ । ଏମିତି ଏମାନଙ୍କ ଭଳି ମଜା କରିବୁ ।

ବାପାଙ୍କ କଥା ଶୁଣି ଦୀନୁର ମନ ଖରାପ ହୋଇଗଲା । ଭୁବନେଶ୍ୱରରେ ଆସି ରହି ମଜା କରିବା ପାଇଁ ପୁଣି ପାଠ ପଢ଼ିବାକୁ ହେବ ? କେତେ ପାଠ

ପୁଣି ପଢ଼ିବାକୁ ହେବ ଯେ ? ବାପା କହୁଥିଲେ—ଅନ୍ତତଃ ଏମ୍. ଏ. ପାସ୍ କରିବାକୁ ପଡ଼ିବ । ପୁଣି ଯାଛାତାଇ କରି ପାସ ନୁହେଁ—ପ୍ରଥମ ଶ୍ରେଣୀରେ ପାସ୍ କରିବାକୁ ପଡ଼ିବ । ଦୁତ୍‌ତେରୀ ! ପାଠ କଣ ଏତେ ସୋଜା ଜିନିଷ ଯେ ପଢ଼ି ଗଲିଯିବ, ଆଉ ପ୍ରଥମ ଶ୍ରେଣୀରେ ପାସ୍ ହୋଇଯିବ ଛାଆଁକୁ ଛାଆଁ । ସବୁ କାମଠାରୁ ଏ ପାଠପଢ଼ା କାମଟା ଭାରି କଷ୍ଟ । ସେ ଛେନାଗୁଡ଼ ବିଷୟଗୁଡ଼ାକ ପଢ଼ିବାକୁ ଜମା ମନ ଲଗେ ନାହିଁ । ପଢ଼ିଲେ ବି ଜମା ମନେ ରହେ ନାହିଁ । ଏଇଥିପାଇଁ ସବୁବେଳେ ତା' ଉପରେ ସମସ୍ତେ ଖପା— ସବୁବେଳେ ତା' ସାଙ୍ଗେ କଟରମେଟର ଲଗାଇଥାନ୍ତି । ମାଷ୍ଟ୍ରଙ୍କଠାରୁ ବାପାଙ୍କ ପର୍ଯ୍ୟନ୍ତ । ଏବେ ବୋଉ ବି ଆସି ମିଶିଲଣି ସେମାନଙ୍କ ସାଙ୍ଗେ । ସେମାନେ କେହି ବୁଝୁନାହାନ୍ତି ଯେ ତା' ଦେହି ଆଉ ଅଧିକା ପାଠ ହୋଇପାରିବ ନାହିଁ। ତା' ଛଡା ତାର ତ ବୁଦ୍ଧି ନାହିଁ ବୋଲି ତା' ହାତ ଦେଖି ସେଦିନ ଜଗୁ ମାମୁଁ କହୁଥିଲେ । ତା' ହାତରେ କୁଆଡ଼େ ବୁଦ୍ଧିରେଖା ଜମା ନାହିଁ । ସେଥିପାଇଁ ଏବେ ସେ କଣ କରିବ ? ଏତେ ରେଖା ଅଛି ହାତରେ—ବୁଦ୍ଧିରେଖାଟା ଏବେ ନ ରହିଲା । ସେଥିପାଇଁ ସେ ଆଉ କଣ କରି ପାରିବ ? ଜଗୁମାମୁଁ ପୁଣି ବୋଉକୁ କହୁଥିଲେ—ତୁ ନାନୀ ! ଗଣେଶଙ୍କ ପାଖେ ସବୁଦିନେ ପୂଜା କର । ଆଉ ଦୀନୁକୁ ବି ସବୁଦିନେ ମନ୍ଦିରକୁ ଯାଇ ଗଣେଶଙ୍କୁ ମୁଣ୍ଡିଆ ମାରି ପାଠ ମାଗିବାକୁ କୁହ। ସେ ସବୁଦିନେ ଗଣେଶଙ୍କ ପାଖେ ମୁଣ୍ଡିଆ ମାରି ତାଙ୍କୁ ଜଣାଉ। ଗଣେଶ ହେଲେ ବିଦ୍ୟା ଆଉ ବୁଦ୍ଧିର ଦେବତା । ସେ ଯଦି ଦୟା କରିବେ ନା ମୂକ ମଧ୍ୟ ବାଗ୍ମଳ ହୋଇଯିବ । ମହାମୂର୍ଖ ବି ଗୋଟେ ସେକେଣ୍ଡରେ ପଣ୍ଡିତ ହୋଇଯିବ ।

ଜଗୁ ମାମୁଁଙ୍କ କଥାକୁ ବିଶ୍ୱାସ କରି ଦୀନୁ ଢେର ଦିନଯାଏ ମନ୍ଦିରକୁ ଯାଇ ଗଣେଶଙ୍କୁ ମୁଣ୍ଡିଆ ମାରୁଥିଲା । ତାଙ୍କ ପାଦ ଧରି ତାଙ୍କୁ ବୁଦ୍ଧି ଆଉ ବିଦ୍ୟା ମାଗୁଥିଲା । କିନ୍ତୁ କାହିଁ ? ଗଲା ପରୀକ୍ଷାରେ ଅଙ୍କରେ ରହିଲା ପଚିଶ ନମ୍ବର । ସାହିତ୍ୟରେ ଅବଶ୍ୟ ପଇଁତିରିଶି ଥିଲା । କିନ୍ତୁ ଭୂଗୋଳରେ ରହିଲା ଫେଲ୍ ମାର୍କ । ଦୂତ୍‌ତେରୀ ! ଗଣେଶ ନା ଫଣେଶ । ହାତରେ ବୁଦ୍ଧି କି ବିଦ୍ୟା- ରେଖା ନଥିଲେ କୋଉ ଗଣେଶ କି ସରସ୍ୱତୀ କେହି ତୁମ ମୁଣ୍ଡରେ ବୁଦ୍ଧି କି ବିଦ୍ୟା ପୁରେଇ ଦେବେ ନାହିଁ । ସେଥିପାଇଁ ସେ ଆଉ ଗଣେଶଙ୍କ

ପାଖକୁ ଯାଏ ନାହିଁ । ବୋଉ କହୁଥିଲା—ଗଣେଶଙ୍କ ଢୋଲ ପେଟ ଭିତରେ ଗଇଜ ଯାକର ବିଦ୍ୟା ବୁଦ୍ଧି ଭର୍ତ୍ତି ହୋଇଥାଏ । ଯେ ତାଙ୍କୁ ସନ୍ତୁଷ୍ଟ କରି-ପାରିବ ଭକ୍ତିରେ—ସେ ତାକୁ ଦୟାକରି କିଛି ବିଦ୍ୟାବୁଦ୍ଧି ନିଜ ପେଟରୁ କାଢ଼ି ଦେଇ ଦିଅନ୍ତି । ଦୀନୁ ଏକଥା ଶୁଣି ହସିଥିଲା । ପଚାରିଥିଲା—ଆଚ୍ଛା ବୋଉ, ଗଣେଶଙ୍କ ପେଟରେ ଯଦି ଖାଲି ବିଦ୍ୟାବୁଦ୍ଧି ଥାଏ, ତେବେ ସେ ଯାହା ଖାଆନ୍ତି ସେଗୁଡ଼ାକ କୋଉଠି ରହେ ? ବାପା କହୁଥିଲେ ଯେ ବୁଦ୍ଧି ବିଦ୍ୟା ସବୁ କୁଆଡ଼େ ପର ସମସ୍ତଙ୍କ ମୁଣ୍ଡରେ ଥାଏ ? ବୋଉ କହିଲା—ତୁନି ହରେ ଛତର ଡହର ଟୋକା । ଗଣେଶ ମହାପ୍ରଭୁଙ୍କୁ ଟାହୁଲି କରୁଛୁ, ନାହିଁ ? ଯୋଉ ବୁଦ୍ଧିରେ ତୋର ବାସ୍ତରିଆ ? ତା'ପରେ ବୋଉ ତା' ବେକରେ ପଣତ କାନି ଗୁଡ଼ାଇ ସେଇଠି ତଳେ ମୁଣ୍ଡିଆ ମାରି ନାକ ସକେଇ କହେ—ହେ ଗଣେଶ ମାହାପ୍ରୁ ! ଏଇ ନିର୍ବୁଦ୍ଧିଆ ବାସ୍ତରିଆଟା କଥାରେ କୋପ କରିବ ନାହିଁ ପ୍ରଭୁ । ଅଜ୍ଞାନ ବାଳୁତଟାର ଦୋଷ ଧରିବ ନାହିଁ ।

ଦୀନୁ ପୁଣି ପଚାରେ—ଦେଖ୍ ବୋଉ ! ମୁଁ କଣ ଗଣେଶଙ୍କୁ ଗାଳିଦଉଛି ନା ଥଟ୍ଟା କରୁଛି ? ମୁଁ ଖାଲି ପଚାରୁଛି—ତାଙ୍କ ପେଟରେ ଯଦି ସଂସାରଯାକର ବୁଦ୍ଧି ବିଦ୍ୟା ଭର୍ତ୍ତି ହେଉଛି—ତେବେ ତାଙ୍କୁ ଯୋଉ ସବୁ ରଶିଲଡ଼ୁ, କଦଳୀ, ଉଖୁଡ଼ା, ଚୂଡ଼ାଘସା ଦିଆଯାଉଛି ଖାଇବାକୁ ସେ ସବୁ କୋଉଠି ପଶୁଛି ? ବୋଉ କହିଲା—ହଇରେ ଓଲୁ ! ଦେବତାମାନେ କଣ ସତରେ ଖାଆନ୍ତି ? ସେମାନେ ଖାଲି ବାସନା ନିଅନ୍ତି ।

ଦୀନୁ କହିଲା—ଗଣେଶଙ୍କ ନାକଟା ସେଇଥି ପାଇଁ ଏତେ ଲମ୍ବା ନା ବୋଉ ? କାଇଁ କାର୍ତ୍ତିକଙ୍କର ନାକତ ଠିକ୍ ଆମ ଭଳି । ଗଣେଶ ତା'ହେଲେ ବେଶୀ ଶୁଂଘନ୍ତି—ନାଇଁ ବୋଉ ?

ଆଚ୍ଛା ବୋଉ ! ଗଣେଶଙ୍କ ମୁଣ୍ଡଟା ଏମିତି ହାତୀମୁଣ୍ଡ ଭଳି କାହିଁକି ହୋଇଛି ?

ବୋଉ କହିଲା—ହାତୀମୁଣ୍ଡ ଭଳିଆ କଣ ବା ? ତାଙ୍କ ବେକରେ ପରା ସତକୁ ସତ ହାତୀମୁଣ୍ଡ ଲଗିଛି ? ଦୀନୁ ପଚାରିଲା—କାଇଁକି ଲଗିଛି ? ତାଙ୍କ ନିଜ

ମୁଣ୍ଡ କୁଆଡ଼େ ଗଲକି ? ବୋଉ କହିଲ—ତାଙ୍କ ବାପାତ ମହାଦେବ । ଦିନେ ମହାଦେବଙ୍କୁ ଗଣେଶ ବାଟ ନଛାଡ଼ିବାରୁ ମହାଦେବ ରାଗିକରି ତାଙ୍କ ମୁଣ୍ଡ କାଟିଦେଲେ । ସେଇଠୁ ତାଙ୍କ ମାଆ ପାର୍ବତୀ କନ୍ଦାକଟା କଲରୁ ଫେର୍ ଗୋଟାଏ ହାତୀମୁଣ୍ଡ କାଟି ଆଣି ସେଥିରେ ଯୋଡ଼ି ମନ୍ତ୍ରପାଣି ଛିଂଚି ଦେଲରୁ ଗଣେଶ ବଞ୍ଚିଲେ । ଦୀନୁ ପଗ୍ଉରିଲ—ଆଛା ବାପାତ ମହାଦେବ ! ଏଡ଼େ ରାଗୀ ସେ ? ମୋ ବାପା ତ ତା'ହେଲେ କେଡ଼େ ଭଲ ! ଏଡ଼େ ବୁଦ୍ଧିଆ ପୁଅଟାର ମୁଣ୍ଡକାଟି ଦେଲେ—ପୁଣି ତେମେ ସବୁ ସେ ରାଗୀ ଠାକୁରଟାକୁ ପୂଜା କରୁଛ ? ହଉ ହେଲ—ଯଦି ମନ୍ତ୍ରପାଣି ଛିଂଚି ମୁଣ୍ଡ ଯୋଡ଼ିଦେଲେ ତା'ହେଲେ ଗଣେଶଙ୍କ ନିଜ କଟାମୁଣ୍ଡଟାକୁ ନ ଯୋଡ଼ି ଗୋଟେ ହାତୀମୁଣ୍ଡ ଆଣି ଯୋଡ଼ିଲେ କାହିଁକି ? ଅକାରଣଟାରେ ଗଣେଶ ଅସୁନ୍ଦର ହୋଇଗଲେ ନା' ଆଉ କଣ ? ଦେଖିଲୁ କାର୍ତ୍ତିକ କେଡ଼େ ସୁନ୍ଦର ହୋଇଛନ୍ତି !

ବୋଉ କୋଠି ତଳକୁ ନଡ଼ିଆତକ ଗଡ଼ଉ ଗଡ଼ଉ କହିଲ—କେଜାଣିରେ ପୁଅ ! ମତେ କିସ ଜଣାଅଛି ? ମୁଁ ପୁରାଣ ଜାଣିଛି ନା ସାହାସ୍ତ୍ର ଜାଣିଛି ? ମୋ ବୋପା ତ ମତେ ପାଠ ପଢ଼େଇ ନାହିଁ । ସେ ସବୁ ତର୍ କୁଆଡ଼ୁ ବୁଝିବି ? ହେଲେ ତୁ ସେମିତି, ଗଣେଶ ହୁଅନ୍ତୁ କି ଆଉ ଦେବାଦେବୀ ହୁଅନ୍ତୁ—କାହାକୁ ଥଟ୍ଟା ତାମସା କରିବୁ ନାହିଁ । ଦେବତାମାନେ ରାଗିଲେ ଭଆରୀ ଖରାପ ହବ ଜାଣିଥା ।

ଦୀନୁ ଆଉ କିଛି ଉତ୍ତର ଦେଲ ନାହିଁ । କିନ୍ତୁ ତା'ମନ ବଡ଼ ବିଗିଡ଼ି ଯାଇଥିଲ । ଆରେ ଯାଃ ! ମାସେକାଳ ଗଣେଶଙ୍କ ପାଖେ ଫୁଲ ଦେଲି—ତାଙ୍କ ଗୋଡ଼ ଧରି ବିଦ୍ୟା ବୁଦ୍ଧି ମାଗିଲି । ଅଥଚ ପରୀକ୍ଷାରେ ଗଣେଶ ଯାହା ସାହାଯ୍ୟ କଲେ ଜଣାଗଲ । ଆଉ ତାଙ୍କୁ ଥଟ୍ଟା କଲେ—ସେଇଠୁ ସେ ମତେ ନିହାଲ କରିଦେବେ । ଯେ ଭଲ କରିପାରେ ନାହିଁ—ସେ ମନ୍ଦ ବି କରିବ ନାହିଁ । ଯାବେ'—ଗଣେଶ ଗୋଟେ କଣ ? ଗଣେଶ ଗୋଟେ କିଏ ? ଗଣେଶ ନା ଫଣେଶ !! ପଥରରେ ଗୋଟାଏ ମୂଷା—ତା'ଉପରେ ପଥରରେ ଗୋଟାଏ ତୋଳୁଆ ହାତୀ ମୁଣ୍ଡିଆ ଲମ୍ବାନାକା ଥଲ୍ଲମଲ୍ଲ ବୁଢ଼ା । ହିଃ ହିଃ ହିଃ—

ସେଇଠୁ ଦୀନୁ ମନକୁ ମନ ଗୋଟେ ଗୀତ ଫାନ୍ଦି ଗୁଣୁଗୁଣୁ କରି ଗାଇ ଦାଣ୍ଡଆଡ଼କୁ ବାହାରି ଗଲା—ଗଣେଶରେ ଗଣେଶ

ଖାଇବୁ କି ପଣସ
ଅଇଲାଣି ବିଲଇ
ତୋର ମୂଷା ଯିବ ପଳାଇ
ଗଣେଶରେ ଗଣେଶ
ଗଣେଶ ନା ଫଣେଶ ।

ଦୀନୁ ବୁଝି ସାରିଥିଲା ଯେ ତା' ଦେହାତି ବେଶୀ ପାଠ ପଢ଼ା ହୋଇ ପାରିବ ନାହିଁ । ତାର ହାତରେ ବୁଦ୍ଧିରେଖା ନାହିଁ । ଏବଂ ତା' ମୁଣ୍ଡରେ କେହି ବିଦ୍ୟାବୁଦ୍ଧି ଭର୍ତ୍ତି କରିଦେଇ ପାରିବେ ନାହିଁ । କିନ୍ତୁ ପାଠ ପଢ଼ିବାଠାରୁ ଆଉ ଢେର ଢେର ମଜା ଜିନିଷ ସବୁ ଅଛି । ଦୀନୁ ସାଙ୍ଗମାନଙ୍କୁ ଧରି ଗୁଡ଼ିଉଡ଼ାଏ, ଜୋରନାଳୀରୁ ମାଛ ଧରେ । ଚଢ଼େଇ ବସା ଉଣ୍ଡେ । କିଆ-ବାଡ଼ରେ ନିଆଁ ଲଗାଏ । ଆମ୍ବ, ପିଜୁଳୀ, କଇଁଆ, ନେହୁଆ, ବରକୋଳି, କଣ୍ଟେଇକୋଳି ତୋଳି ଖାଇବାକୁ ସାଙ୍ଗମାନଙ୍କୁ ଧରି ଗାଁଟା ସାରା ବୁଲୁଥାଏ । ଘରକୁ ଫେରି ପାଠ ନ ଆସିବା ଯୋଗୁଁ ବାପା ଭାଇ କକେଇଙ୍କଠାରୁ ଗାଳି ଓ ବେଳେବେଳେ ମାଡ଼ ବି ଖାଏ ।

ସେଦିନ ଯେମିତି ସାଙ୍ଗମାନଙ୍କ ସାଥୀରେ ସେ ଗଡିଟାଜାକ ହାଟତୋଟାରେ ମେଳନ ଦେଖି କଟାଇଲା । ଠାକୁରମାନଙ୍କ ପାଖେ ସାଇଜାତ ସରିଲା ପରେ ଠାକୁରମାନେ ଯେଝା ବେଦୀରେ ବସିଗଲେ । ସେତେବେଳକୁ ଅଧରାତିରୁ ବଳି ପଡ଼ିଲାଣି । ମେଳନ ପଡ଼ିଆରେ ବାଜା, ବାଣ, କୋଳାହଳ ସବୁ ନିସ୍ତବ୍ଧ ହୋଇଗଲା । ସେଉଠୁ ଦୀନୁ ବୋଉ ପାଖରୁ ଯେତିକି ପଇସା ଆଣିଥିଲା ସେତକ ନେଇ ସିଙ୍ଗଡ଼ା, ଆଳୁଚପ ଆଉ ଛେନାପୋଡ଼ ଖାଇଲା । ଠିକ୍ ସେତିକି ବେଳକୁ ପଦନପୁର ଯାତ୍ରାବାଲାଙ୍କ କନ୍‌ସାର୍ଟ ଶୁଭିଲା । ଦୀନୁ ଶୁଣିଲା ଯେ ଏହାପରେ ଯାତ୍ରା ହେବ ମହୀରାବଣ ବଧ । ଅସୁରମାନେ ବାହାରିବେ । ହନୁମାନ ମଧ୍ୟ ବାହାରିବେ । ଦୀନୁ ଜଳଖିଆ ଖାଇସାରି ଆଉ ଘରକୁ ଫେରିବାକୁ ମନ କଲା ନାହିଁ । ଦୁଇଖଣ୍ଡ ମିଠାପାନ ଖାଇ

ସାଙ୍ଗମାନଙ୍କ ସାଥିରେ ବସି ରାତି ଶେଷ ଯାଏ ଯାତ୍ରା ଦେଖିଲା । ଭାରୀ ମଜା ଲାଗିଲା । ସେଇଠୁ ରାତି ପାହିଲା ବେଳକୁ ଘରକୁ ଫେରିଲା । ତା'ର ମନରେ ସେଦିନ ଆଦୌ ଭୟ ବା ଆଶଙ୍କା ନଥିଲା । କାରଣ ବାପା ଦୁଇ ଦିନ ହେଲା ଯାଇଛନ୍ତି ଭୁବନେଶ୍ୱର । ଶନିବାର ଦିନ ଫେରିବେ । କକେଇ ଯାଇଛନ୍ତି କଟକ । ବଡ଼ଭାଇ ! ସେ ମଧ୍ୟ କଟକ ଯାଇଛନ୍ତି କଣସବୁ ଦୋକାନ ପାଇଁ ଜିନିଷ କିଣିବାକୁ । ଆଉ ଭୟ କାହାକୁ ? ଭାଗ୍ୟରେ ଥିଲେ ଏମିତି ନିର୍ଭୟ ମଜା ରାତିଟାଏ ମିଳେ !

ଘରେ ପହଞ୍ଚିଲା ବେଳକୁ ବୋଉ ଆଗଟୁଉ କବାଟ ପିଟାଇ ଦାଣ୍ଡରେ ଠିଆ ହୋଇଛି । ରାତି ତଥାପି ପାହି ନାହିଁ । ଦୀନବନ୍ଧୁ ଚୁପ୍‌ଚାପ୍ ଯାଇ ବିଛଣାରେ ଶୋଇ ପଡ଼ିଲା । ପଡ଼ୁ ପଡ଼ୁ ତାକୁ ନିଦ ଘୋଟିଗଲା ।

ସକାଳ ନଅଟା ବାଜିଲାଣି । ତଥାପି ଦୀନବନ୍ଧୁର ନିଦ ଭାଙ୍ଗିଲା ନାହିଁ । ଆଜି ଯେ ଇସ୍କୁଲକୁ ଯିବାକୁ ହେବ, ଏ ଖିଆଲ ତାର ନଥିଲା । ଏହି ସମୟରେ ଗୁହାଳ ଘରୁ ତାଙ୍କର ନୂଆ ହୋଇ ଜନ୍ମ କରିଥିବା ଜର୍ସି ଗାଈଟା ଖୁବ୍ ଜୋରରେ ବୋବେଇ ଉଠିଲା । ତାର ଦୁହାଁ ହେବା ସମୟ ହୋଇ ଯାଇ-ଥିଲା । ସେହି ଶବ୍ଦରେ ଦୀନବନ୍ଧୁର ନିଦ ଭାଙ୍ଗିଗଲା । ନିଦ ଭାଙ୍ଗିବା ମାତ୍ରେ ତାର ମନ ବିଗିଡ଼ିଗଲା ସେ ଗାଈଟା ଉପରେ । ତାର ଇଚ୍ଛା ହେଲା—ସେ ଉଠି ଯାଇ ଗାଈଟାକୁ ଦି'ଚାରି ପାହାର କଷିଦେବ । ଏତିକିବେଳକୁ ପୂଷି ବିଲେଇଟା କେଉଁଠି ଥିଲା, ଟିକିଏ ଗେଲ ହେବ ବୋଲି ଯେମିତି ଆସି ତା' ଗୋଡ଼ରେ ଘଷି ହୋଇଛି, ଦୀନବନ୍ଧୁ ତାକୁ ରାଗରେ ଗୋଡ଼ରେ ଠେଲି ଦେଲା—"ଯାବେ, ଅତି ଗୋଟେ ଦେଖେଇ ହେଉଛି ।" ବିଲେଇଟା କିକ୍ ଖାଇ ନାଥୁକିନା ଆଉ ଠାଏ ପଡ଼ିଲା । ତା'ପରେ ଲାଞ୍ଜ ଟେକି ଦୀନବନ୍ଧୁ ମୁହଁକୁ କଟମଟ କରି ଅନେଇ ଗାଳିଦେଲା—"ମିଆଉଁ-ମିଆଉଁ ।" ତା' ମାନେ ସକାଳ ନଅଟାରେ ବିଛଣାରୁ ଉଠୁଛ, ଏତେ ରାଗ କାହିଁକି ବାବୁ ? ସେଇଠୁ ଦୀନବନ୍ଧୁ ତାକୁ ଧମକେଇଲା—"ଦେଖିବୁ ଅଇନେ ? ତୋ' ମ୍ୟାଉଁ ମ୍ୟାଉଁ ଛଡ଼େଇ ଦେବି । ଗେଟଆଉଟ୍ (ବାହାରି ଯା') । କହୁଛି—ଗେଟ୍‌ଆଉଟ୍ । ତୁ ମତେ କହିବାକୁ କିଏ ବେ ? ତୋ' ଜୀବନରେ କେତୋଟା ମୂଷା

ମାରିଲୁଣି କହିଲୁ ? ନାହାକ ଘର ପୁଷି ପ୍ରତିଦିନ ଗୋଟେ ଲେଖାଁ ମୂଷା ମାରୁଛି । ତୁ ଖାଲି ଗିଳିବୁ, ଉଷୁମ ଟାଣିବୁ । ସମସ୍ତଙ୍କ ଦେହରେ ଘଷି ହୋଇ ଗେଲ ହେବୁ । ଆଉ ତୋର ଯେଉଁସବୁ ବିଷୟରେ ପାଟି ଫିଟେଇବା କଥା ନୁହଁ—ପାଟି ଫିଟେଇବୁ, ଯା'ବେ ସେଠୁ । ସେମିତି କଟମଟ କରି ଅନେଇଛୁ କଣ ? ଦେଖିବୁ ଅଇନେ ? ରହ, ତତେ ଦଉଛି ଆଜି ପାନେ ।

ସେଇଠୁ ଦୀନବନ୍ଧୁ ତା' ସାନଭଇ ପିଣ୍ଟୁକୁ ଡ଼ାକିଲା । ପିଣ୍ଟୁ—ହେ ପିଣ୍ଟୁ ! ଢାଳେ ପାଣି ଆଣ । ତା' ଡାକ ଶୁଣି ଘର ଭିତରୁ ମା' ଜବାବ୍ ଦେଲା— କାଇଁକି ପିଣ୍ଟୁ ପିଣ୍ଟୁ ହଉଛୁ ? ପିଣ୍ଟୁ କେତେବେଳୁ ତା' ଇସ୍କୁଲକୁ ଗଲାଣି । ସେ କଣ ତୋ' ଭଳିଆ ହୋଇଛି ? ବାପା ଆଉ ବଡ଼ ଭଇ ଘରେ ନାହାନ୍ତି ବୋଲି, ରତିଯାକ ଅନିଦ୍ରା ହୋଇ, ଯାତ୍ରା ଦେଖି ଆସି ଘରେ ଶୋଇବ ସକାଳ ନଅଟା ଯାଏ ? ନାଁ ତୋର କିଛି ପାଠପଢ଼ାରେ ମନ ଅଛି ? ନ ଜାଣି ତୋତେ କଗୁ ବାଡ଼ାଏ ?

ଦୀନବନ୍ଧୁ ଖଟ ଉପରୁ ଉଠି ଆସିଲା ଚିଡ଼ିକରି । ବୋଉ ଉଦ୍ଦେଶ୍ୟରେ କହିଲା—ହଉ, ରଖ ତୋର ଫାଜିଲମି ? ତୋର ବଡ଼ପୁଅ ଜଗବନ୍ଧୁ ଭଲ— ଆଉ ତୋର ସାନପୁଅ ପିଣ୍ଟୁ ଭଲ । ଗୋଟାପଣେ ସୁନା । ଆଉ ଖାଲି ମୁଁ ଖରପ ? ଗଲା ପରୀକ୍ଷାରେ ପିଣ୍ଟୁ ସାହିତ୍ୟରେ ଫେଲ୍ ହୋଇଛି ଜାଣୁ ? ସାହିତ୍ୟରେ ପ୍ରଶ୍ନ ପଡ଼ିଥିଲା "ତୁମେ ଦେଖିଥିବା ଗୋଟିଏ ଯାତ୍ରା" ଉପରେ ରଚନା ଲେଖ । ପିଣ୍ଟୁ କିଛି ଲେଖି ପାରିଲାନି । ସେ କଣ ମେଳନ ଯାତ୍ରା କିଛି ଦେଖିଛି ଯେ ଲେଖିବ ? ଯାତ୍ରା ଉପରେ ନ ଲେଖି ଆମ ଗାଁ ହାଟ ଉପରେ କଣସବୁ ଏଣୁତେଣୁ ଲେଖିଦେଲା । ପାଇଲା ଗୋଲ ଆଳୁ ! ମୋର ଗଲା ପରୀକ୍ଷାରେ ସାହିତ୍ୟରେ କେତେ ଅଛି କହିଲୁ ? ପଇଁତ୍ରିଶ ! ଶହେରୁ ପଇଁତ୍ରିଶ । ମୁଁ ପୁଣି ଦୁଇଟା ପନ୍ଦର ନମ୍ବରିଆ ପ୍ରଶ୍ନ ଛାଡ଼ି ଦେଇଥିଲି ।

ମାଆ କହିଲା—ହଉ ହଉ, ତୁ ଗୋଟାଏ ଭରୀ ପଣ୍ଡିତ ମୁଁ ଜାଣେ । ଯା' ଯା' ଚଞ୍ଚଳ ଗାଧୋଇ ଖାଇ ଇସ୍କୁଲକୁ ଯା' । ଦଶଟା ବାଜିବାକୁ ବସିଲାଣି ।

ମାତ୍ର ଦୀନବନ୍ଧୁର ମନ ଆଉରି ବିଗିଡ଼ିଗଲା । ନାଃ ! ଆଜି ଆଉ ଇସ୍କୁଲକୁ ଯାଇହେବ ନାହିଁ । ସେ କିଛି ପଢ଼ାପଢ଼ି କରିନାହିଁ । ସାହିତ୍ୟ ସାର୍ "ନଈବଢ଼ି" ଉପରେ ଗୋଟିଏ ରଚନା ଲେଖିବାକୁ ଦେଇଥିଲେ, ସେତକ ସେ ଲେଖି ନାହିଁ । କଣ ଭଲ ଲେଖିଥାନ୍ତା ? ଆଉ କଣ ନଈବଢ଼ି ହେଉଛି ? ମୂଳରୁ ତ ତିନିବର୍ଷ ହେଲା ବର୍ଷା ଦେଖା ନାହିଁ । ମରୁଡ଼ି ପଡ଼ୁଛି । ଆଉ, ନଈବଢ଼ି ଉପରେ ଲେଖିବି କଣ ? ସାହିତ୍ୟ ସାର୍‌ଙ୍କ ମୁଣ୍ଡରେ ଭଲା ଟିକିଏ ଅକଲ ଥାଆନ୍ତା ? ମରୁଡ଼ି ଉପରେ ରଚନା ନ ଲେଖି ନଈବଢ଼ି ଉପରେ ରଚନା ଦିଅନ୍ତେ ଲେଖିବାକୁ ? ତା'ଛଡ଼ା, ଘରିଖଣ୍ଡ ଅଙ୍କ ମଧ୍ୟ କଷିବାକୁ ଥିଲା । ଗୋଟିଏ ଭୂଗୋଳ ପ୍ରଶ୍ନର ଉତ୍ତର ମଧ୍ୟ ଲେଖି ନେବାକୁ ଥିଲା । ଏତେକ ନକରି, ନ ଲେଖି ସେ ଇସ୍କୁଲକୁ ଯିବ ବା କେମିତି ? ଗଲେ, ଗଣିତ ସାର୍‌ଙ୍କ ଗାଳି ସାଙ୍ଗକୁ କିଛି ମାଡ଼ ମଧ୍ୟ ପିଠିରେ ବସି ଯାଇପାରେ । ଅବଶ୍ୟ ସାହିତ୍ୟ ସାର୍‌ଙ୍କୁ ଠକିଦେଇ ହେବ । ସେ ଭରି ଭଲ ଲୋକ । ଯୋଉଦିନ ପଢ଼ିବାକୁ ଆମର ମନ ନଥିବ—ଏଇ ଯେମିତି ଝଡ଼ିବର୍ଷା ପାଗ ହେଲେ, ସେ ଆମ ମନକଥା ଜାଣିପାରି ହସି ହସି ପଚାରିବେ—ଆଜି ଭୂତଗପ ଶୁଣିବ କିରେ ପିଲେ ? ଆମେ ସମସ୍ତେ ଏକସ୍ୱରରେ ଚିହ୍ଲାର କରୁ ଉପରକୁ ହାତ ଟେକି—ହଁ ସାର୍, ହଁ ସାର୍ ଭୂତ ଗପଟିଏ କହନ୍ତୁ । ଖୁବ୍ ବଡ଼ ଭୂତ ଗପଟାଏ । ବାସ୍ ଚାଲିଲା ଭୂତଗପ । ପିରିଅଡ୍ ସରିବ, ମାତ୍ର ଭୂତଗପ ସରିବ ନାହିଁ । ଆଉ ଭୂଗୋଳ ସାର୍ ? ତାଙ୍କର ଅବଶ୍ୟ ଦୟାମାୟା ଅଛି—ବାଡ଼ାଇବେ ନାହିଁ । ମାତ୍ର ବେଞ୍ଚ ଉପରେ ସାରା ପିରିଅଡ୍‌ଟା ଠିଆ କରାଇଦେବେ । ଷ୍ଟାଣ୍ଡ ଅପ୍ ଅନ୍ ଦି ବେଞ୍ଚ—ଆଇ ସେ ଷ୍ଟାଣ୍ଡଅପ୍ । ଓଃ, ସେ ଦଣ୍ଡଠାରୁ ବଳି ଅପମାନ ଆଉ ନାହିଁ । ପୁଣି ମଞ୍ଜୁପ୍ରଭା ଆଉ କନକମଞ୍ଜରୀ—ବେଞ୍ଚ୍ ଉପରେ ଠିଆ ହୋଇଥିବା ପିଲାମାନଙ୍କ ଆଡ଼କୁ ଚାହିଁ କିରିକିରି ହୋଇ ହସି ହସି ଗଡ଼ି ଯାଉଥିବେ ! ଇସ୍, ମରଣ ବରଂ ତା'ଠାରୁ ଭଲ । ଏଇ କନକମଞ୍ଜରୀ ବୋଲି ଯୋଉ ଝିଅଟା—ଖୁବ୍ ଭଲ ଝିଅଟାଏ । ତା' ମାଁ' ବଢ଼ିଆ ଆଚାର କରେ । ସେ ସବୁଦିନେ ଆଚାର ନେଇ ଆସେ କ୍ଲାସକୁ । ତା' ସାଙ୍ଗ ଝିଅପିଲାମାନଙ୍କୁ ବାଣ୍ଟେ । ତା'ର କଣ ମନହୁଏ କେଜାଣି, ଥରେ ଥରେ ତାକୁ ମଧ୍ୟ ଆଚାର ଆଣିଦିଏ । କିନ୍ତୁ ମଞ୍ଜୁପ୍ରଭା ଟୋକୀଟା ଭରି ବଦମାସ । ଡାକ୍ତର ବାବୁଙ୍କ

ଝିଅ ବୋଲି ଭରି ଝିର୍ବ । ସମସ୍ତଙ୍କୁ ଥଟ୍ଟା କରିବ—ଧମକେଇବ । ଅବଶ୍ୟ, ତାକୁ କେବେ ସେ ଏମିତି ଥଟ୍ଟା ତାମ୍‌ସା କରିନି କି ଧମକାଇନି । କିନ୍ତୁ ଥରେ ଯଦି ସେ କେବେ କିଛି କେମିତି ଥଟ୍ଟା ତାମ୍‌ସା କରିବ ନା, ପାଇବ ମଜା । ଦୀନବନ୍ଧୁକୁ ସେ ଜାଣି ନାହିଁ । ତା' ସାଙ୍ଗରେ ଥରେ ଲଗିଲେ ସେ ତା' ଡାକ୍ତର ଝିଅପଣିଆ ଛଡ଼େଇଦେବ । କିନ୍ତୁ ସେ ଟୋକୀଟା ଭଲ ପାଠପଢ଼େ । ଅଙ୍କ ଆଉ ମାନସାଙ୍କରେ ଶହେକୁ ଶହେ ରଖେ । କେମିତି ରଖେ କେଜାଣି ? ଭରି ବୁଦ୍ଧିଆ ବୋଧେ । ତା' ହାତରେ ବିଦ୍ୟାବୁଦ୍ଧି ରେଖାଗୁ ନିଶ୍ଚୟ ଗୁଡ଼ାଏ ଥିବ କିମ୍ବା ଗଣେଶ ମାହାପ୍ରୁ ତା'ପ୍ରତି ପ୍ରସନ୍ନ ହୋଇଥିବେ । ଓଃ, ବିଦ୍ୟା ବୁଦ୍ଧି ନ ଥିଲେ ମଣିଷ କଣ କେମିତି କରିବ ଯେ ? ବିଦ୍ୟା ବୁଦ୍ଧି ନଥିଲେ କେମିତି ପାଠ ହବ ଭଲ ?

ଦୁତ୍‌ତେରୀ, ଆଚ୍ଛା ବିଦ୍ୟା ବୁଦ୍ଧି ! ଆଚ୍ଛା ସ୍କୁଲ ! ଆଚ୍ଛା ପାଠପଢ଼ା ! ଆଚ୍ଛା ସାହିତ୍ୟ ! ଆଚ୍ଛା ଗଣିତ ! ମାର୍ ଗୁଲି ସେ ଭୂଗୋଳ ପାଠକୁ । କଣ ଭଲ ସେ ପାଠରୁ ମିଳୁଛି ! ପଦନା, ଧୂସା, ଗୁନିଆ, ମଙ୍ଗେଇ—ଏମାନେ ଏବେ ସ୍କୁଲକୁ ଯାଉନାହାନ୍ତି—ପାଠ ପଢ଼ୁ ନାହାନ୍ତି—କଣ ଏମିତି ଖରାପ ହୋଇ ଯାଉଛି । ପଦନା ତ ସବୁଦିନେ ଗାଈ ଚରଉଛି । ନଈକୂଳରେ ଗାଈଙ୍କି ଛାଡ଼ିଦେଇ ବଇଁଶୀଟିଏ ଧରି ଆମ୍ବଗଛ ଡାଳରେ ବସି ମନ ମଉଜରେ ଦିନ ସାର ବଇଁଶୀ ବଜାଉଛି । ଧୂସା କଣ କରୁଛି ନା, ଏକାଥରକେ ଛଅଟା ବନ୍‌ସୀଖଡ଼ା ଧରି ଯୋଡ଼ଖାଲକୁ ଯାଉଛି । ସେ ଖାଲରେ ଅକାତକାତ ପାଣି—ସାଲୁବାଲୁ ମାଛ । ଧୂସା ଛଅଟାଯାକ ବନ୍‌ସୀ ପକେଇ ଅତଡ଼ା ଉପରେ ବସି ବିଡ଼ି ଖାଉଥିବ । ଫେରିବ ଯାଇ ସନ୍ଧ୍ୟା ପୂର୍ବରୁ । ଖାଲେଇଏ ମାଛ ଧରି ଆଣିବ । ତା' ମାଆକୁ ଦେବ । ତା' ମାଆ ଅଧେ ମାଛ ଗାଁରେ ବିକିବ । ତାଙ୍କ ଘରେ ସବୁଦିନେ ମାଛ ତର୍କାରୀ । ଗୁନିଆର ମାଆ ଚିନା-ବାଦାମ ବୁଟ ଭଜି ଦିଏ । ଗୋଟାଏ ଡାଲାରେ ସେତକ ମୁଣ୍ଡେଇ ଗୁନିଆ ବଜାର ଉପରେ ବସ୍‌ଷ୍ଟାଣ୍ଡରେ ବିକେ । ମଝିରେ ମଝିରେ ଗୋଟେ ଗୋଟେ ମଜା ଗୀତ ମଧ୍ୟ ବୋଲି ଦଉଥାଏ । ଭରି ରହସିଆ ଟୋକା । ଆଉ ମଙ୍ଗେଇ ବୋଲି ଯୋଉ ଟୋକା—ତାର ତ ସବୁଠାରୁ ମଜା । ଦିନଯାକ ଗୁଡ଼ି ଉଡ଼ାଉଥିବ, ନ ହେଲେ ତାଗରପୁଆ ଖେଳୁଥିବ । ତା' ନ ହେଲେ

କୌଁଡଠୁ ଟଙ୍କେଇଛୁଆ କି ନେଉଳଛୁଆ ଧରୁଥିବ । ଦିନେ ଦିନେ ଗୋଟେ ସାପ ମଧ୍ୟ କୁଆଡୁ ଧରିଆଣି ତା' ଦେହରେ ପୋଲଙ୍ଗ ତେଲ କୁଡୁବୁଡୁ କନା ଗୁଡ଼ାଇ ନିଆଁ ଲଗାଇ ତଳେ ଛାଡ଼ିଦେବ । ସାପଟା କିଲିବିଲି ହୋଇ ତଳେ ଦଉଡ଼ି ପଳାଉଥିବ ଏବଂ କିଛି ବାଟରେ ନିଆଁରେ ଛଟପଟ ହୋଇ ମରି ପଡ଼ିବ । ଭରି ମଜା ଲଗେ । ମଙ୍ଗେଇର ହୋଲେ ନା ଡୋଲେ । କୋଉ ଏବେ ଅଙ୍କ କଷିବାକୁ ପଡ଼ୁଛି ନା, ରଚନା ଲେଖିବାକୁ ପଡ଼ୁଛି ? କିଛି ନାହିଁ । ବଡ ମଉଜରେ ଅଛନ୍ତି ସେମାନେ ।

ଦୀନବନ୍ଧୁ ଦାନ୍ତ ଘଷୁ ଘଷୁ ନିଜ ଭଗ୍ୟକୁ ବଡ଼ ନିନ୍ଦା କଲ । ଓଃ ! ଆମ ଘରେ ଖାଲି ପାଠ, ପାଠ । ବାପା ପଗ୍ଚରିବେ—ଦୀନୁ, ଅଙ୍କତକ ଆଜି କଷିଛୁ ? କକେଇ ପଗ୍ଚରିବେ—ଦୀନୁ ! ଦେଖି ତୋ ରଚନା ଖାତା ? ବଡ଼ଭଇ ଜଗୁ ଭଇନା କୁଆଡ଼େ ଥିବେ, ସଞ୍ଜବୁଡେ ଆସି ସମସ୍ତଙ୍କ ଆଗରେ ଦି'ଟା କଡ଼ା ମାନସାଙ୍କ ପଗ୍ଚରିଦେବେ—କହିଲୁ ଦୀନୁ, ଆମ ଗାଁଠାରୁ ଭୁବନେଶ୍ୱର ଯେତିକି ଦୂର, ଆମ ଗାଁଠାରୁ କଟକ ତାର ତିନିଗୁଣ ଦୂର । ଆମ ଗାଁଠାରୁ ଭୁବନେଶ୍ୱର ନବେ କିଲୋମିଟର । ତା'ହେଲେ ଆମ ଗାଁଠାରୁ କଟକ କେତେ କିଲୋମିଟର ? ଦୀନବନ୍ଧୁ ଏ ପ୍ରଶ୍ନଟାର ଉତ୍ତର ଭବୁ ଭବୁ ତା ମନ ଭିତରେ ପ୍ରଥମେ ଭୁବନେଶ୍ୱରର ଲିଙ୍ଗରଜ ଦେଉଳ, ଖଣ୍ଡଗିରି, ଧଉଳିଗିରି ନନ୍ଦନକାନନ ପ୍ରଭୃତି ମନେପଡ଼ିଯାଏ । ସେସବୁ ଭବନାକୁ ପାରିହୋଇ ମନେ ମନେ ଅଙ୍କଟାକୁ କଷିଲ ବେଳକୁ ଜଗୁ ଭଇନା ଆଉ ଗୋଟାଏ ମାନସାଙ୍କ ପଗ୍ଚରି ଦେବେ । ତାକୁ ଭବୁ ଭବୁ ଆଉ ଗୋଟାଏ ପଗ୍ଚରିଦେବେ —ତା'ପରେ ଆଉ ଗୋଟାଏ—ଆଉ ଗୋଟାଏ । ଦୀନବନ୍ଧୁର ମୁଣ୍ଡ ଗୋଳ-ମାଳ ହୋଇଯାଏ । ତା' ପାଟିରୁ ଆଉ କଥା ବାହାରେ ନାହିଁ । ସେ ଢୁଙ୍ଗା ହୋଇ ବସେ । ସେଇଠୁ ଜଗୁ ଭଇନା ତା' କାନ ଧରି ବାପା, ବୋଉ, କକେଇ ଆଉ ମିଣ୍ଟୁ ଆଗରେ ମାରିବେ ବ୍ରହ୍ମଗ୍ଚପୁଡ଼ା । ସେଇଠୁ ସେ ସୁକୁସୁକୁ ହୋଇ କାନ୍ଦିବ । ଜଗୁ ଭଇନା ପାଟି କରି ଉଠିବେ—ଗଧ କାହାଁକା, ଷଷ୍ଠ ଶ୍ରେଣୀରେ ପଢ଼ୁଛୁ, ତୋତେ ତୃତୀୟ ଶ୍ରେଣୀର ମାନସାଙ୍କ ଆସୁନାହିଁ ? ମୁଁ ଯେତେବେଳେ ତୃତୀୟ ଶ୍ରେଣୀରେ ପଢ଼ୁଥିଲି, ସପ୍ତମ ଶ୍ରେଣୀର ଅଙ୍କ କଷି ଥୋଇ ଦେଉଥିଲି ।

ବାପା ଗମ୍ଭୀର ହୋଇ କହିବେ—ସେଇଟାର ପାଠ ହବନି । ଯାଃପ, ନିର୍ବୁଦ୍ଧିଆଟାଏ—କକେଇ କହିବେ—ନାଇଁ ନାଇଁ ନିର୍ବୁଦ୍ଧିଆ କାହିଁକି ହେବ ? ସେ ତ ଇମ୍ପାରୁ ବହି ଖାତା ଧରି ଦଣ୍ଡେ ବି ଥୟ ଧରି ବସିବ ନାହିଁ । ଖାଲି ଏଣେ ତେଣେ ବୁଲୁଥିବ । ନ ହେଲେ ଘରକୁ ଆସିଲେ ଶୋଇବ । ପାଠ ତାର କେମିତି ହେବ ? ବୋଉ ଆସି କହିବ—ତୁ ଜଗୁ , ତାକୁ ସବୁବେଳେ ମାରୁ ଗୋଟେ କଣ ରେ ? ବଡ଼ ଭାଇଟିଏ ହେଇ ତାକୁ ସିନା ବତେଇ ଦେବୁ, ମାଡ଼ ଦେଲେ କଣ ତାର ପାଠ ହୋଇଯିବ ? ତାକୁ ତ ଗଣେଶ ମାହାପ୍ରୁ ଯେତିକି ବୁଦ୍ଧି ଦେଇଛନ୍ତି—ସେତିକିରେ ସିନା ଯେତିକି ହବ । ଏ କହିଲ ଭଳିଆ—"ଯେତିକି ଚୁନାକୁ ସେତିକି ପିଠା, ଯେତିକି ଗୁଡ଼କୁ ସେତିକି ମିଠା ।" ସେଇଠୁ ଜଗୁ ଭାଇନା କହିବେ—ତୁ ବୋଉ ତାକୁ ଏତେ ମୁହଁ ଦେ'ନା କହୁଛି । କାଲି ମତେ ତାଙ୍କ ଭୂଗୋଳ ସାର୍ ଗୋଲକବାବୁ କହୁଥିଲେ ଯେ, ସେ ସବୁଦିନେ କ୍ଲାସ ମଝିରେ କୁଆଡ଼େ ପଳାଉଛି ।

ବୋଉ ପଚାରିଲା—କୁଆଡ଼େ ପଳାଉଛି ? ଜଗୁ ଭାଇନା କହି ଗ୍ଲାଲିଥାଏ । କୁଆଡ଼େ ଆଉ ଯିବ ? ସେଇସବୁ ଅଶିକ୍ଷିତ ଛତରା ଛୁଆ ଗୁନା, ପଦନା, ଧୁସା ହେରିକାଙ୍କ ସାଙ୍ଗରେ ବୁଲୁଥିବ । କୋଉଠି ଆମ୍ବ, କୋଉଠି କୋଳି ତୋଳି ଖାଉଥିବ । ନହେଲେ, ଚଢ଼େଇ ଛୁଆ ଧରୁଥିବ । ସେଇଟାକୁ ଆଉ ସେମିତି ପାରିହେବ ନାହିଁ । ମୁଁ ଭାବୁଛି—ଦିନେ ତା' ମୁଣ୍ଡକୁ ଛେଚି, ତା' ଭିତରୁ ଦହିତକ ସବୁ ବାହାର କରିବି । ଦେଖିବି, ତା' ଭିତରେ ବୁଦ୍ଧି ଅଛି କି ନାହିଁ । ନାଇଁ ଦେଖ୍ ଦେଖ୍—ମୁଁ ଯୋଉ ଅଙ୍କକୁ ତୃତୀୟ ଶ୍ରେଣୀରେ କହି ଦଉଥିଲି, ତାକୁ ଏ ମୂର୍ଖ ଷଷ୍ଠ ଶ୍ରେଣୀରେ ବି କହିପାରୁ ନାହିଁ ।

ଦୀନବନ୍ଧୁ ମାଡ଼ ଭୟରେ କିଛି ଉତ୍ତର ଦେଇପାରେନା । ସେ କିନ୍ତୁ ଜାଣେ ଯେ ଭାଇ ମିଛ କହୁଛନ୍ତି । ଏତେ ବଡ଼ ପଣ୍ଡିତ ଥିଲେ ତ ମାଟ୍ରିକ ତିନିଥରଯାକ ଫେଲ୍ ହୋଇ ଗାଁରେ ଇଲେକ୍‌ଟ୍ରିକ୍ ଦୋକାନଟାଏ କରି ବସିଛନ୍ତି କାହିଁକି ?

ଛାଡ଼ ସେ କଥା । ଦୀନବନ୍ଧୁ ଦାନ୍ତ ଘଷିସାରି ପଖାଳ ଆଉ ଶୁଖୁଆ ଭଜା ଖାଇଲା । ଖାଇସାରି ପ୍ୟାଣ୍ଟ ଆଉ ସାର୍ଟ ପିନ୍ଧିଲା । ତା'ପରେ ଭାବିଲା ସେ

ସ୍କୁଲକୁ ଆଜି ଯିବା ଉଚିତ ହେବ କି ନାହିଁ ? ଭାଇନା ଆଜି ନାହାନ୍ତି । ବାପା ଓ କକେଇ ମଧ୍ୟ ନାହାନ୍ତି । ବର୍ତ୍ତମାନ କଣ କରିବା ଉଚିତ ? ବେଳା ମଧ୍ୟ ଗଡ଼ିଗଲାଣି । ସେ ଘର ପାଠ ମଧ୍ୟ କିଛି କରିନି କି ଲେଖିନି । ଛାଡ଼—ଆଜି ଦିନଟା ସେ ସ୍କୁଲକୁ ଯିବ ନାହିଁ । କାଲିକି ଦେଖାଯିବ । ଆଜି ଗଲେ କ୍ଷତି ଛଡ଼ା କିଛି ଲାଭ ନାହିଁ । କିନ୍ତୁ ଏ ମାସରେ ସେ ଏମିତି ଏମିତି ଛଅ ଥର ସ୍କୁଲକୁ ଯାଇ ନାହିଁ । ହଉ ଦେଖିବା, କାଲି କଥାତ ଅଛି । ଦୀନବନ୍ଧୁ ମନେ ମନେ ଭାବିଲା— ତା' ହେଲେ ବର୍ତ୍ତମାନ ବରଂ ସବୁଠାରୁ ଭଲ ହେବ ମିଶ୍ର ତୋଟାକୁ ଯିବା । ସାଙ୍ଗମାନଙ୍କୁ ନେଇ ଦି'ପହରଯାକ ମିଶ୍ର ତୋଟାରେ କାଲି ରାତିରେ ଦେଖିଥିବା ମହୀରାବଣ ବଧ ସୁଆଙ୍ଗ କରିବା । ଭାରି ମଜା ହେବ । ସେ ନିଜେ ରାମ ସାଜିବ । ଗୁନିଆ ହବ ଲକ୍ଷ୍ମଣ । ପଦନା ହବ ସୀତା । ଧୂସା ହେବ ହନୁମାନ । ଆଉ ମଙ୍ଗେଇ ହେବ ମହୀରାବଣ । ସେ ମଙ୍ଗେଇଟା ଅବିକଳ ଅସୁର ଭଳିଆ ଦିଶେ । ଭେଇ ସାହିର ସବୁ ପିଲାମାନେ ଆସି ରୁଣ୍ଡ ହେବେ । ଧୂସା ଆଉ ମଙ୍ଗେଇଙ୍କ ଭିତରେ ମହୀରାବଣ ହନୁମାନ ଯୁଦ୍ଧ ଭାରି ଭୟଙ୍କର ହେବ । ଧୂସା ମଙ୍ଗେଇକି ମାଡ଼ି ବସି ତା ପିଠିରେ ବିଧା ଉପରେ ବିଧା ଥୋଉଥିବ । ମଙ୍ଗେଇ କିନ୍ତୁ କିଛି କରିପାରୁ ନ ଥିବ । ଆଃ, ଭାରି ମଜା ହେବ, ଭାରି ମଜା ।

ଏତିକି ସ୍ଥିର କରି ଦୀନବନ୍ଧୁ ଆଗ ପଦନା ଘରକୁ ଗଲା । କିନ୍ତୁ ଦୁର୍ଭାଗ୍ୟ ! ପଦନା ଘରେ ନଥିଲା । ସେ ଗାଁର ଗାଈମାନଙ୍କୁ ନେଇ ନଈକୂଳକୁ ଚରାଇବାକୁ ଚାଲି ଯାଇଥିଲା । ସେଠୁ ସେ ଗଲା ଧୂସା ଘରକୁ । ବାଟରେ ଦେଖାହେଲା ଗୁନିଆ ସାଙ୍ଗରେ । ଗୁନିଆ ଗୋଟେ ବଡ଼ ଡାଲାରେ ଭଜାବୁଟ ଆଉ ବାଦାମ ସଜେଇ ତାକୁ ମୁଣ୍ଡେଇ ମୁଣ୍ଡେଇ ତରବରରେ ବଜାର ଆଡ଼େ ମୁହାଁଇ ଥିଲା । ଦୀନୁର ପ୍ରସ୍ତାବ ଶୁଣି ସେ ନିର୍ବିକାର ଭାବେ ଉତ୍ତର ଦେଲା—ନାହିଁରେ ଭାଇ ! ମୋତେ କୋଉଠି ଏଇଲାଗେ ଖେଳିବାକୁ ବେଳ ଅଛି ? ବୁଟ ବାଦାମ ନ ବିକିଲେ ପଇସା ଆସିବ କୁଆଡୁ ? ଆମେ ଚଳିବୁ କେମିତି ? ହଉ ଥାଆ ତୁ —ବସ୍‌ମାନେ ଆସିବା ବେଳ ହୋଇଗଲାଣି...ଗୁନିଆ ଚାଲିଗଲା । କିନ୍ତୁ ଠିକ୍ ସେତିକିବେଳକୁ ଆସି ପହଂଚି ଗଲା ଧୂସା । ତା'ହାତରେ ପାଞ୍ଚଟା ବନିଶୀ ଖଡ଼ା । ଆଉ କାନ୍ଧରେ ଓହଳିଥାଏ ଖାଲେଇଟାଏ । ଦୀନବନ୍ଧୁ ମୁହଁରୁ ଖେଳ

ପ୍ରସ୍ତାବ ଶୁଣି ସେ କହିଲା—ନାଇଁରେ ଭାଇ ! ମାଛ ଦି'ଟା ଧରିଆଣି ନ ବିକିଲେ ଆମେ ଆଜି ଓପାସ ରହିବୁ । ତେମେ ସିନା ବଡ଼ଲୋକ ! କାଲି ଗୋଟେ ବନ୍‌ସୀ କଣ୍ଟା ମୋର ଗଲା । ବାଳିଆ ମାଛ ସୁତା ସୁଦ୍ଧା କାଟି କୁଆଡ଼େ ପଳେଇଲା'। ଆଜି ମାଛ ବିକିସାରି ବଜାରକୁ ଯିବି । ଗୋଟେ ବଡ଼ କଣ୍ଟା କିଣିବି । ହଉ ଭାଇ ; ଯାଉଛି ।

ଧୂସା ଚାଲିଗଲା । ଦୀନବନ୍ଧୁର ମୁହଁକୁ ସୁଦ୍ଧା ଚାହିଁଲା ନାହିଁ । ଦୀନବନ୍ଧୁକୁ ଟିକେ ନିରାଶ ଲାଗିଲା । ଏଗୁଡ଼ାକ ଏଡ଼େ ପାଜୀ ! ଏମାନେ ଯେତେବେଳେ ଖେଳିବାକୁ ଡାକିବେ, ବିନା ଆପତ୍ତିରେ କ୍ଲାସ ମାରକରି ସେ ଯାଇଛି ସେମାନଙ୍କ ସାଙ୍ଗେ । କେତେ ଡାଳମାଙ୍କୁଡ଼ି ଖେଳ, ପାହିକିତିକିତି, ବୋହୂ-ଚୋରୀ—ଯୋଡ଼ନାଳୀ ଗଣ୍ଡ ଭିତରେ ଚୁଙ୍ଗୁଡ଼ି ବାଳିଆ ଖେଳ । ଥରି ଥରି ସେମାନଙ୍କୁ ସାଙ୍ଗରେ ଧରି କେତେ ଯାତ୍ରା ମେଳନ ଦେଖିବାକୁ ନେଇଛି । ନିଜ ହାତରୁ ପଇସା ଖର୍ଚ୍ଚ କରି ସେମାନଙ୍କୁ ଗୁଡ଼ିଆ ଦୋକାନରୁ ପୁରୀ, ସିଙ୍ଗଡ଼ା, ପକୋଡ଼ି ଖୁଆଇଛି । ଅଥଚ ଏ ଗୁଡ଼ାକ ଏଡ଼େ ସ୍ୱାର୍ଥପର । ଏମାନଙ୍କ ଲାଗି କେତେ ମାଡ଼ ଗାଳି ଖାଇବାକୁ ପଡ଼ିଛି ଘରେ ବଡ଼ଭାଇଙ୍କ-ଠାରୁ—ବାପାଙ୍କଠାରୁ । ଘରୁ କେତେ ଜିନିଷ ଚୋରେଇ ନେଇ ଏମାନଙ୍କୁ ଦେଇଛି । ସେଥିପାଇଁ କେତେ ଗଞ୍ଜଣା ବୋଉଠାରୁ ପାଇଛି । ଅଥଚ ଏଗୁଡ଼ାକ ଏଡ଼େ ସ୍ୱାର୍ଥପର ! ଆଜି ଗୋଟେ ଅବେଳରେ ମନ ଯେତେବେଳେ ଗୋଟେ ମଜା କରିବାକୁ ଚାହୁଁଛି, ସେତେବେଳକୁ ଏମାନେ ମୁହଁକୁ ସୁଦ୍ଧା ଚାହୁଁ ନାହାନ୍ତି ।

ଦୀନୁ ମନ ଭିତରେ ରାଗ ଓ ନିରାଶାରେ ସନ୍ତୁଳି ହୋଇ ଶେଷ ଚେଷ୍ଟା କରିବାକୁ ମଙ୍ଗେଇ ଘରକୁ ଗଲା । ମଙ୍ଗେଇ ଘରଟା ବଡ଼ ବିଚିତ୍ର । ଦିଶେ ଗୋଟେ ଅନ୍ଧାରିଆ ଗୁମ୍ଫା ପରି । ଚାରିପଟେ ଖୁବ୍ କମ୍ ଉଚ୍ଚା କାନ୍ଥକୁ ଗୋଟାଏ ବଡ଼ ପାଳଛତୁ ପରି ଚାଳଟା ମାଡ଼ି ବସିଛି । ତା' ଭିତରେ ପୁଣି ଗୋଟାଏ ଢିଙ୍କି ପଡ଼ିଥାଏ । ଗୋଟେ ମାଛଧରା ମୁଗୁର ଓ ଗୋଟାଏ ପୋଳୁହ ମଧ୍ୟ ଘରକଣକୁ ଚାଳରେ ଟଙ୍ଗା ହୋଇଥାଏ । ସେଇ ଘରେ ମଙ୍ଗେଇ ମାଆ ରୋଷେଇ କରେ । ସେଇ ଘରେ ମଧ୍ୟ ମାଆ ପୁଅ ଶୁଅନ୍ତି ।

ମଙ୍ଗେଇ ଘର ପାଖରେ ପହୁଞ୍ଚିବା ମାତ୍ରେ ତା’ ମାଆ ଦାଣ୍ଡରେ ଠିଆ ହୋଇଥିଲା । କହିଲା—ମଙ୍ଗେଇକି ଖୋଜୁଛୁ କି ବାପ ? ହେଇ ସେଠି ତିନ୍ତୁଳି ଗଛମୂଳେ ମଙ୍ଗେଇ କଣ କରୁଛି ଦେଖିବୁ ଯା’ । ଦୀନୁ ତିନ୍ତୁଳି ଗଛ ମୂଳକୁ ଯାଇ ଦେଖିଲା ଯେ ମଙ୍ଗେଇ ଗୋଟେ ଗୁଡ଼ି ସୂତାକୁ ନଟେଇରେ ଗୁଡ଼ାଇ ଲାଗିଛି । ଦୀନୁକୁ ଦେଖି ଖୁବ୍ ଖୁସି ଗଳାରେ ବାହାଦୁରୀ ଦେଖେଇ କହିଲା—ଦୀନୁ ! ଏ ସୂତାକୁ ଦେଖୁଛୁ । କେନ୍ଦୁଅଠା ବୋଲି ତା’ ଦେହରେ କାଚଗୁଣ୍ଡ ଦେଇ ତିନିଦିନ ଶୁଖାଇଛି ଖରାରେ । କରତ ଭଳିଆ ହେଇଛି ରେ ! ବେକ କଟିଯିବ, ଯଦି କାହା ବେକରେ ଲାଗିଯିବ । ଆଜି ନିଶ୍ଚେ ସେ ଶଳା ଧୂଳି-ପୁରିଆ ଟୋକାଙ୍କ ଗୁଡ଼ିକି କାଟି ଖଣ୍ଡ ଖଣ୍ଡ କରିବି । ସେମାନେ ଗଲା ଶନିବାର ଦିନ ମୋର ତିନିଟା ଗୁଡ଼ିକୁ କାଟି ଛିନ୍ନଛତର କରିଦେଲେ । ରାଗରେ ମୁଁ ପାଚିକରି ରହିଛି । ଯଦି ଯିବୁ, ଆସ ମୋ ସାଙ୍ଗରେ ।

ଦୀନବନ୍ଧୁ ଏ ପ୍ରସ୍ତାବରେ ଖୁବ୍ ଖୁସି ହୋଇଗଲା । ତା’ ମନରୁ ନିରାଶାଭାବ ଦୂର ହୋଇଗଲା । ତାକୁ ଲାଗିଲା—ନାଃ ! ଏ ପୃଥିବୀରେ ଭଲ ପିଲାଙ୍କର ଅଭାବ ନାହିଁ । ପାଠପଢ଼ା ବଦଳରେ ଅନ୍ୟ ମଜା କାମର ବି ଅଭାବ ନାହିଁ । ମଙ୍ଗେଇଟା ପ୍ରକୃତରେ ସେଇସବୁ ପଦନା, ଧୂସା, ପୁନିଆ ହେରିକାଙ୍କଠାରୁ ଢେର ଭଲ ।

ଦୀନବନ୍ଧୁ ରାଜି ହୋଇଗଲା । ସେମାନେ ଯାଇ ଗାଁଠାରୁ ବହୁ ଦୂରରେ ଧୂଳିପୁର ଗାଁ ସୀମାରେ ପହୁଞ୍ଚିଲେ । ଧୂଳିପୁର ଗାଁ ପାଖରେ ଛୋଟ ନଈଟାଏ । ମାତ୍ର ସେଥିରେ ପାଣି ଥାଏ କି ନଥାଏ । କିନ୍ତୁ ନଈର ଗୋଟେ ପଟ ପାହାଡ଼ ଭଳିଆ ବାଲିକୁଦରେ ପୂର୍ଣ୍ଣ । ବନ୍ଧ ତଳକୁ ଝାଉଁବଣ ଆଉ ତଳକୁ ଖାଲ ଢିପ ବାଲିପଡ଼ିଆ । ମଝିରେ ମଝିରେ କଣ୍ଟାବୁଦା ଆଉ ବାବୁଲ ଗଛର ବଣ । ଧୂଳିପୁରିଆ ଟୋକାମାନେ ଗୋଟାଏ ଉଚା ବାଲିକୁଦା ଉପରେ ରୁଣ୍ଡ ହୋଇ ଗୁଡ଼ି ଉଡ଼ାଉଥିଲେ । ସେମାନଙ୍କୁ ଦେଖି ମଙ୍ଗେଇ ଉନ୍ମତ୍ତ ହୋଇ ଉଠିଲା । ସେ ଗୋଟାଏ ଗୁଡ଼ି ଦୀନବନ୍ଧୁ ହାତକୁ ବଢ଼େଇ ଦେଲା । ସୁତା ନଟେଇଟା ବି ବଢ଼େଇ ଦେଲା ଏବଂ ସାଥେ ସାଥେ ଆଉ ଗୁଡ଼ିଟା ନିଜେ ପବନ ମୁହଁରେ ଟେକି ଛାଡ଼ିଦେଇ ନଟେଇଟାକୁ ଖାଂଚି ଲାଗିଲା । ସୁଲୁ ସୁଲୁ ହୋଇ ଦକ୍ଷିଣା ପବନ ବହୁଥାଏ । ସେମାନଙ୍କର ଦୁଇଟାଯାକ ଗୁଡ଼ି

ଆଖି ପିଛୁଳାକେ ହାଂବେଲୀମାଗେ ଉପରକୁ ଉଡ଼ିଗଲେ ଏବଂ ଧୂଳପୁରିଆ ଟୋକାଙ୍କ ଗୁଡ଼ିପାଖେ କିଛି ସମୟ ପରେ ପହଂଚି ଯାଇ ଯୁଦ୍ଧଂଦେହୀ ଭଙ୍ଗୀରେ ଚର୍‌ଚର୍ ହୋଇ ନାଚି ଲାଗିଲେ । ଗୁଡ଼ି ଦୁଇଟାର ଲାଞ୍ଜି ଦି'ଟା ଫରଫର ପବନରେ ଏମିତି ଫାଡୁଫାଡୁ ହେଉଥାଏ ଯେ ମନେ ହେଉଥାଏ, ସତେକି ସେମାନେ ଧୂଳପୁରିଆ ଟୋକାଙ୍କ ଗୁଡ଼ିମାନଙ୍କୁ ଛିଗୁଲଉଛନ୍ତି ! ଧୂଳପୁରିଆ ଟୋକାମାନେ ରାଗରେ ଥରି ଉଠିଲେ । ଶଳା, କେଡ଼େ ସାହସରେ ଆମ ଗାଁ ପଟକୁ ଆସି ଆମ ସାଙ୍ଗରେ ଖୁରୀ ଖାଉଛନ୍ତି ଦେଖ । ଦବା ଶଳାଙ୍କୁ ହାବାଡ଼ କରି । ସେମାନେ ମଧ୍ୟ ଖୁବ୍ ତପର ହୋଇ ଗୁଡ଼ି ନଟେଇମାନଙ୍କରେ ଖାଅମାରି ଏମାନଙ୍କ ଗୁଡ଼ି ଦି'ଟାକୁ କାଟିବେ ବୋଲି ଲାଗି ପଡ଼ିଲେ । ଗ୍ଭଲିଲା ଯୁଦ୍ଧ । ଏଣେ ମଙ୍ଗେଇ ସେଇ ବାଲି ଉପରେ ଆଗକୁ ପଛକୁ ପଲାସି ଯାଉଥାଏ, ଆଉ ଖାଅ ମାରୁଥାଏ । ଧୂଳପୁରିଆଙ୍କର ପ୍ରାୟ ଆଠଟା ଗୁଡ଼ି ଉଡ଼ୁଥାଏ ଆକାଶରେ । ତଥାପି, ମଙ୍ଗେଇକି ଯୁଦ୍ଧ ନିଶା ଲାଗିଯାଇଥାଏ । ସେମାନଙ୍କର ଗୋଟାଏ ଗୁଡ଼ିକୁ ଖସାଇ ଦେଲେ ବି ସେମାନଙ୍କର ଜିତାପଟ ହେବ । ଦୀନବନ୍ଧୁର ଗୁଡ଼ି ଉପରେ ସେତେ ଅଭ୍ୟାସ ନଥିଲା । ତଥାପି ମଙ୍ଗେଇ ତାକୁ ମତାଉଥାଏ । ମାର୍ ମାର୍ ଖାଅ ମାର୍ । ଗୋଟାଏ ହେଲେ ଖସେଇପକା । ଏମିତି ଏ ଗୁଡ଼ି କଟାକଟି ଯୁଦ୍ଧ ଗ୍ଭଲିଲା ପ୍ରାୟ ତିନିଘଣ୍ଟା କାଳ । ଉଭୟ ପଟୁ ଜିଦି ଆହୁ ରାଗ ବଢ଼ି ଯାଇଥାଏ । କେହି କାହାକୁ ଛାଡ଼ୁ ନ ଥାନ୍ତି । କିନ୍ତୁ ଧୂଳପୁରିଆ ଟୋକାଙ୍କ ସଂଖ୍ୟା ଯେମିତି ଥିଲା ଅଧିକା ସେମାନଙ୍କ ଗୁଡ଼ି ସଂଖ୍ୟା ମଧ୍ୟ ସେମିତି ଥିଲା ଅଧିକା । ସେମାନେ ଯାବତ ଅସଭ୍ୟ ଭାଷାରେ ମଧ୍ୟ ମଙ୍ଗେଇ ଓ ଦୀନବନ୍ଧୁକୁ ଗାଳି-ଗୁଲଜ କରୁଥାନ୍ତି । କିଛି ସମୟ ପରେ ହଠାତ୍ ମଙ୍ଗେଇ ତାର କାଚଗୁଣ୍ଡ ଦିଆ ଗୁଡ଼ି ସୂତାରେ ଧୂଳପୁରିଆଙ୍କ ଗୋଟାଏ ଗୁଡ଼ିକୁ ଖାଅମାରି କାଟିଦେଲା । ପରେ ପରେ ଆଉ ଗୋଟିଏ ଗୁଡ଼ି କାଟିଦେଲା । ସେମାନଙ୍କର ନାଲି ଓ ନେଳୀ ରଙ୍ଗର ଗୁଡ଼ିଦୁଇଟି ଗୁଳିମାଡ଼ଖିଆ ରକ୍ତାକ୍ତ ଚଢ଼େଇ ପରି ଥରି ଥରି ତଳକୁ ଖସି ଆସି ବାଲି ଉପରେ କଚାଡ଼ି ପଡ଼ିଲେ । ଏ ଘଟଣାରେ ଧୂଳପୁରିଆ ଟୋକାମାନେ ଖୁବ୍ ରାଗିଗଲେ ଏବଂ ପାଞ୍ଚ ଛଅଜଣ ଟୋକା ମଙ୍ଗେଇ ଓ ଦୀନବନ୍ଧୁକୁ ଧରି ପିଟିବାକୁ ଧାଇଁ ଆସିଲେ । ଏହା ଦେଖି ମଙ୍ଗେଇ ତାକ

ଛାଡ଼ିଲ—ଦୀନୁ ! ଦଉଡ଼ି ଆସ—ଦଉଡ଼ି ଆସ—ପଳାଇ ଗଲ । ସେ ଶଳା ଧୂଳପୁରିଆ ଟୋକାଙ୍କ ହାତରେ ପଡ଼ିଲେ ଆଉ ରକ୍ଷା ନାହିଁ । ମଙ୍ଗେଇ ଆଗେ ଆଗେ ଦଉଡୁଥାଏ ଗାଁ ଆଡ଼କୁ ଏବଂ ଦୀନବନ୍ଧୁ ତା' ପଛେ ପଛେ ଦଉଡୁଥାଏ । ଧୂଳପୁରିଆ ଟୋକାମାନେ ପ୍ରାୟ ତାଙ୍କ ପିଛା ଧରି ସାରିଥାନ୍ତି । ମଙ୍ଗେଇ ଥିଲ ଦଉଡ଼ି ପଳାଇବାର ଓସ୍ତାଦ । ସେ ବାଲିହରିଣ ପରି ଶୂନ୍ୟରେ ଖେପା ମାରି କୁଆଡ଼େ ଗୋଟେ ବୁଦା ମୂଳରେ ଲୁଚି ଅଦୃଶ୍ୟ ହୋଇଗଲ । ମାତ୍ର ଦୀନବନ୍ଧୁ ପ୍ରାଣ ବିକଳରେ ସିଧା ଗାଁ ଆଡ଼କୁ ଦଉଡୁଥାଏ । ବାଲିରେ ତା' ଗୋଡ଼ ଗଳି ପଡ଼ୁଥାଏ । ସେ ଅଣନିଃଶ୍ୱାସୀ ହୋଇଯାଉଥାଏ । ଅଳ୍ପକ୍ଷଣ ଭିତରେ ଧୂଳପୁରିଆ ଟୋକାଏ ତାକୁ 'ଘେରିଗଲେ ଏବଂ ତା' ଗାଲ ଆଉ ପିଠିରେ ବିଧା ଗ୍ରପୁଡ଼ା ବସାଇ ଦେଇଗଲେ । ଦୀନବନ୍ଧୁ ପ୍ରଥମେ "ମାର ନାହିଁ"—"ମାର ନାହିଁ" ବୋଲି ଚିହ୍ନାର ଛାଡୁଥାଏ । ମାତ୍ର ସେମାନେ ମାଡ଼ ମାରି ଲଗିଥାନ୍ତି ଓ ଯାବତୀୟ ଅସଭ୍ୟ ଭଷାରେ ଗାଳିଗୁଲ୍ଜ କରୁଥାନ୍ତି । କିଛି ସମୟ ଏମିତି ମାଡ଼ଗାଳି ଦେଇସାରି ଧୂଳପୁରିଆ ଟୋକାମାନେ ତାକୁ ସେଇ ବାଲି ଉପରେ ପକାଇ ଦେଇ କିଏ କୁଆଡ଼େ ଛୁଭକଲେ ।

କିଛି ସମୟ ପାଇଁ ଦୀନବନ୍ଧୁ ସେମିତି ସେଇ ବାଲି ଉପରେ ପଡ଼ି ରହିଲ ଓ କାନ୍ଦି ଲଗିଲ । ତା'ର ଗାଲ ଫୁଲି ଯାଇଥାଏ । ଦାନ୍ତମୂଳରୁ ରକ୍ତ ବାହାରୁ ଥାଏ । ସେ ଧଇଁ ସଇଁ ହୋଇ ଯାଉଥାଏ । ସେତେବେଳକୁ ସୂର୍ଯ୍ୟ ବୁଡ଼ି ନ ଥାନ୍ତି । ମାତ୍ର ଦୂର ବଣ ଆଡ଼ୁଆଳରେ ଲୁଚି ଯାଇଥାନ୍ତି । ଗ୍ରରିଆଡ଼ ଶୂନ୍‌ଶାନ୍ ଲଗୁଥାଏ । ଦୀନବନ୍ଧୁ ଉଠି ଠିଆ ହେଲ ଏବଂ ଧୀରେ ଧୀରେ ଗାଁ ଅଭିମୁଖେ ବାହାରିଲା । ଗାଁରେ ପହଁଚିଲ ବେଳକୁ ପ୍ରାୟ ସନ୍ଧ୍ୟା ହୋଇ ଗଲଣି । ଇସ୍କୁଲ ମଧ୍ୟ କେତେବେଳୁ ଛୁଟୀ ହୋଇଗଲଣି । ପିଲମାନେ ବହି ବସ୍ତାନୀ ଧରି ଖୁସିମନରେ ଗପସପ କରି ଘରକୁ ଫେରୁଥାନ୍ତି । ଦୀନବନ୍ଧୁ ତଳକୁ ମୁହଁ ପୋତି ଆସୁଥାଏ ତା'ମନ ଭିତରେ କୌଣସି ଚିନ୍ତା ନ ଥାଏ । ସେ ସତେକି କାଠ ପାଲଟି ଯାଇଛି ! ହଠାତ୍ ତା'ର ଦୃଷ୍ଟି ପଡ଼ିଲ ତାକୁ ବାଟଭର୍ତ୍ତି ଗୋରୁପଲ୍ଟିଏ ଆଗେଇ ଯାଉଛି ଏବଂ ସବାଶେଷରେ ପଦନା ବାଡ଼ିଟିଏ ଧରି ହସି ହସି ଗ୍ରଲିଛି । ଆଉ କିଛିବାଟ ଆଗେଇ ଗଲ ଦୀନବନ୍ଧୁ । ଏଥରକ ସେ ଗ୍ରରିଆଡ଼କୁ ଗ୍ରହିଁ ଗ୍ରହିଁ ଗ୍ରଲିଥାଏ । ସେ ଦେଖିଲ ଯେ ଧୂସା ତେଣୁ ମାଡ଼ି ଆସୁଛି । ତା' କାନ୍ଧରେ ମାଛ ଖାଲେଇଟି ଝୁଲୁଛି । ଆଉ ସେ

ବନସୀଖଡ଼ା ଗୁଡ଼ିଏ ଧରି ସୁସୁରି ବଜାଇ ବଜା ଫଲ୍ଗୁସୀ ଆସୁଛି ତା'
ଘରଆଡ଼େ । ଦୀନବନ୍ଧୁ ତାକୁ କିଛି କହିଁଲ ନାହିଁ । କାହାକୁ କିଛି କହିଲା
ନାହିଁ । ଗମ୍ଭୀର ହୋଇ ଗାଁ ମଝିରେ ମହାଦେବଙ୍କ ଚଉତରା ପାଖକୁ ଗ୍ଲଲିଗଲା ।
ସେ ଚଉତରା ଗ୍ଲରିପଟେ ନାଲି ଆଉ ହଳଦିଆ କନିଅର ଫୁଲର ବଣ ।
ଦୀନବନ୍ଧୁ ସେଇ ଚଉତରା ଉପରକୁ ଉଠି ଗାଁ ଦାଣ୍ଡକୁ ଅନେଇଲା । ତା'
ଆଖି ପଡ଼ିଲା ଗୁନିଆ ଉପରେ । ଗୁନିଆ ବଜାରରୁ ଫେରୁଥାଏ । ତା' ମୁଣ୍ଡରେ
ଶୂନ୍ୟଡାଲାଟି ମୁଣ୍ଡେଇଥାଏ । ତାର ସବୁତକ ବୁଟ ବାଦାମ ଭଜା ବିକ୍ରୀ
ହୋଇ ଯାଇଛି । ପଇସାତକ ନେଇ ସେ ତାର ମାଆକୁ ଦେବ । ତା' ମାଆ
ଭରୀ ଖୁସି ହୋଇଯିବ । ...ସମସ୍ତେ ସେମାନେ ଦୀନବନ୍ଧୁକୁ ଦେଖିଲେ ।
ମାତ୍ର କାହା ସାଙ୍ଗେ କଥାବାର୍ତ୍ତା କରିବାକୁ ତାକୁ ଲଜ ଲଗୁଥାଏ । ଏପରିକି
ମହାଦେବଙ୍କ ବୁଢ଼ା ପୂଜାରୀକି ଦେଖି ମଧ୍ୟ ଦୀନବନ୍ଧୁ ମୁହଁ ବୁଲେଇ ଦେଲା ।
ତା' ମନେ ପଡ଼ିଲା—ଗଲାରାତିରେ ସେ ଏଇ ଧୂସା, ପଦନା, ଗୁନିଆ ଆଉ
ମଙ୍ଗେଇମାନଙ୍କୁ ଧରି ହାଟତୋଟାରେ ରାତି ଅନିଦ୍ରା ହୋଇ ମେଳନ ଦେଖି-
ଥିଲା । ସେମାନଙ୍କୁ ଆପଣା ହାତରୁ ପଇସା ଖର୍ଚ୍ଚ କରି ପକୋଡ଼ୀ ଆଉ
ପିଆଜି କିଣି ଖାଇବାକୁ ଦେଇଥିଲା । ସେମାନେ ସମସ୍ତେ କାଲି ରାତିରେ
ଆପଣାର ସାଙ୍ଗ ବୋଲି ମନେ ହେଉଥିଲେ । ମାତ୍ର ଆଜି ସକାଳେ ସେମାନେ
ସମସ୍ତେ ସକାଳୁ ଉଠି ଯେଝା କାମରେ ଗ୍ଲଲିଗଲେ । ତା' ମୁହଁ ପର୍ଯ୍ୟନ୍ତ
ଗ୍ଲହିଁଲେ ନାହିଁ । ଆଉ ସେଇ ପାଜୀ ମଙ୍ଗେଇଟା ମଧ୍ୟ । ତାକୁ ଡାକି ନେଇ
ଗୁଡ଼ି ଉଡ଼ାଇବାକୁ ଗଲା । ତା'ରି ଶିକ୍ଷାରେ ପଡ଼ି ସେ ଧୂଳପୁରିଆ ଟୋକାଙ୍କ
ଗୁଡ଼ିକୁ କାଟିଦେଲା । ଅଥଚ ସେମାନେ ଯେତେବେଳେ ତାକୁ ଏକୁଟିଆ ପାଇ
ବାଲିକୁଦିଆରେ ବିଧା ଚଟକଣାରେ ପୋତି ପକାଉଥିଲେ, ସେତେବେଳେ
ସେ ମଙ୍ଗେଇଟା ତାକୁ ସେଠି ଛାଡ଼ିଦେଇ କୁଆଡ଼େ ଯାଇ ଲୁଚିଲା ! ଛି-ଛି-ଛି ।
ଏମାନେ ସାଙ୍ଗ ? ଏମାନଙ୍କୁ ସାଙ୍ଗ କୁହାଯାଏ ? ଏମାନଙ୍କ ସାଙ୍ଗରେ ଆଉ
ମୁହୂର୍ତ୍ତଟାଏ ମଧ୍ୟ ସେ ମିଶିବ ନାହିଁ ।

ଦୀନବନ୍ଧୁର ମନରେ ସାଙ୍ଗେ ସାଙ୍ଗେ ଆଉ ଗୋଟିଏ ଭାବର ଉଦୟ ହେଲା ।
ତାକୁ ଲାଗିଲା—ସେ କାହିଁକି ମିଛେ ମିଛେ ତାର ସାଙ୍ଗମାନଙ୍କୁ ଘୃଣା କରୁଛି ?
କାହିଁକି ସେ ସେମାନଙ୍କ ଉପରେ ଏତେ ବିରକ୍ତ ହେଉଛି ? ସେମାନଙ୍କର

ପ୍ରକୃତରେ ଦୋଷ କଣ ? ସେମାନେ କାଲି ରାତି ସାର ଅନିଦ୍ରା ହୋଇ ମେଳନ ଦେଖିଛନ୍ତି । ଅଥଚ ଆଜି ସକାଳୁ ଉଠି ଯେଝା କାମରେ ଯେ ଲାଗିଛନ୍ତି । ସେମାନେ ଗରୀବ ଘରର ପିଲା । ନ ଖଟିଲେ, ଦି'ପଇସା ରୋଜଗାର ନ କଲେ, ସେମାନେ ଚଳିବେ କେମିତି ? ଖାଇବେ କଣ ? ଆଜି ଦିନସାରା ଖଟି ଖଟି ଯାହା ରୋଜଗାର କଲେ ସେମାନେ ସବୁ ଆଣି ସେମାନଙ୍କର ମାଆମାନଙ୍କୁ ଆଣି ଦେବେ । ମାଆମାନଙ୍କୁ ଖାଇବାକୁ ମାଗିବେ । ମାଆମାନେ ଖୁବ୍ ଖୁସି ହୋଇ ସେମାନଙ୍କୁ ଖାଇବାକୁ ଦେବେ । କିନ୍ତୁ ସେ ନିଜେ ? ଛିଃ...ଛିଃ ! ସେ ନିଜେ କୋଉ ମୁହଁରେ ଆଜି ତା' ମା'କୁ ଖାଇବାକୁ ମାଗିବ ? ସେ ଭଲା ଆଜି ଦିନଟାଯାକ କଣ କରିଛି ? ଆଜି ଦିନଟା ତାର ବୃଥା ଗଲାନି କି ? ସେ ଆଜି ଇସ୍କୁଲକୁ ନ ଯାଇ, ମଙ୍ଗେଇ ସାଙ୍ଗରେ ପଡ଼ି ଧୂଳପୁରିଆ ଟୋକାଙ୍କ ହାତରୁ ବୃଥାଟାରେ ମାଡ଼ ଖାଇଲା—ଅପମାନ ପାଇଲା । ଛିଃ-ଛିଃ ! ଦୀନବନ୍ଧୁର ମନ ନିଜ ଉପରେ ତିକ୍ତତାରେ ଭରିଗଲା ଏବଂ ମଙ୍ଗେଇ ପ୍ରତି ମଧ୍ୟ ସେ ବିରକ୍ତ ହୋଇ ଉଠିଲା । ଏଇ ଟୋକାଟା ମଙ୍ଗେଇ । ବିଶେ ଗୋଟେ ଅସୁର ଢ଼ଳିଆ । କିଛି କାମ କରେ ନାହିଁ । ପିଲାଦିନୁଁ ବାପ ମରିଛି । ବିଧବା ମାଆ ଧାନକୁଟି ଚୂଡ଼ା କୁଟି ଯାହା ପାଏ, ସେଇଥିରେ ଚଳନ୍ତି । ମଙ୍ଗେଇ ପୁଣି ତା' ମାଆକୁ ପଇସା ମାଗି ଯଦି ନପାଏ, ତା'ହେଲେ ଗୋଟେ ବାଡ଼ି ଧରି ମାଆକୁ ପିଟେ । ମାଆଟା କାନ୍ଦି କାନ୍ଦି ଯା ତା' ପାଖରେ କହେ । କିନ୍ତୁ ଗାଁରେ କେହି ମଙ୍ଗେଇକି କିଛି କହନ୍ତି ନାହିଁ । ତାକୁ ସମସ୍ତେ ଡରନ୍ତି । ତା' ପାଟିରେ ବାଇଶ ନାହିଁ । କଣ ବୋଲି କଣ କହିବ । କାହାକୁ ବି ମାରି ଗୋଡ଼େଇବ । କିଛି କାମ କରେ ନାହିଁ । ପାଠ ତ ପଢ଼ିଲା ନାହିଁ । ଏଇ ସବୁ ଦୁଷ୍ଟାମୀରେ ତାର ଦିନ କଟେ । ଛିଃ ଛିଃ—ସେ ଶେଷରେ ଏଇ ମଙ୍ଗେଇଟା ସାଙ୍ଗରେ ପଡ଼ି ଆଜି ଧୂଳପୁରିଆ ଟୋକାଙ୍କ ହାତରୁ ମାଡ଼ ଖାଇଲା ? ଦୀନବନ୍ଧୁ ତା'ର ଗାଲରେ ହାତ ମାରିଲା । ଗାଲଟା ସାମାନ୍ୟ ଫୁଲିଛି । ଆଉ ଦରଜ ମଧ୍ୟ ହୋଇଛି । ଦାନ୍ତମୂଳରୁ ରକ୍ତ ବହିବା ବନ୍ଦ ହୋଇଗଲାଣି । କିନ୍ତୁ ପାଟିଟା ବେଶୀ ଦରଜ ଲାଗୁଛି । ତାକୁ ପୁଣି ଥରେ କାନ୍ଦ ଲାଗିଲା । ଇସ୍, ସେ ଭଲା ଆଜି ଘରକୁ ଫେରିବ କୋଉ ମୁହଁରେ ? କୁଆଡ଼େ ଯାଇଥିଲା ବୋଲି ମାଆ ପଚାରିଲେ, ସେ ଭଲା କଣ ଉତ୍ତର ଦେବ ? ସେ କଅଣ ଆଜିର ସମସ୍ତ ଘଟଣା ମାଆକୁ କହି

ପାରିବ ? ତା' ନ ହେଲେ, ସେ କଣ ମାଆକୁ ମିଛ କହି ଭୁଲାଇ ଦେବ ? ଇସ୍ ! ତା'ର ମାଆଟା କେଡ଼େ ଭଲ ! ଏ ଗାଁରେ ଯେତେ ମାଆ ଅଛନ୍ତି, ସମସ୍ତଙ୍କଠାରୁ ତା' ମାଆ ଭଲ । ତା' ପାଟିରୁ ଦିନେହେଲେ କାହାପ୍ରତି କର୍କଶ କଥା ବାହାରେ ନାହିଁ । ଭିଖାରୀଟିଏ ହେଲେ ବି ମାଆ ତାକୁ କେଡ଼େ କଅଁଳ କଥା କହେ ! କାହାକୁ ନିରାଶରେ ଦାଣ୍ଡରୁ ଫେରାଇ ଦେବ ନାହିଁ । ସବୁବେଳେ ଠାକୁର ଦେବତାଙ୍କୁ ଡ଼ାକୁଥିବ ତା' ପିଲାଙ୍କ ପାଇଁ । ବିଶେଷତଃ, ତାକୁ ପାଠ ଆସେ ନାହିଁ ବୋଲି, ତା' ହାତରେ ବିଦ୍ୟା ବୁଦ୍ଧିର ରେଖା ନାହିଁ ବୋଲି, ସେ ଗଣେଶଙ୍କ ପାଖରେ କେତେ ପୂଜା ନ ଦିଏ । ସବୁଦିନେ ସଞ୍ଜବତୀଟିଏ ଜାଳିବ ସେ ଆସି ଏଇ ମନ୍ଦିରରେ ଗଣେଶଙ୍କ ପାଖରେ । ଗୁଣୁଗୁଣୁ କରି ଗଣେଶଙ୍କ ପାଖରେ ଗୁହାରୀ କରୁଥିବ—ହେ ଗଣେଶ ମାହାପ୍ରଭୁ ! ମୋ ଦୀନୁକୁ ସଦ୍‌ବୁଦ୍ଧି ଦିଅ, ବିଦ୍ୟା ଦିଅ । ତା' ମନ ପଢ଼ାରେ ଲାଗୁ । ସେ କୋଉଁଠି ଫେଲ୍ ନ ହେଉ ! ...ଗୁଣୁଗୁଣୁ କରି ଏଇଆ କହୁଥିବ ଆଉ ଗଣେଶଙ୍କ ପାଖରେ ତୁ ତୁ କରି ମୁଣ୍ଡ ବାଡ଼ାଉଥିବ । ଆଃ ! ଦୀନବନ୍ଧୁର ମନ ତା' ମାଆ ପ୍ରତି କାରୁଣ୍ୟରେ ଭରିଗଲା । ନାଃ ! ସେ ମାଆ ଆଗରେ କେବେ ବି ମିଛ କହିବ ନାହିଁ । ଘରକୁ ଫେରିଯାଇ, ସେ ଆଜି ଦିନଟାଯାକ ଯାହା ଘଟିଛି—ସବୁକଥା ମାଆକୁ ସଫା ସଫା କହିଦେବ । ଅବଶ୍ୟ ମାଆ ତା' ମୁହଁରୁ ସବୁ ଶୁଣି, ତାକୁ ଗାଳିଦେବ ନାହିଁ । ବଡ଼ଭାଇ, କି ନାନୀ, କି ବାପା କାହା ଆଗେ କିଛି କହିବ ନାହିଁ । କିନ୍ତୁ ନିଜେ ବହୁତ ଗୁଡ଼ାଏ କାନ୍ଦିବ । ମାଆକୁ କାନ୍ଦିବାର ଦେଖିଲେ ତା' ଛାତି କରତି ହୋଇଯାଏ । କିନ୍ତୁ ଉପାୟ ବା କଣ ? ତା' ହାତରେ ତ ବିଦ୍ୟା କି ବୁଦ୍ଧିରେଖା ନାହିଁ । ତାକୁ ତ ପାଠ ଆସୁନାହିଁ । ତାର ତ କୋଉ ପାଠରେ ବି ମନ ଲାଗୁନାହିଁ । ସେ ଏବେ କଣ କରିବ ଯେ !

ସାମାନ୍ୟ ରାତି ହୋଇ ଆସିଥିଲା । ମନ୍ଦିର ଅଗଣାରେ ପାତଳା ଅନ୍ଧାର ଭିତରେ ଗାଁର ସ୍ତ୍ରୀଲୋକମାନେ ସଞ୍ଜ ବା ଦୀପ ଲଗାଇ ମହାଦେବଙ୍କ ପାଖରେ ମୁଣ୍ଡିଆ ମାରୁଛନ୍ତି । କେହି କେହି ବାସୁଆ ବଳଦ ଉପରେ ଟଙ୍ଗା ହୋଇଥିବା ଘଣ୍ଟିଟାକୁ ବଜାଇ ଦେଇ ହେ ଶିବ ଶମ୍ଭୋ ବୋଲି ରଡ଼ି

ଛାଡ଼ୁଛନ୍ତି । ସନ୍ଧ୍ୟା ଆଳତୀ ଦେଖିବା ପାଇଁ ସ୍ତ୍ରୀ, ପୁରୁଷ, ପିଲା ସମସ୍ତେ ଆସି ରୁଣ୍ଡ ହେଲେଣି । ଦୀନବନ୍ଧୁର ଛାତି ଭିତରେ କୋହ ଉପରେ କୋହ ଲଦି ହୋଇଗଲା । ସେ ଆଜି ଗଣେଶ ମାହାପ୍ରୁଙ୍କ ପାଖରେ ସବୁକଥା ଖୋଲାଖୋଲି କହିଦବ ଓ ଶେଷଥର ପାଇଁ ସବୁ ଫଇସଲା କରିଦେବ । ତା' ନ ହେଲେ, ସେ ଆଜି ରାତିରେ ଗାଁ ଛାଡ଼ି କୁଆଡ଼େ ପଳେଇବ । କଟକ କି ଭୁବନେଶ୍ୱର । ସେଠି ଯାଇ କୋଉ ହୋଟେଲ ଫୋଟେଲରେ ବାସନ ମାଜି ରହିବ । ତା'ରି ଭଳିଆ କେତେ ଟୋକା ହୋଟେଲରେ ବାସନ ଧୋଉଥିବାର ସେ ଭୁବନେଶ୍ୱରରେ ଦେଖିଛି । ଏଠୁ ଚାଲିଗଲେ, ଆଉ ମାଆର କାନ୍ଦ ଦେଖିବାକୁ ପଡ଼ିବ ନାହିଁ, କି ପାଠ ପଢ଼ାର ଦାୟିତ୍ୱ ବି ରହିବ ନାହିଁ । ତେବେ ତା' ଆଗରୁ ଶେଷଥର ପାଇଁ ସେ ଗଣେଶ ମାହାପ୍ରୁଙ୍କୁ ପଚାରି ଦେବ ।

ଏଇଆ ଭବୁ ଭବୁ ସେ ଚଉତରା ଉପରୁ ଓହ୍ଲାଇ ସିଧା ବାଁ ପଟେ ଗଣେଶଙ୍କ ମୂର୍ତ୍ତିପାଖକୁ ଚାଲିଗଲା । ଅନ୍ଧାର ଭିତରେ ଲୋକେ ଯିବା ଆସିବା କରୁଛନ୍ତି । କିନ୍ତୁ କେହି କାହା ମୁହଁ ଦେଖିପାରୁ ନାହାନ୍ତି । ଦୀନବନ୍ଧୁ ଗଣେଶଙ୍କ ପାଖରେ ପହୁଞ୍ଚି ତାଙ୍କ ପାଦ ଧରି ମୁଣ୍ଡିଆ ମାରୁ ମାରୁ କାନ୍ଦି ଉଠିଲା । "ହେ ଗଣେଶ ମାହାପ୍ରୁ ! ଏଇଥର ପାଇଁ ମତେ ଜବାବ ଦିଅ । ଏଇଥର ଶେଷଥର । ମୋ ହାତରେ ବିଦ୍ୟା କି ବୁଦ୍ଧିରେଖା ନାହିଁ । ମୋର ପାଠରେ ମନ ଲାଗୁନାହିଁ । ତୁମେ କୁଆଡ଼େ ବିଦ୍ୟା ଆଉ ବୁଦ୍ଧିର ଦେବତା ପରା ? ତୁମ ପେଟରେ ତୁମେ ଯେତେ ବୁଦ୍ଧି ରଖିଛ—ମତେ ସେଥିରୁ କିଛି ଦେଇ ପାରିବ ? ଦେବ ଯଦି ବର୍ତ୍ତମାନ ଦିଅ । ତା' ନ ହେଲେ, ଜାଣିଥାଅ ମୁଁ ଆଉ ଏ ଗାଁରେ ରହିବି ନାହିଁ । ସହରକୁ ଚାଲିଯିବି । ଯୋଉଠି ବିଦ୍ୟା ଆଉ ବୁଦ୍ଧି ନ ଥିବା ପିଲାମାନେ ବାସନ ମାଜି ରହୁଛନ୍ତି, ସେଇମାନଙ୍କ ସାଙ୍ଗରେ ରହିବି । ହେ ଗଣେଶ ମାହାପ୍ରୁ ! ଏଇଥର ମୋର ଶେଷ ଥର—ଶେଷ ପ୍ରାର୍ଥନା । ଭବ ନାହିଁ ଯେ ଆଉ ଥରେ ମୁଁ ତୁମ ପାଖକୁ ଏମିତି କହି ମୁଣ୍ଡିଆ ମାରିବାକୁ ଆସିବି ।

ଦୀନବନ୍ଧୁର ଛାତିରୁ କୋହ ଉଠୁଥାଏ । ତା' ଆଖିରୁ ଧାର ଧାର ହୋଇ ଲୁହ ବହି ଯାଉଥାଏ । ହଠାତ୍ ଗଣେଶଙ୍କ ଥୋଡ ପାହାରରେ ଗୁଞ୍ଜା

ହୋଇଥିବା ମନ୍ଦାର ଫୁଲଟିଏ ଦୀନବନ୍ଧୁର ମୁଣ୍ଡ ଉପରେ ଥପ୍‌କିନା ଖସି ପଡ଼ିଲା । କଣଟାଏ ପଡ଼ିଲା ବୋଲି ଦୀନବନ୍ଧୁ ଗଣେଶଙ୍କ ପାଦ ଉପରୁ ମୁଣ୍ଡ ଉଠାଇ ଦେଖିଲାବେଳକୁ ତା' ମାଆ ସଞ୍ଜବତୀଟିଏ ଧରି ତା' ପଛପଟେ ଠିଆ ହୋଇଛି । ମାଆକୁ ଦେଖିବାମାତ୍ରେ ଦୀନବନ୍ଧୁ ତାର ଅଣ୍ଟାକୁ କୁଣ୍ଢାଇ ଧରି କାନ୍ଦି ଉଠିଲା—ବୋଉ ! ବୋଉ ଲୋ !

ସାଙ୍ଗେ ସାଙ୍ଗେ ଗଣେଶଙ୍କ ମୁଣ୍ଡ ଉପରୁ ଆଉ ଗୋଟିଏ ମନ୍ଦାର ଫୁଲ ଥପ୍‌କିନା ତଳେ ଖସିପଡ଼ିଲା ।

ଦୀନବନ୍ଧୁର ମାଆ ସଞ୍ଜବତୀଟି ଗଣେଶଙ୍କ ପାଖରେ ଥୋଇ ଦେଇ, ଦୀନୁକୁ କୁଣ୍ଢାଇ ଧରିଲେ । ତା'ପରେ କାନ୍ଦି କାନ୍ଦି ଗଣେଶଙ୍କ ପାଖରେ ମୁଣ୍ଡ ବାଡ଼େଇ କାନ୍ଦୁଣୁ ମାନ୍ଦୁଣୁ ଗଳାରେ କହି ଚାଲିଲେ—

"ହେ ଗଣେଶ ମାହାପ୍ରୁ ! କଅଣ ଆଉ ତୁମ୍ଭକୁ କହିବି ? ତୁମକୁ ଭଲା କଅଣ ଅଗୋଚର ଅଛି ? ମୋ ଦୀନୁ ବାଇଆ ମୁଣ୍ଡରେ ବୁଦ୍ଧି ବିଦ୍ୟା ଦିଅ ।

ଛଳ ଛଳ ଆଖିରେ ଦୀନୁ ଠିଆ ହୋଇଥାଏ । ଗଣେଶଙ୍କ ଆଡ଼କୁ ଏକାଗ୍ର ହୋଇ ଚାହିଁ ରହିଥାଏ । ସେହି ଅନ୍ଧାର ଭିତରେ ମିଂଜିମିଂକି ସଞ୍ଜ ଆଲୁଅରେ, ତାକୁ ଲାଗିଲା ସତେକି ଗଣେଶଙ୍କ ଥୋଡ଼ପାହାରଟା ତା ଆଡ଼କୁ ଲମ୍ବି ଆସୁଛି—ଆଉ ତାର ମୁଣ୍ଡକୁ ସ୍ପର୍ଶ କରୁଛି । ଦୀନୁ ମୁଣ୍ଡ ନୁଆଇଁ ଦେଲା । ତା' ମୁଣ୍ଡ ଭିତରେ ଆଉ କୌଣସି ଚିନ୍ତା ନ ଥାଏ, ଭୟ ନ ଥାଏ । ନୈରାଶ୍ୟ ବି ନ ଥାଏ । ସେ କେବଳ ନିଜ ମୁଣ୍ଡ ଉପରେ ଗଣେଶଙ୍କ ଥୋଡ଼ପାହାରର କୋମଳ ଶୀତଳ କଲ୍ୟାଣମୟ ସ୍ପର୍ଶ ଅନୁଭବ କରୁଥାଏ । ତାର ଫାଙ୍କା ମୁଣ୍ଡ ସତେକି କୋଉଥିରେ ପୁରି ଉଠୁଥାଏ । ସତେକି ତା' ଭିତରେ କୋଉ ଗୋଟାଏ ଫୁଲ ଧୀରେ ଧୀରେ ଫୁଟି ଉଠୁଥାଏ—ଗୋଟି ଗୋଟି ହୋଇ ପାଖୁଡ଼ାମାନ ମେଲି ଯାଉଥାନ୍ତି । ତାକୁ ଭରି ଭରି ଲାଗୁଥାଏ । ଉତ୍‌ଫୁଲ୍ଲ ବି ଲାଗୁଥାଏ । ସତେ କି ସେ ଏଇ ମୂହୂର୍ତ୍ତରେ ବଡ଼ ହୋଇଯାଉଛି । ତା' ଆଖି ଆଗରେ ସବୁକିଛି ଖୋଲି ଯାଉଛି । ସେସବୁ କଥା ଦେଖି ପାରୁଛି, ଜାଣି ପାରୁଛି । ତାକୁ ଖୁବ୍ ଖୁସୀ ଲାଗିଲା । ହସ ମଧ୍ୟ ଲାଗିଲା । ବୋଉ ସେମିତି

ଗଣେଶଙ୍କ ପାଦ ତଳେ ମୁଣ୍ଡ ବାଡ଼େଇ କାନ୍ଦୁଣୁମାନ୍ଦୁଣୁ ହୋଇ କହି ଗ୍ଲଲିଥାଏ—ହେ ଗଣେଶ ମାହାପ୍ରୁ । ମୋ ଦୀନୁ ମୁଣ୍ଡରେ ବୁଦ୍ଧି ଦିଅ—ବିଦ୍ୟା ଦିଅ ।

ଦୀନୁକୁ ଏତେ ନିଶ୍ଚିନ୍ତ ଲଗିଲ ଯେ ସେ ଭବିଲ—ଗଣେଶ ଏଣିକି ସବୁବେଳେ ତା' ସାଙ୍ଗେ ସାଙ୍ଗେ ରହିବେ । ସେ ମଧ୍ୟ ତାଙ୍କୁ ଆଉ ପାଖରୁ ଦଣ୍ଡେ ବି ଛାଡ଼ିବ ନାହିଁ । ଗଣେଶ ସତେ କି ତାର ସାଙ୍ଗ । ଏହି ଚମତ୍କାର ସାଙ୍ଗଟି ସାଙ୍ଗେ ଆଜି ପର୍ଯ୍ୟନ୍ତ ତାର ପରିଚୟ ହୋଇ ନ ଥିଲ । ସତେ କି ବର୍ତ୍ତମାନହିଁ ସେ ପରିଚୟ ହୋଇଗଲ ! ଘନିଷ୍ଠତା ଆସିଗଲ । ଏଣିକି ସେ ଗଣେଶଙ୍କୁ ତା' ସାଙ୍ଗରେ ଧରି ତାଙ୍କ ନିଜ ଘରକୁ ଖୁସି ମନରେ, ନିଶ୍ଚିନ୍ତ ମନରେ ଗ୍ଲଲିଯାଇ ପାରିବ । ଖାଲି ତାଙ୍କ ନିଜ ଘରକୁ ନୁହେଁ—ସେ ତାଙ୍କୁ ସାଙ୍ଗରେ ଧରି ସ୍କୁଲକୁ ବି ଯାଇପାରିବ, ଖେଳିବାକୁ ମଧ୍ୟ ଯାଇପାରିବ ।

ଦୀନବନ୍ଧୁର ଆଖିକୁ ଗଣେଶ ଖୁବ୍ ସୁନ୍ଦର ମଧ୍ୟ ଦେଖାଗଲେ । ତାକୁ ମନେ ହେଲ ଗଣେଶ ଜଣେ ଦେବତା ହୋଇ ପାରନ୍ତି—କିନ୍ତୁ ଆଜିଠାରୁ ସେ ଜାଣ ତାର ପ୍ରକୃତ ସାଙ୍ଗ ହେଲେ । ଏଭଳି ଜଣେ ବଢ଼ିଆ ସାଙ୍ଗ ପ୍ରକୃତରେ ତା'ର ନ ଥିଲେ । ଏ ସାଙ୍ଗ କେବେ ବି ତାକୁ ଛାଡ଼ି ଗ୍ଲଲିଯିବେ ନାହିଁ । ମାନସାଙ୍କ ନ ଆସିଲେ ଏ ମୁଣ୍ଡ ଭିତରେ ଥାଇ କହିଦେବେ । ଭୂଗୋଳ ନ ଆସିଲେ ସେ ବତେଇ ଦେବେ । ବିପଦ ଆପଦରେ ବି ପାଖ ଛାଡ଼ିବେ ନାହିଁ । ଏ ପ୍ରକୃତରେ ଖେଳର ସାଥୀ—ପାଠର ସାଥୀ—ଆଉ ବିପଦର ସାଥୀ ।

ଦୀନବନ୍ଧୁ ମାଆ ପିଠିରେ ହାତ ରଖିଲ । ଗ୍ଲଲ୍ ବୋଉ ! ଆଉ କିଛି ଚିନ୍ତା ନାହିଁ, ଗ୍ଲଲ୍ ।

ଏତିକିବେଳେ ମହାଦେବଙ୍କ ପାଖରେ ସନ୍ଧ୍ୟାଳତୀର ଘଣ୍ଟଘଣ୍ଟା, ପଖୌଜ ଓ କାହାଳୀ ବାଜି ଉଠିଲ । ମାଆ ପୁଅ ଦୁହେଁ ହାତ ଧରାଧରି ହୋଇ ସେଠିକି ଗ୍ଲଲି ଆସିଲେ । ଗାଁର ବହୁଲୋକ ଜମା ହୋଇ ଆଳତୀ ଦେଖୁଥାନ୍ତି । ସେମାନେ ମଧ୍ୟ ହାତଯୋଡ଼ି ଆଳତୀ ଦର୍ଶନ କଲେ । ମନ୍ଦିର ଅଧା କାନ୍ଥ ଉପରେ ଜଳୁଥିବା ଦୀପମାନଙ୍କ କ୍ଷୀଣ ଆଲୁଅରେ ଗ୍ଲରିଆଡ଼ ଅସ୍ପଷ୍ଟ

ହୋଇଥାଏ । ସେଇ ଆଲୁଅରେ ଦୀନବନ୍ଧୁ ଆପଣାର ଡାହାଣ ହାତର ପାପୁଲିଟିକୁ ନିରେଖି ନିରେଖି ଦେଖୁଥାଏ । ଗଣେଶଙ୍କ ଆଶୀର୍ବାଦରୁ ତା' ପାପୁଲିରେ ବିଦ୍ୟା ବୁଦ୍ଧିର ରେଖାଗୁଡ଼ିଏ ନୂଆ ହୋଇ ତିଆରି ହୋଇଛି କି ନାହିଁ । କିନ୍ତୁ ନାଃ ! ସେମିତି କିଛି ନୂଆ ରେଖା ଅବଶ୍ୟ ତା' ପାପୁଲିରେ ଆଉ ଦେଖାଯାଉ ନ ଥିଲା । କିନ୍ତୁ ଦୀନବନ୍ଧୁକୁ ଲାଗୁଥାଏ, ସତେକି ଗଣେଶଙ୍କ ଆଶୀର୍ବାଦ ତା' ହାତରେ ଲାଗିରହିଛି । ଏସବୁ ରେଖାପେଖାର ଆଉ କିଛି ଅର୍ଥ ନାହିଁ—ଆଉ କିଛି ତାତ୍ପର୍ଯ୍ୟ ମଧ୍ୟ ନାହିଁ । ଆଜି ଗଣେଶଙ୍କୁ ସାଙ୍ଗରୂପେ ପାଇଗଲା ପରେ, ଏଣିକି ତାର ଆଉ କୌଣସି କଥାରେ ଶୋଚନା ଟିକେ ନାହିଁ ।

ଏତିକିବେଳେ ମନ୍ଦିରର ପୂଜାରୀ ଆଳତୀ ଶେଷ କରି ସେଇ ଲିଭା ଆଳତୀର ଧୂପ ନୈବେଦ୍ୟକୁ ସମବେତ ଦର୍ଶକମାନଙ୍କ ନାକପାଖେ ବୁଲାଇ ଆଣିଲେ । ଦୀନବନ୍ଧୁ ଆଉ ତାର ମାଆ ମଧ୍ୟ ସେଇ ଧୂପକୁ ନମସ୍କାର କରି ଆଘ୍ରାଣ କଲେ । ଦୀନବନ୍ଧୁର ମନ ଭିତରେ କିନ୍ତୁ ଗୋଟିଏ ମନ୍ତ୍ର ଗୁଣୁଗୁଣେଇ ଉଠୁଥାଏ । ବହୁବାର ସେ ମନ୍ତ୍ରଟିକୁ ସେ ସାଙ୍ଗ ମେଳରେ ଗଣେଶ ପୂଜା ଦିନ ପୁଷ୍ପାଞ୍ଜଳୀ ଦେଲାବେଳେ ବା ନଡ଼ିଆ ଭାଙ୍ଗିବାବେଳେ ବୋଲିଛି—

ନମୋ ଗଣେଶ ବିଘ୍ନେଶ
ଗିରିଜାନନ୍ଦନ ପ୍ରଭୋ ।
ମମ ବିଘ୍ନ ବିନାଶାୟ
ଗଣାଧିପତୟେ ନମଃ ।

ଆଜି କିନ୍ତୁ ସେହି ମନ୍ତ୍ରର ଶେଷ ପଦଟି ତା' ମନ ଭିତରେ ଥରକୁ ଥର ଆବୃତ୍ତି ହୋଇ ଚାଲିଥାଏ—ଗଣାଧିପତୟେ ନମଃ, ଗଣାଧିପତୟେ ନମଃ...

ମା' ପୁଅ ଦୁହେଁ ହାତ ଧରାଧରି ହୋଇ ଘରକୁ ଫେରିଲେ । ବାଟରେ ମା' ହାତ ଧରି ଚାଲିଥିଲା ବେଳେ ଦୀନବନ୍ଧୁର ମନେ ହେଉଥାଏ—ଗଣେଶ ମହାପ୍ରଭୁ ମଧ୍ୟ ତାର ଅନ୍ୟ ହାତଟି ଧରି ଖୁସି ମନରେ ଚାଲିଛନ୍ତି ।

॥ ॥ ॥

## ଜଗନ୍ନାଥ ସ୍ଥୂଳବୃତ୍ତାନ୍ତଂ

ଗୋଟିଏ ଥିଲା ଦେଶ । ତା' ଭିତରେ ଥିଲା ଗୋଟିଏ ରାଜ୍ୟ । ସେ ରାଜ୍ୟର ଲୋକେ ଗୋଟିଏ ଦେବତାକୁ ପୂଜା କରୁଥିଲେ । ସେ ଦେବତାଟିର ନାମ ଜଗନ୍ନାଥ । ସେହି ଜଗନ୍ନାଥଙ୍କର ଗୋଟିଏ ଭାଇ ଓ ଗୋଟିଏ ଭଉଣୀ ଥିଲେ । ତାଙ୍କ ନାମ ବଳଭଦ୍ର ଓ ସୁଭଦ୍ରା । ସେମାନଙ୍କର ଗୋଟିଏ ଅସ୍ତ୍ର ଥିଲା । ତା'ର ନାମ ହେଉଛି ସୁଦର୍ଶନ । ସେ ଠାକୁରଙ୍କର ଗୋଟାଏ ବଡ଼ ଦେଉଳ ଥିଲା । ବହୁ ଜମିବାଡ଼ି ଥିଲା । ଗୋଟିଏ ଛଡ଼ଦାଣ୍ଡ ଥିଲା ଓ ତାଙ୍କର ବହୁ ଧନରତ୍ନ ଥିଲା ଏବଂ ବହୁ ସେବାକାରୀ ମଧ୍ୟ ଥିଲେ । ଏବଂ ସବୁଠୁଁ ବଡ଼ ଗୋଟିଏ ରଜା ମଧ୍ୟ ଥିଲା ।

କିନ୍ତୁ ଦୁଃଖର କଥା ସେ ଠାକୁରଙ୍କର ପାଦ ନ ଥିଲା—କାନ ନ ଥିଲା ଓ ଦୁଇ ହାତରେ ଆଙ୍ଗୁଳି ସମେତ ପାପୁଲି ମଧ୍ୟ ନ ଥିଲା । ସେମାନେ ଜନ୍ମରୁ ସେମିତି, କିମ୍ବା ପରେ ସେମିତି ହୋଇଛନ୍ତି—ସେ କଥା କେହି କହିପାରୁ ନ ଥିଲେ । କେହି କେହି କହୁଥିଲେ—ଅସଲ ଠାକୁର ଅଛନ୍ତି ଏଇ ଉପରର କାଠଖୋଳ ଭିତରେ । କିନ୍ତୁ ସେଇ ଅସଲ ଠାକୁରଙ୍କୁ କେହି ଦେଖି ପାରିବେ ନାହିଁ କି ଛୁଇଁ ମଧ୍ୟ ପାରିବେ ନାହିଁ ।

ସେ ଯାହାହେଉ, ଏଇ ଠାକୁର କିନ୍ତୁ ଜନ୍ମରୁ ନା'ବାଳକ ଭାବେ ରହି ଆସିଥିଲେ । ତାଙ୍କୁ ଗାଧୋଇଦେବା' ଠାରୁ ଲୁଗାପଟା ପିନ୍ଧିବା ପର୍ଯ୍ୟନ୍ତ ଓ ନାନାବିଧ ବେଶଭୂଷା କରିବା ପର୍ଯ୍ୟନ୍ତ ଏବଂ ଶେଷକୁ ଖୁଆଇଦେବା ପର୍ଯ୍ୟନ୍ତ ବହୁ ଲୋକଙ୍କ ସେବା ଦରକାର ପଡୁଥିଲା । ବର୍ଷ ପରେ ବର୍ଷ ବିତୁଥିଲା—ଶତାବ୍ଦୀ ପରେ ଶତାବ୍ଦୀ—ଏପରି କି ଯୁଗ ପରେ ଯୁଗ—କିନ୍ତୁ ସେହି ଠାକୁରଙ୍କର ନା'ବାଳକତ୍ୱ କଟୁ ନ ଥିଲା । ତାଙ୍କ ତରଫରୁ ସବୁ କଥା କରୁଥିଲେ ତାଙ୍କର ସେବକ ଓ ପଣ୍ଡା ପଢ଼ିଆରୀମାନେ ଏବଂ ତାଙ୍କର ସେହି ରଜା ଜଣକ । ଅନେକ ଯୁଗ ପରେ ଦେଶଟି ହେଲା ପରାଧୀନ । ଏ ରାଜ୍ୟର ଅଧିବାସୀମାନେ ନିଜକୁ ସମ୍ଭାଳି ପାରିଲେ ନାହିଁ କି ତାଙ୍କ ଠାକୁରଙ୍କୁ ସମ୍ଭାଳି ପାରିଲେ ନାହିଁ । ହାତ ଗୋଡ଼ ନ ଥିବା ଏହି ନା'ବାଳକ ଠାକୁରଙ୍କୁ ଆକ୍ରମଣକାରୀମାନେ ବାରମ୍ବାର ତାଙ୍କ ପୀଢ଼ ଉପରୁ ଉଠାଇ ନେଉଥିଲେ । ସେଇ ଭୟରେ ତାଙ୍କୁ ବହୁବେଳେ ମନ୍ଦିରରୁ କାଢ଼ି ଅନ୍ୟତ୍ର ମଧ୍ୟ ଲୁଚାଇ ଦିଆଯାଉଥିଲା । କହିବା ବାହୁଲ୍ୟ—ଏଇ ମାଦଳା ଠାକୁରଟି ଲାଗି ରାଜ୍ୟ-ବାସୀମାନେ—ଓ ରାଜ୍ୟବାସୀଙ୍କ ଲାଗି ମାଦଳା ଠାକୁରଟି ନିଜ ଭାଇଭଉଣୀଙ୍କ ସହିତ ବହୁ ହଇରାଣ ହରକତ ହେଉଥିଲେ । କିନ୍ତୁ କେହି କାହାକୁ ରକ୍ଷା କରିପାରୁ ନ ଥିଲେ—ଅଥବା କେହି କାହାକୁ ମଧ୍ୟ ଛାଡ଼ିପାରୁ ନ ଥିଲେ । ଅସଲ କଥା ହେଲା—ଏଇ ଠାକୁରଟି ମାଦଳା ହେଲେ ବି ବହୁ ପରିମାଣରେ ଭୋଗରାଗ ଖାଉଥିଲେ—ଏବଂ ଏହାର ଦୈନନ୍ଦିନ ସ୍ୱାଭାବିକ ପରିମାଣ ଥିଲା ଛପନପଉଠି । ଏହା ଛଡ଼ା, ପ୍ରତିଦିନ ଆଉ ଅଧିକା ଭୋଗରାଗ ମଧ୍ୟ ଠାକୁରଙ୍କୁ ପ୍ରସାଦ କରିବାକୁ ଦିଆଯାଉଥିଲା । ଏବଂ ସେହି ପରିମାଣରେ ଖାଦ୍ୟ ତାଙ୍କୁ ଆଉ କେଉଁ ରାଜ୍ୟରେ ମଧ୍ୟ ମିଳିବା ସମ୍ଭବ ନ ଥିଲା । ତେଣୁ ଠାକୁରଟି ବିଚରା ଯେତେ ଯାହା କଷ୍ଟ ହେଲେ ବି, ଏ ରାଜ୍ୟ ଛାଡ଼ି ଅନ୍ୟତ୍ର ଯିବାକୁ ନିଜେ କୁଣ୍ଠିତ ହେଉଥିଲେ ଏବଂ ଅନ୍ୟ ରାଜ୍ୟବାସୀଙ୍କର ମଧ୍ୟ ଏମନ୍ତ ବହୁ ଭୋଜନବିଳାସୀ ଠାକୁରଙ୍କୁ ନେଇ ପାରି ଉଠିବାର ଶକ୍ତି ନ ଥିଲା ବା ସେଥିଲାଗି ସାହସ ମଧ୍ୟ ନ ଥିଲା ।

ରାଜ୍ୟବାସୀମାନେ ମଧ୍ୟ ଏତେ କଷ୍ଟ ସତ୍ତ୍ୱେ ବି ଠାକୁରଙ୍କୁ ଛାଡ଼ିପାରୁ ନ ଥିଲେ । କାରଣ ବହୁ ପୂର୍ବରୁ ଦେଶସାରା ଏହି ରାଜ୍ୟର ଅଧିବାସୀଙ୍କୁ

ନାନାଦି କାରଣରୁ ପତିତ ବା ବ୍ରାତ୍ୟ ବୋଲି ମନେ କରୁଥିଲେ । ଏହା ଏକ ସଂସ୍କାର ବିବର୍ଜିତ ରାଜ୍ୟ ବୋଲି ସାରା ବିଶ୍ୱର ଧାରଣା ଥିଲା । କିନ୍ତୁ ଏହି ଠାକୁରଟି ଏଠି ପ୍ରତିଷ୍ଠା ପାଇବାରୁ ଏହି ରାଜ୍ୟର କପାଳରୁ ସେହି କଳଙ୍କ ପୋଛି ହୋଇ ଆସୁଥିଲା । ଏବଂ ପତିତଦେଶର ଠାକୁରଙ୍କୁ ସେମାନେ ପତିତପାବନ ନାମରେ ସମ୍ବୋଧନ କରିବସିଲେ । ଏବଂ ସେଇ ନାମରେ ବାନାଟିଏ ମଧ୍ୟ ତାଙ୍କ ମନ୍ଦିର ଉପରେ ଉଡ଼ିବାକୁ ଲାଗିଲା । ଏହି ପତିତ-ପାବନ ଯଦି ଏ ରାଜ୍ୟ ଛାଡ଼ି ଚାଲିଯାନ୍ତି ତେବେ ଏ ରାଜ୍ୟ ପୁନଶ୍ଚ ପତିତ ହୋଇଯିବ, ଏ ଆଶଙ୍କା ମଧ୍ୟ ସେହି ରାଜ୍ୟବାସୀଙ୍କର ଥିଲା । ବସ୍ତୁତଃ ଏହି ରାଜ୍ୟଟିର ପ୍ରକୃତ ନାମ ଦେଶସାରା ଲୋକେ ଜାଣି ନ ଥିଲେ । ସାରାଦେଶ ସେହି ପତିତ ରାଜ୍ୟଟିକୁ "ଜଗନ୍ନାଥ କି ଦେଶ" ବୋଲି କହୁଥିଲେ । ଦେଶର ବଡ଼ ବଡ଼ ପଣ୍ଡିତମାନେ କହୁଥିଲେ ଯେ ଜଗନ୍ନାଥଙ୍କ ଯୋଗୁଁ ସେ ଦେଶର ମାଟି ପବିତ୍ର ହୋଇଛି । ଅସଲରେ କୁଆଡ଼େ ସେହି ରାଜ୍ୟବାସୀମାନେ ଅତ୍ୟନ୍ତ ଅପବିତ୍ର ଓ ଅସଂଭ୍ରାନ୍ତ ଶୁଦ୍ର ବା ଚଣ୍ଡାଳ ଜାତୀୟ ଲୋକଥିଲେ । ସେହି ଶୁଦ୍ର ବା ଚଣ୍ଡାଳମାନେ ଭୂମିଚାଷ କରି ଓ ଶୀକାର କରି ଜୀବନ ବଞ୍ଚାଉଥିଲେ । କେହି କେହି ଭୂମିକର୍ଷଣକାରୀ ଚାଷୀ ନିଜ ହାତରେ ଲଙ୍ଗଳ ଓ ବେକରେ ଉପବୀତ ଧାରଣ କରି ନିଜକୁ ବ୍ରାହ୍ମଣ ବୋଲାଉଥିଲେ । ଏବଂ କେହି କେହି ଶୁଦ୍ର ଭୂମିକର୍ଷଣକାରୀ ହାତେକେ ଲଙ୍ଗଳ ଓ ଅନ୍ୟ ହାତରେ ଖଣ୍ଡାଟିଏ ଧରି ନିଜକୁ କ୍ଷତ୍ରିୟ ବୋଲି ଜାହିର୍ କରୁଥିଲେ । ଅସଲ ବ୍ରାହ୍ମଣ ଓ କ୍ଷତ୍ରିୟ ବିବର୍ଜିତ ଏହି ରାଜ୍ୟ ମ୍ଳେଚ୍ଛସୁଲଭ ଆଚରଣରେ ପୂର୍ଣ୍ଣ ଥିଲା । ପତିତପାବନ ଜଗନ୍ନାଥଙ୍କ ଯୋଗୁଁ ଏହି ଜାତି ପବିତ୍ର ହୋଇଛି—ଏବଂ ସେ ଚାଲିଗଲେ ଏ ଜାତିର ସେହି ପବିତ୍ରତା ମଧ୍ୟ ଚାଲିଯିବ—ଏହି ଆଶଙ୍କାରେ ରାଜ୍ୟବାସୀ ଜଗନ୍ନାଥଙ୍କୁ ନିଜ ପାଖରୁ ଛାଡ଼ିବାକୁ କୁଣ୍ଠିତ ହେଉଥିଲେ ।

ଏହିପରି ଭୟ ଓ କୁଣ୍ଠା ହେତୁରୁ ପରସ୍ପରକୁ କୁଣ୍ଢାଇ ଧରି ବହୁକାଳ ରହିବା ପରେ ଠାକୁର ଓ ତାଙ୍କର ରାଜ୍ୟବାସୀ ଉଭୟେ ସେମାନଙ୍କର ସ୍ୱାଭାବିକ ଜ୍ଞାନ, ଶକ୍ତି ଓ ଆନନ୍ଦ ଉପଲବ୍ଧିକୁ ହରାଇ ବସିଲେ । ଉଭୟେ ବହୁକାଳ ଧରି ଏକ କିଂକର୍ତ୍ତବ୍ୟ ବିମୂଢ଼ ଯାନ୍ତ୍ରିକ ଜୀବନ ଏବଂ ସମ୍ବନ୍ଧକୁ ନେଇ କେବଳ ତିଷ୍ଠି ରହିଲେ ।

କ୍ରମେ ଯୁଗ ପୁଣି ଓଲଟିଲା । ଦେଶ ସ୍ୱାଧୀନ ହେଲା । ଅନ୍ୟ ରାଜ୍ୟବାସୀଙ୍କ ସଦୃଶ ଜଗନ୍ନାଥଙ୍କ ରାଜ୍ୟବାସୀମାନେ ମଧ୍ୟ ଆଧୁନିକ ଧରଣର ସ୍ୱାଧୀନତା ଭୋଗ କଲେ । ରାଜ୍ୟର ରାଜା ଗଲେ । ଗଣତନ୍ତ୍ର ଶାସନ ପ୍ରତିଷ୍ଠିତ ହେଲା । ରାଜଗାଦୀରେ ଲୋକନିର୍ବାଚିତ ମନ୍ତ୍ରୀମାନେ ଅଧିରୂଢ ହେଲେ । ରାଜସଭା ପରିବର୍ତ୍ତେ ବିଧାନସଭା ବସିଲା । କିନ୍ତୁ ରାଜା ଗଲେ ବି ରାଜନୀତି ରହିଗଲା । ଏବଂ ସେହି ରାଜନୀତି କରୁଥିବା ଲୋକେ ନିଜକୁ ଦେଶସେବକ, ଲୋକ-ସେବକ, ଜନସେବକ ଓ ଦେଶପ୍ରେମୀ ନେତା ବୋଲାଇଲେ । କ୍ରମେ ଦେଶର ଜୀବନାଦର୍ଶ ମଧ୍ୟ ବଦଳିଗଲା । ଦେବସେବାରୁ ଲୋକସେବା ପ୍ରବର୍ତ୍ତନ ନ ହୋଇ, ଲୋକସେବାରୁ ଦେବସେବାର ଆଦର୍ଶ ପ୍ରବର୍ତ୍ତିତ ହେଲା । ଚତୁର୍ଦ୍ଦିଗରେ କେବଳ ଲୋକକଲ୍ୟାଣ ଆଦର୍ଶ ପ୍ରତିଷ୍ଠିତ ଓ ପ୍ରଚାରିତ ହେଲା । ଲୋକସେବା ଓ ଲୋକକଲ୍ୟାଣ ଆଦର୍ଶକୁ ମୁଖ୍ୟ ବୋଲି ଧରିବା ହେତୁ ଲୋକଙ୍କ ସଂଖ୍ୟା ମଧ୍ୟ ଆଶାତୀତ ଭାବେ ବଢ଼ି ଚାଲିଲା ଏବଂ ସେହି ଅନୁସାରେ ଲୋକଙ୍କ ସମସ୍ୟା ମଧ୍ୟ ବଢି ଚାଲିଲା ଏବଂ ସମସ୍ତଙ୍କ ମୁଣ୍ଡ କେବଳ ଅହୋରାତ୍ର ସେହି ଲୋକ ସମସ୍ୟା ସମାଧାନର ସୂତ୍ର ଖୋଜିବାରେ ବ୍ୟୟିତ ହେଲା । ବହୁଲୋକ ବହୁ ସମସ୍ୟା ତିଆରିଲେ । ବହୁଲୋକ ସେହି-ସବୁ ସମସ୍ୟାର ସମାଧାନରେ ଲାଗି ସେଥିରୁ ପୁଣି ବହୁ ସମସ୍ୟା ଜାତ କଲେ । ଚତୁର୍ଦ୍ଦିଗରେ କେବଳ ଦେଖାଗଲା ଲୋକ, ଲୋକ, ଲୋକ—ଏବଂ ସେମାନଙ୍କ ସମସ୍ୟା, ସମସ୍ୟା, ସମସ୍ୟା—ଏବଂ ସେ ଗୁଡ଼ିକର ସମାଧାନ ଲାଗି ପନ୍ଥା, ପନ୍ଥା, ପନ୍ଥା—ତା'ପଛରେ ଅସଂଖ୍ୟ ନେତା, ନେତା, ନେତା—ବା ସେବକ, ସେବକ, ସେବକ । ସେମାନେ ପରସ୍ପର ସହ କଳହ କନ୍ଦଳରେ ମାତିଲେ—ଗାଦିରେ ନିଜେ ଚଢ଼ିବା ପାଇଁ ଓ ଅନ୍ୟକୁ ଗାଦିରୁ ନିକାଲିବା ପାଇଁ ସେମାନେ ଅହରହ ଦ୍ୱନ୍ଦ୍ୱ ଯୁଦ୍ଧରେ ଓ ଦଳୀୟ ସଂଗ୍ରାମରେ ବ୍ୟାପୃତ ରହିଲେ । ସବୁ ସେବକେ ଧ୍ୱନୀ ଦେଲେ, ମୁଇଁ କେବଳ ଲୋକଙ୍କର ଅଧିକ ସେବା କରିପାରିବି—ଅଧିକ କଲ୍ୟାଣ କରିପାରିବି । ଅନ୍ୟ ଲୋକ ହଟିଯାଉ, ମତେ ସମସ୍ତେ ସମର୍ଥନ କର । ଏଣେ ଲୋକେ ମଧ୍ୟ ପ୍ରବଳ ହେଲେ—ଲୋକେ ଭାବିଲେ ଆମେ ହେଲୁ ମୂଳ । ଆମ ଯୋଗୁଁ ଏ ସୃଷ୍ଟି ହୋଇଛି—ଚାଲୁଛି ଓ ବଦଳୁଛି । ଆମେ ରାଜାଙ୍କୁ ତଡ଼ିଲୁ ମନ୍ତ୍ରୀ ଆଉ ନେତାଙ୍କୁ ଆଣିଲୁ । ଏବଂ

ଆମେ ଯେତେବେଳେ ଯେଉଁ ନେତାକୁ ମନ୍ତ୍ରୀ କରିବୁ ସେ ମନ୍ତ୍ରୀ ହେବ । ଆମେ ରାଜ୍ୟ ଚଳାଉଛୁ । ଦେଶ ଚଳାଉଛୁ । ଠାକୁର ଦେବତାଙ୍କୁ ମଧ୍ୟ ଚଳାଉଛୁ । ଏପରି କି ଭଗବାନଙ୍କୁ ମଧ୍ୟ ଆମେ ସୃଷ୍ଟି କରିଛୁ—ଆମେ ରକ୍ଷା ପ୍ରତିପାଳନ କରୁଛୁ ଓ ଆମେ ଇଚ୍ଛା କଲେ ଭଗବାନଙ୍କୁ ମଧ୍ୟ ବିଦା କରି ଦେଇ ପାରିବୁ । ତେଣୁ ଲୋକେ ହେଲେ ମୂଳ—ଲୋକଶକ୍ତି ହେଲା ପ୍ରବଳ— ଲୋକରବ ହେଲା ତୁମୂଳ । ଲୋକାଗ୍ରହ ହେଲା ସବୁ ଧର୍ମ ଓ ସଂସ୍କୃତିର ନିୟାମକ । ସେଥିପାଇଁ ଲୋକସେବକ ବା ନେତାମାନେ ଦେବତାଙ୍କୁ ଛାଡ଼ି ଲୋକଙ୍କ ପିଛାରେ ପଡ଼ିଲେ ଦିନଗତି ।

ବିପୁଳ ଲୋକଛାୟାରେ ଦେବତାମାନଙ୍କର ଦିବ୍ୟଜ୍ୟୋତି ଓ ମୂର୍ତ୍ତି ଆଚ୍ଛାଦିତ ହୋଇଗଲା । ବିପୁଳ ଜନରବରେ ଦେବତାମାନଙ୍କର ଘଣ୍ଟାଘୋଷ ଓ ଭେରୀ କାହାଳୀର ନିନାଦ ମଧ୍ୟ ନିସ୍ତବ୍ଧ ହୋଇଗଲା । ଜଣାଗଲା ଯେ ଦେବତାଙ୍କର କଥା ଆଉ କାହାର ମନେନାହିଁ । ତାଙ୍କର ଦୈନନ୍ଦିନ ନିତି ପୂଜାଦି କ୍ରମେ ବନ୍ଦ ହୋଇ ଆସିଛି କିମ୍ବା ଯାହିତାହି ଚାଲିଛି । ପର୍ବପାର୍ବଣାଦି ମଧ୍ୟ ଯଥା ତଥା ପାଳିତ ହେଉଛି । ସେଇଠୁ ଥୋକେ ଲୋକ ଏହାନେଇ ହୋହଲ୍ଲା ଆରମ୍ଭ କରିଦେଲେ । ସେହି ଥୋକେ କହିଲେ—ଆମ ଇଷ୍ଟଦେବତା ହେଲେ ଜଗନ୍ନାଥ । ତାଙ୍କ କଥା ଆଗ ବୁଝ ଓ ବେଶୀକରି ବୁଝ । ତା' ନ ହେଲେ ଏ ଜାତିର ମାନମହତ ଗଲା । ଆଉ ଥୋକେ କହିଲେ, ଦିଅଁ ଦେବତାଙ୍କ କଥା ଛାଡ଼ ହେ । ସେ ସବୁ ପିଲା ଖେଳ କିମ୍ବା ତାଙ୍କ ବ୍ୟବସ୍ଥା ତାଙ୍କ ଭକ୍ତ ମାନେ କରନ୍ତୁ । ଆମର ହେଲା ଧର୍ମ ନିରପେକ୍ଷ ରାଷ୍ଟ୍ର । ଜାତୀୟ ସରକାର ବା ଲୋକମଙ୍ଗଳକାମୀ ଗଣତନ୍ତ୍ର ସରକାର ଦିଅଁ ଦେବତାଙ୍କୁ ନେଇ ମାତିବ କିହେ ? ସେ ଦିଅଁ ହୋଇଥିଲେ ନିଜ କଥା ନିଜେ ବୁଝିବନି କି ? ସରକାର କିସ ପାଇଁ ସେ କଥାରେ ପଶିବେ ହେ ? ଜାତିର ସାର୍ବଜନୀନ ସମ୍ପତ୍ତି ହେଲା ସେହି ସୁ-ପ୍ରାଚୀନ କାରୁକାର୍ଯ୍ୟଭରା ବଡ଼ ଦେଉଳଟି । ଆମ ପୂର୍ବ ପୁରୁଷେ କେଡ଼େ କେଡ଼େ ପଥରମାନ ପିଠିରେ ବୋହି ଏଡ଼େ ବଡ଼ ମନ୍ଦିରଟାଏ ତିଆରି କରିଥିଲେ । ସେଥିରେ ପୁଣି ଛୁଂଚିମୁନରେ କାରୁକାର୍ଯ୍ୟ କରିଥିଲେ । ଯେ ଆସି ଦେଖୁଛି—ତା' ଆଖି ଖୋସି ହୋଇ ଯାଉଛି ହେ । ସେଇ ସକାଶୁ ସେ ଦେଉଳଟା ଏକ୍କା ଇଜ୍ଜତ୍‌ମହତ ରଖିଛି ନା !! କୋଉ

ଦିଅଁ ଦେବତା ଆମ ଇଜ୍ଜତ ରଖିଥିଲ କି ? ଠାକୁରଟାକୁ ପଠାଣ ଆସି ଚମ ଦଉଡ଼ିରେ ବାନ୍ଧି ହାତୀ ଉପରେ ପକେଇ ଘିନି ଯାଉଥିଲା । ହେଲେ ସେ ନିଜକୁ ରଖିପାରିଲା କି ? ପଠାଣ ଠାକୁରଟାକୁ ନେଇ ଯାଇ ପାରିଲା ନା ଦେଉଳଟାକୁ ଟେକିନେଇ ପାରିଲା କିହେ ? ସେଥିପାଇଁ ଆଗ ଦେଉଳଟାର କଥା ବୁଝ ହେ । ଦେଉଳଟା ବୋଲୁଚ ଭଙ୍ଗି ପଡ଼ିବ କି ଭୁଷୁଡ଼ି ପଡ଼ିବ । କେତେକାଳ ହେଲାଣି କିଏ ଜାଣିଛି ହେ । ଆଗ ଦେଉଳଟାର କଥା ବୁଝ ହେ । ଆଛା ଦିଅଁ ଦିଅଁ କିସ ପାଇଁ ହେଉଛ ?

ସେଇଠୁ ଲୋକପ୍ରତିନିଧିମାନେ ଓ ତାଙ୍କ ଦ୍ୱାରା ଗଠିତ ସରକାରଙ୍କ ମୁଣ୍ଡରେ ଚିନ୍ତା ପଶିଲା । ସେମାନେ ପ୍ରଥମେ ଠିକ୍ କରି ପାରିଲେ ନାହିଁ ଯେ ଆଗ କୋଉଆଡ଼ୁ ସେମାନେ କାମ ଆରମ୍ଭ କରିବେ—ଦିଅଁଙ୍କ ଆଡ଼ୁ ନା ଦେଉଳ ଆଡ଼ୁ ? ସେମାନେ ବିଜ୍ଞଲୋକଙ୍କୁ ନେଇ ଗୋଟିଏ ସଭା ବସାଇଲେ । ବିଜ୍ଞଜନମାନେ ବହୁତ ଭାବିଲେ । ବହୁପୋଥୀ ନଥୀମାନ ଘାଣ୍ଟି ବହୁତ ଆଲୋଚନା କରି କହିଲେ—ଏ ଦିଅଁଟି ବଡ଼ ଖର୍ଚ୍ଚସାଧ୍ୟ ଦିଅଁ । ଏହାକୁ ସମ୍ଭାଳିବା ବର୍ତ୍ତମାନ ଯୁଗରେ ଭାରୀ କଷ୍ଟ । ଏ ଅଭାବ ଯୁଗରେ ଏଭଳି ଦିଅଁକୁ ସମ୍ଭାଳିବା ଯାହା, ରାଜ୍ୟର ପ୍ରତି ପରିବାରକୁ ଗୋଟିଏ ଲେଖାଁ ହାତୀ ଦେଇ ତାକୁ ପୋଷିବା ପାଇଁ କହିବା ସେଇଆ । ସେମାନେ ପରାମର୍ଶ ଦେଲେ—ଗୋଟିଏ କଥା କରାଯାଉ । ଯୁଗୋଚିତ ଏବଂ ଯୁଗସୁଲଭ ବ୍ୟବସ୍ଥା ଅବଲମ୍ବନ କରି ଦିଅଁଙ୍କ ନୀତିପିଠିକୁ ଖୁବ୍ ସଂକ୍ଷିପ୍ତ ଓ ସଂକୁଚିତ କରିଦିଆଯାଉ । ଏ ଦିଅଁ ରାଜୁଡ଼ା ଅମଳରେ ପ୍ରତିଷ୍ଠିତ ହୋଇଥିଲେ । ଗଣତନ୍ତ୍ର ଓ ସମାଜ-ବାଦୀ ଯୁଗରେ ଏ ଦିଅଁକୁ ପୁନଶ୍ଚ ପ୍ରତିଷ୍ଠା କରାଯାଉ । ଏବଂ ଆଗ ଦେଉଳ ଆଡ଼ୁ କାର୍ଯ୍ୟାରମ୍ଭ ହେଉ । ଏ ଦେଉଳର ସୁନ୍ଦର ସୁନ୍ଦର କାରୁକାର୍ଯ୍ୟ ଦେଖିବା ଲାଗି ବାହାର ଦେଶରୁ ହଜାର ହଜାର ଭ୍ରମଣକାରୀ ଆସିବେ । ତଦ୍ୱାରା ଆମର ଭଲ ଦି'ପଇସା ଆୟ ହେବ । ଦିଅଁଙ୍କ କଥା ପଛକୁ ରଖ । ଦିଅଁ ତ ଅଛନ୍ତି—କ'ଣ ପଳେଇ ଯାଉଛନ୍ତି ?

ଏହା ଛଡ଼ା ଆଉ ଗୋଟିଏ ପରାମର୍ଶ ମଧ୍ୟ ବିଜ୍ଞଜନମାନେ ଦେଲେ । ତା' ହେଲା—ଏ ଦିଅଁଙ୍କ ପଣ୍ଡାପଢ଼ିଆରୀଙ୍କୁ ଏଠୁ ବାହାର କରି ଦିଆଯାଉ ।

ସେମାନେ କେବଳ ଦିଅଁଙ୍କ ସେବା ଜାଣନ୍ତି । ସେମାନେ ଲୋକସେବା ଜାଣନ୍ତି ନାହିଁ । ବରଂ ଲୋକଙ୍କୁ ଦୁର୍ବ୍ୟବହାର କରୁଛନ୍ତି । ଲୋକଶାସନରେ ଏହା ଅତ୍ୟନ୍ତ ଗର୍ହିତ ବ୍ୟାପାର ।

ବିଜ୍ଞବ୍ୟକ୍ତିମାନଙ୍କ ଠାରୁ ଏ କଥା ଶୁଣି ଗଜ୍ୟଲେକେ ସବୁ ବୁଝିଗଲେ । ସେମାନେ ଆଉ ସେ ସମସ୍ୟାରେ ମୁଣ୍ଡ ନ ଖେଳାଇ ନିଜ ନିଜ ଧନ୍ଦାରେ ଲଗିଲେ । ଅତଃପର ଦିଅଁଙ୍କ ପାଖରେ ବହୁ ବିଶୃଙ୍ଖଳା ହେଲା । ତାଙ୍କୁ ଆଉ ଠିକ୍ ସମୟରେ ମୁଠେ ଖାଇବାକୁ ମିଳିଲାନାହିଁ । ପିନ୍ଧିବା ଲଗି ବସ୍ତ୍ର ଖଣ୍ଡିଏ ମିଳିଲା ନାହିଁ । ବସି କରି ବୁଲିବା ପାଇଁ ଆଛା ଯାନଟିଏ ମଧ୍ୟ ମିଳିଲା ନାହିଁ । ଏପରିକି ଦିଅଁ ଟିକିଏ ଆରାମରେ ଶୋଇ ମଧ୍ୟ ପାରିଲେ ନାହିଁ ।

ଶେଷରେ ଦିନେ ଦେଖାଗଲା ଯେ ଦିଅଁଙ୍କ ଲଗି ଗନ୍ଧିବା ଉଦ୍ଦେଶ୍ୟରେ ହାଣ୍ଡି କୋଡୁଆ ମଧ୍ୟ ମିଳିଲା ନାହିଁ ।

ଲେକମାନେ କୁହାକୋହି ହେଲେ—ଆମ ଦିଅଁଙ୍କ ପାଇଁ ଯାହାସବୁ ମିଳିଲା ନାହିଁ ବୋଲି କୁହାଯାଉଛି—ତାହା କ'ଣ ସତ ? ଯଦି ସତ ହୋଇଥାଏ, କଣ ତା'ର କାରଣ ? ଓ କିପରି ତାହା ଦୂରୀଭୂତ ହେବ ?

ଲେକପ୍ରତିନିଧି ସରକାରଙ୍କ ତରଫରୁ ଲେକସେବକମାନେ କହି ବୁଲିଲେ—ଅଭାବଭାବ ତ ଲଗି ରହିଛି । ପୁଣି ଏଇଟା ହେଲା ଅଭାବର ଯୁଗ ! ଡ୍ରିଙ୍କେଲ ମିଳୁନାହିଁ—ପେଟ୍ରୋଲ ମିଳୁନାହିଁ—କିରେସିନ୍ ମିଳୁନାହିଁ—ଘିଅ ତେଲ ମିଳୁନାହିଁ—ଡାଲି ମିଳୁନାହିଁ—ଶେଷରେ ମନ ମଧ୍ୟ ମିଳୁନାହିଁ । ଏମିତି ଏମିତି ବହୁ ବହୁକଥା ମିଳୁନାହିଁ । ତା' ବୋଲି କଣ ଆମେ କୁଆଡ଼େ ପଳେଇ ଯିବୁ—ନା ଦିଅଁ କୁଆଡ଼େ ପଳେଇ ଯିବେ ? ଥଯଧର । ଆଗ ଥୟ ମିଳୁ—ତା'ପରେ ସବୁ ମିଳିବ ।

ବିରୋଧୀଦଳର ଲେକସେବକ ଓ ନେତାମାନେ କହି ବୁଲିଲେ—ଆମେ ଭଲା କ'ଣ କରିବୁ ? ଆମକୁ ତ ଭୋଟ ମିଳିଲା ନାହିଁ—ଲେକ ସମର୍ଥନ ମିଳିଲା

ନାହିଁ—ଯାହାଙ୍କ ସବୁ ମିଳିଲା—ସେମାନେ ଯଦି କହିବେ କିଛି ମିଳୁନାହିଁ—ଆମେ ଖାଲି ଏତିକି କହିବୁ—ତା'ହେଲେ ଗାଦୀ ଛାଡ଼ିଦିଅ । ଆମକୁ ଗାଦୀ ମିଳିଲେ ଦିଅଁକୁ ସବୁ ମିଳିବ । ରାଜ୍ୟର ଲୋକମାନେ ଏହିପରି ଫନ୍ଦାଫନ୍ଦି କଥାମାନ ଦୁଇପକ୍ଷରୁ ଶୁଣି ଭାବିଲେ—ଓଃ ! ଆଚ୍ଛା କଥା ହେଲା । ଏବେ ଉପାୟ କଣ ? ଜଗନ୍ନାଥେ ନିଜେ ତାଙ୍କ କଥା ବୁଝନ୍ତୁ । ଏଇତ ଅବସ୍ଥା । ଏଥିରେ ଯଦି ସେ ଏଠି ରହିବେ ରହନ୍ତୁ—ନ ହେଲେ ଆମେରିକା ଚାଲିଯା'ନ୍ତୁ । ସେଠି ଆମେରିକାବାଲା ତାଙ୍କୁ ମହା ଆରାମରେ ରଖିବେ । ସେମାନେ ତ ଚାହିଁ ବସିଛନ୍ତି ।

କିନ୍ତୁ ଲୋକଙ୍କ ଭିତରୁ ଆଉ ଦଳେ ହଲ୍ଲା କଲେ । ସେମାନେ କହିଲେ—ଚୁପ୍ କର । ଜଗନ୍ନାଥଙ୍କୁ ଛାଡ଼ିଦେଲେ, ଆମର ଆଉ କିଛି ରହିବ ନାହିଁ । ଜଗନ୍ନାଥ ହେଲେ ଆମର ପ୍ରେଷ୍ଟିଜ୍ ଇସୁ—ମାନସମ୍ମାନର ପ୍ରତୀକ । ସରକାର ହାତରେ ପୂରା ତାଙ୍କୁ ଛାଡ଼ି ଦିଆଯାଉ । ମଧ୍ୟବର୍ତ୍ତୀ ମାଲିକାନା ଲୋପ କରାଯାଉ ।

ଅତଃପର ସରକାରଙ୍କ ହାତରେ ଜଗନ୍ନାଥଙ୍କୁ ସଂପୂର୍ଣ୍ଣଭାବେ ଛାଡ଼ିଦିଆଗଲା । ସବୁପ୍ରକାର ମଧ୍ୟବର୍ତ୍ତୀ ମାଲିକାନା ବ୍ୟବସ୍ଥାକୁ ରୁଦ୍ଧ କରିଦିଆଗଲା ।

ତା' ପରର ଘଟଣା ହେଲା ବଡ଼ ବିଚିତ୍ର । ଲୋକପ୍ରତିନିଧି ସରକାରଙ୍କ ହାତକୁ ଜଗନ୍ନାଥେ ଗଲାପରେ, ସରକାର ବଡ଼ ଅଡୁଆରେ ପଡ଼ିଗଲେ । ମନ୍ତ୍ରୀମାନେ ଓ ସେକ୍ରେଟାରୀମାନେ ଘନ ଘନ ଏକତ୍ର ବସି ବିଚାର କଲେ—ପ୍ରଥମେ ସ୍ଥିର କରାଯାଉ ଏହି ହାତଗୋଡ଼ ନ ଥିବା ଅଚଳନ୍ତି ମାଦଳା ଠାକୁରଟି ଚିରକାଳ ନା'ବାଳକ ଅବସ୍ଥାରେ ରହୁଛନ୍ତି, ଅଥଚ ଏହାଙ୍କ ସେବାନୀତି ବ୍ୟାପାର ବଡ଼ ଖର୍ଚ୍ଚାନ୍ତ ଓ ଦୁଃସାଧ୍ୟ ମନେ ହେଉଛି । ପ୍ରଥମେ ସ୍ଥିର କରାଯାଉ, ସରକାରଙ୍କ କେଉଁ ବିଭାଗ ଏହାଙ୍କ ଦାୟିତ୍ୱ ନେବ । ଦାୟିତ୍ୱ ବ୍ୟାପାର ଶୁଣି ସେକ୍ରେଟାରୀମାନେ ଓ ବିଭାଗୀୟ ମନ୍ତ୍ରୀମାନେ ମୁହଁ ତଳକୁ କରି ନୀରବରେ ଚାହା ପିଇଲାଗିଲେ । ମୁଖ୍ୟ ସେକ୍ରେଟାରୀଙ୍କ ଚାହା ସରି ଯିବାରୁ ସେ ଖଣ୍ଡିଏ ଚୁରୁଟ୍ ଶୋଷିଲେ । ସେଇଠୁ କହିଲେ—ମୁଁ

ଭାବୁଛି ଜଗନ୍ନାଥଙ୍କ ଦାୟିତ୍ୱ ଶିକ୍ଷାବିଭାଗ ନେଉ । କାରଣ ଜଗନ୍ନାଥ ଦେଶବାସୀଙ୍କୁ ଓ ଜଗତବାସୀଙ୍କୁ ବହୁ ଶିକ୍ଷା ଦେଇଛନ୍ତି । ବର୍ତ୍ତମାନ ମଧ୍ୟ ଦେଉଛନ୍ତି ଓ ଭବିଷ୍ୟତରେ ମଧ୍ୟ ଦେବାର ସମ୍ଭାବନା ଅଛି ।

ଶିକ୍ଷା ବିଭାଗର ମନ୍ତ୍ରୀ ଓ ସେକ୍ରେଟାରୀ ଦୁହିଁଙ୍କ ମୁଣ୍ଡ ଏକା ସାଙ୍ଗରେ ଘୂରାଇ ଗଲା । ତାଙ୍କ ମଝିରେ ତାଙ୍କ ଡିରେକ୍ଟର ବସିଥିଲେ—ସେ କହିଲେ—ଶିକ୍ଷା ବିଭାଗରେ ଏତେ ଟଙ୍କା କାହିଁ ? ବା ଏତେ ସମୟ କାହିଁ ? ଆମର ଶତକଡ଼ା ନବେଟଙ୍କା ଶିକ୍ଷକମାନଙ୍କ ପିଛା ଖର୍ଚ୍ଚ ହେଉଛି । ଦଶ ଟଙ୍କାରେ ଶିକ୍ଷା ଯାହା ହେବାର ହେଉଛି । ତା' ଛଡ଼ା ସମୟ ବି କାହିଁ ? ଆମର ତ ଆଠମାସ ଛୁଟିରେ ଯାଉଛି । ବରଂ ଜଗନ୍ନାଥଙ୍କ ଦାୟିତ୍ୱ ଜଙ୍ଗଲ ବିଭାଗ ନେଉ । କାରଣ ଜଗନ୍ନାଥ ହେଲେ କୁଆଡ଼େ ଦାରୁବ୍ରହ୍ମ । ଦାରୁ ଅର୍ଥ କାଠ ଓ କାଠ ଜଙ୍ଗଲରୁ ଆସେ ।

ଜଙ୍ଗଲ ବିଭାଗର ମନ୍ତ୍ରୀ ଓ ସେକ୍ରେଟାରୀ ଦୁହେଁ ଏକା ସାଙ୍ଗରେ କହି ଉଠିଲେ—ଆଉ ଜଙ୍ଗଲ ଅଛି କୋଉଠି ? ବିଗତ ସରକାର ସବୁ ଜଙ୍ଗଲ କାଟିକୁଟି ସଫା କରି ଦେଇଛି । ଆମେ ତ ନୂଆକରି ବର୍ତ୍ତମାନ ଜଙ୍ଗଲ ଲଗାଉଛୁ । ଜଗନ୍ନାଥଙ୍କ ନବକଳେବରକୁ ବାରବର୍ଷରେ ଥରେ ବି ଗୋଟିଏ ବଡ଼ ମଜବୁତ୍ ନିମ୍ବ ଗଛ ଯୋଗାଇବା ବର୍ତ୍ତମାନ ମୁସ୍କିଲ ପଡ଼ୁଛି । ତା' ଛଡ଼ା ପ୍ରତିବର୍ଷ ରଥଯାତ୍ରାକୁ ଯେତେ କାଠ ଦରକାର ହେଉଛି—ସେଥିରେ ଆମର ଏହି ନୂତନ ଭାବେ ବଢ଼ି ଉଠୁଥିବା ଜଙ୍ଗଲ ପଦା ହୋଇ-ଯିବ । ଆମ ମତରେ ଶିଳ୍ପ ବିଭାଗ ତାଙ୍କ ଦାୟିତ୍ୱ ନେଉ । କାରଣ ଜଗନ୍ନାଥ ନିଜେ କୁଟୀରଶିଳ୍ପ ଓ କାରୁଶିଳ୍ପର ଏକ ପରାକାଷ୍ଠା ନମୁନା । ତାଙ୍କୁ କେନ୍ଦ୍ର କରି ରାଜ୍ୟରେ ଏକ ନୂତନ କୁଟୀରଶିଳ୍ପ ବିପ୍ଳବ ହୋଇପାରିବ ଓ ଦେଶ ବିଦେଶକୁ ସେ ସବୁ ରପ୍ତାନି କରି ଆମେ ଦି'ପଇସା ପାଇପାରିବା ।

ଶିଳ୍ପ ବିଭାଗର ମନ୍ତ୍ରୀ ତାଙ୍କ ସେକ୍ରେଟାରୀଙ୍କ ଆଡ଼କୁ ଚାହାନ୍ତେ—ସେକ୍ରେଟାରୀ ସାମାନ୍ୟ କାସି ସାରି କହିଲେ—ଆମର ଅବଶ୍ୟ ଏଥିରେ ଆପତ୍ତି ନାହିଁ । କିନ୍ତୁ ଜଗନ୍ନାଥ ନିଜେ ହଇରାଣରେ ପଡ଼ିଯିବେ । ଆମର ତ ନାନାଦି ହାଙ୍ଗାମା

ସବୁଦିନେ । ସବୁଦିନେ ପ୍ରାୟ ଶ୍ରମିକମାନଙ୍କର ଧର୍ମଘଟ ଲଗି ରହିଛି । କମ୍ୟୁନିଷ୍ଟମାନେ ତ ପ୍ରବଳ ହେଲେଣି ।

ଏହି ସମୟରେ ମୁଖ୍ୟମନ୍ତ୍ରୀ ଖୁବ୍ ରାଗିଯାଇ ଟେବୁଲ ଉପରେ ଚପେଟାଘାତ କରି କହିଲେ–

ବୋକାଙ୍କ ଭଳି କଥା କହନ୍ତୁ ନାହିଁ । କମ୍ୟୁନିଷ୍ଟମାନେ ପ୍ରବଳ ହେଲେଣି ବୋଲି ଆପଣ କିପରି ଜାଣିଲେ ? ଆମ ଶାସନରେ ଆମ ରାଜ୍ୟରେ ଆମେ ସେମାନଙ୍କୁ ମୂଳପୋଛ କରିଦେଲୁଣି–ସେ କଥା ଆପଣଙ୍କୁ ଆଜି ପର୍ଯ୍ୟନ୍ତ ଜଣାନାହିଁ ? ଲୋକେ ଆଉ କମ୍ୟୁନିଷ୍ଟଙ୍କୁ ସମର୍ଥନ କରୁନାହାନ୍ତି । ଆଗ ଶାସନରେ ଯେମିତି କରୁଥିଲେ ।

ସେକ୍ରେଟାରୀ ଟିକିଏ ଅପ୍ରତିଭ ହୋଇ ସାଙ୍ଗେ ସାଙ୍ଗେ କଥାଟିକୁ ବାଗେଇ ନେଲେ । ନା' ସାର୍ ; ମୁଁ ସେକଥା ବୁଝିଛି । କଥା ହେଉଛି–ଏ ଜଗନ୍ନାଥ ହେଉଛନ୍ତି ଜଣେ ସାମ୍ୟବାଦୀ ଦେବତା । କମ୍ୟୁନିଷ୍ଟମାନେ ଭଗବାନ ଫଗବାନ ମାନନ୍ତି ନାହିଁ । ମାତ୍ର ଜଗନ୍ନାଥଙ୍କ ଭଳି ଗୋଟିଏ ସାମ୍ୟବାଦୀ ଠାକୁର ମିଳିଗଲେ ସେମାନେ ତାଙ୍କୁ ନେଇ ଲୋକମତକୁ ଏକ୍ସପ୍ଲଏଟ୍ କରିଦେବେ । ସେମାନେ ମହାଧୂର୍ତ୍ତ ଆଉ ଚଣ୍ଡାଳ ଆଜ୍ଞା । ମୋର କହିବାର କଥା ହେଉଛି–ଜଗନ୍ନାଥଙ୍କୁ ଶିଳ୍ପବିଭାଗ ଭିତରକୁ ନ ଟାଣି ଟୁରିଜମ୍ ବା ପରିଭ୍ରମଣ ବିଭାଗ ଅଧିନକୁ ନିଆଯାଉ । ଜଗନ୍ନାଥଙ୍କ ପ୍ରକୃତ ସ୍ୱରୂପ ନିଜ ଆଖିରେ ଦେଖିବାକୁ ଓ ତାଙ୍କର ପ୍ରକୃତ ସ୍ୱ-ଗୁଣର ପ୍ରତ୍ୟକ୍ଷ ପରିଚୟ ପାଇବାକୁ ବର୍ତ୍ତମାନ ବିଦେଶୀ ଲୋକଙ୍କର ଗୋଟାଏ ମସ୍ତ ଝୁଙ୍କ୍ ଉଠିଛି । ସେମାନେ ଲକ୍ଷ ଲକ୍ଷ ସଂଖ୍ୟାରେ ଆମର ଏ ରାଜ୍ୟକୁ ଛୁଟି ଆସିବେ ଓ ଆମର ବେଶ୍ କିଛି ବୈଦେଶିକ ମୁଦ୍ରା ଅର୍ଜନ ହୋଇ ପାରିବ । ଜଗନ୍ନାଥ ମଧ୍ୟ ବେଶ୍ କିଛି ରୋଜଗାର କରିପାରିବେ ।



ମୁଖ୍ୟମନ୍ତ୍ରୀ ଟୁରିଜିମ୍‌ର ସେକ୍ରେଟାରୀ ଓ ମନ୍ତ୍ରୀଙ୍କ ଆଡ଼କୁ ଚାହିଁ ହସି ହସି କହିଲେ–ପ୍ରସ୍ତାବଟି ମନ୍ଦ ନୁହେଁ । ବିଭାଗୀୟ ମନ୍ତ୍ରୀ କଣ କହୁଛନ୍ତି ?

ଟୁରିଜିମ୍‌ର ମନ୍ତ୍ରୀ ମହୋଦୟ ତାଙ୍କ ସେକ୍ରେଟାରୀଙ୍କ ଉଦ୍ଦେଶ୍ୟରେ କହିଲେ–କଣ ଆପଣଙ୍କ ମତ ? ମୁଁ ଭାବୁଛି ଜଗନ୍ନାଥ ଆମ ବିଭାଗକୁ ଆସନ୍ତୁ । ବେଶ୍ ଗୋଟାଏ ମଜା ହେବ । ମୋର ପ୍ରସ୍ତାବ ହେଉଛି–ଶ୍ରୀକ୍ଷେତ୍ରର ମଠବାଡ଼ି ଯେତେ ଅଛି, ସବୁଗୁଡ଼ିକ ସରକାର ହାତକୁ ନେଇ ଯା'ନ୍ତୁ ଓ ସେଗୁଡ଼ିକୁ ଆଧୁନିକ ହୋଟେଲରେ ପରିଣତ କରଯାଉ । ଫଳରେ ଆମର ଲକ୍ଷ ଲକ୍ଷ ଟୁରିଷ୍ଟଙ୍କ ପାଇଁ ଆଉ ନୂଆ ହୋଟେଲ ନିର୍ମାଣ କରିବା ଆବଶ୍ୟକ ପଡ଼ିବ ନାହିଁ ।

ମନ୍ତ୍ରୀଙ୍କ ମୁଖରୁ ଏତେକ ଶୁଣିବା ମାତ୍ରେ ତାଙ୍କର ତରୁଣ ସେକ୍ରେଟାରୀ କହିଲେ–ସାର୍ ! ପ୍ରସ୍ତାବଟି ଅତି ଚମତ୍କାର । କିନ୍ତୁ ଗୋଟିଏ ବିଶେଷ ଅସୁବିଧା ରହିଛି ।

ମନ୍ତ୍ରୀ ପଚାରିଲେ–କି ଅସୁବିଧା ?

ଅସୁବିଧା କଣ କି ଆଜ୍ଞା । ଅସୁବିଧାଟି ହେଉଛି–ଜଗନ୍ନାଥ ଯଦି ଆମ ଡ଼ିପାର୍ଟମେଣ୍ଟକୁ ଆସନ୍ତି–ତେବେ ଦିନେ ଆମେ ଦେଖିବା ତାଙ୍କ ଦେଉଳରେ ରତ୍ନସିଂହାସନ ଖାଲି ପଡ଼ିଛି । ଜଗନ୍ନାଥ ଉଭାନ୍ । କୋଉ ଦେଶର ଟୁରିଷ୍ଟଙ୍କ ସାଙ୍ଗେ କେତେବେଳେ ଯେ ସେ ଗୁପ୍ତରେ ଚଂପଟ ମାରିବେ–ଆମେ ସେତେବେଳେ ମହା ଅସୁବିଧାରେ ପଡ଼ିଯିବା । ଆଜିକାଲି ଆମେରିକା, ଇଂଲଣ୍ଡ ଆଉ ଫ୍ରାନ୍ସ ଆଦି ଦେଶରେ ଜଗନ୍ନାଥଙ୍କ ଲାଗି ଗୋଟାଏ ମାତ୍‌ଲାମି ବ୍ୟାପିଯାଇଛି । ତା'ଛଡ଼ା.........

ମୁଖ୍ୟମନ୍ତ୍ରୀ ଖଣ୍ଡିଏ ପାନ ପାଟିକି ନେଇ ଖୁବ୍ ସ୍ଥିର ଉତ୍ସୁକତାରେ ପଚାରିଲେ–କଣ ତା ଛଡ଼ା ! ଏଁ ? କଅଣ ତା ଛଡ଼ା ?

.........ତା' ଛଡ଼ା ସାର୍–ଆମ ଡିପାର୍ଟମେଣ୍ଟ ଏ'ଯାବତ୍ ନାବାଳକ ଶିଶୁ ଅବସ୍ଥାରେ ରହିଛି–ଏବଂ ଟୁରିଜିମ୍‌ଟା ଗୋଟାଏ ଶିଳ୍ପ କି କଳା ସେ ନେଇ ମଧ୍ୟ କିଛି ମୀମାଂସା ହୋଇପାରି ନାହିଁ । ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଦେଶାଇ ଏହାକୁ ଏକ କଳା କହୁଥିଲାବେଳେ, ଆମେ ଏହାକୁ ଗୋଟିଏ ଅର୍ଥକାରୀ

ଶିକ୍ଷ ହିସାବରେ ଗଣ୍ୟ କରୁଛୁ । ତେଣୁ ମୁଁ ଭବୁଛି—ଆପାତତଃ ବର୍ତ୍ତମାନ ପାଇଁ ନିର୍ମାଣ ବିଭଗ ଜଗନ୍ନାଥଙ୍କ ଦାୟିତ୍ୱ ନିଅନ୍ତୁ । କାରଣ ଏ ପର୍ଯ୍ୟନ୍ତ ଜଗନ୍ନାଥଙ୍କ ବିଗ୍ରହ ନିର୍ମାଣ ସମ୍ପୂର୍ଣ୍ଣ ହୋଇନାହିଁ । ଯାହା ଶୁଣାଯାଏ—ମୂର୍ତ୍ତି-ଗୁଡ଼ିକ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ଯାହିତାହି ନିର୍ମାଣ କରଯାଇ ପ୍ରତିଷ୍ଠା କରଯାଇଥିଲ ଓ ପରବର୍ତ୍ତୀ କାଳ ଲଗି ଛାଡ଼ିଦିଆ ଯାଇଥିଲ । ବର୍ତ୍ତମାନ ନିର୍ମାଣ ବିଭଗ ସେ ଦାୟିତ୍ୱ ନିଅନ୍ତୁ ।

ପୂର୍ତ୍ତ ଓ ନିର୍ମାଣ ବିଭଗ ମନ୍ତ୍ରୀ ଏ କଥା ଶୁଣିବା ମାତ୍ରେ ଖେପି ଉଠିଲେ । ସେ କହିଲେ—ନିର୍ମାଣ ବିଭଗ କଣ ମୂର୍ତ୍ତି ଗଢ଼ିବାକୁ ଅଛି ନା କଣ ? ଆମେ ତ ଜଗନ୍ନାଥ ସଡ଼କଟିର ଦାୟିତ୍ୱ ନେଇଛୁ । ଅଥଚ ଆଜି ପର୍ଯ୍ୟନ୍ତ ପନ୍ଦର ବର୍ଷ ବିତିଗଲ—ଆମେ ସେ ସଡ଼କଟିକୁ ପୂର୍ଣ୍ଣାଙ୍ଗ କରିପାରିଲୁ ନାହିଁ ।

ମୁଖ୍ୟମନ୍ତ୍ରୀ ହସି ହସି ପଗ୍ଭରିଲେ--କାହିଁକି କରି ପାରିଲେନାହିଁ ?

ପୂର୍ତ୍ତ ଓ ନିର୍ମାଣ ବିଭଗ ମନ୍ତ୍ରୀ ସେହିପରି ଖେପା କଣ୍ଠରେ କହିଲେ—ସେ କଥା କହିବା ବର୍ତ୍ତମାନ ମୋ ପକ୍ଷରେ ସମ୍ଭବ ନୁହେଁ । ତେବେ ଜଗନ୍ନାଥଙ୍କୁ ନେଇ ଆଣି ଥୋଇବା ଆମମାନଙ୍କ ପକ୍ଷରେ ଅତି କଷ୍ଟକର । ଏକେ ତ ଜଗନ୍ନାଥଙ୍କର ହାତ ଗୋଡ଼ ନାହିଁ । ତାଙ୍କର କାନ ମଧ୍ୟ ନାହିଁ । ସେ ଭଗବାନ ହେଲେ ମଧ୍ୟ ଚଳତ୍‌ଶକ୍ତି ଓ ଶ୍ରବଣଶକ୍ତି ବିରହିତ । ଏଭଳି ଗୋଟିଏ ବାଧିତ ଠାକୁରଙ୍କ ଦାୟିତ୍ୱ ଗ୍ରାମଗୋଷ୍ଠୀ ଯୋଜନା ଓ ବାଧିତ ସୁରକ୍ଷଣ ବିଭଗ ନେବା ଉଚିତ । ସେହି ବିଭଗରେ ଆମ ସରକାର ଅସହାୟ ବାଳକବାଳିକା, ଅସହାୟ ଓ ଅକର୍ମଣ୍ୟ ବୃଦ୍ଧବୃଦ୍ଧା, ଦୃଷ୍ଟିହୀନ ଓ ବିକଳାଙ୍ଗ ବ୍ୟକ୍ତିମାନଙ୍କ ରକ୍ଷଣାବେକ୍ଷଣ ଓ ଉନ୍ନତି ବିକାଶ ଲଗି ଗୋଟିଏ ଉପବିଭଗ ଖୋଲିଛନ୍ତି । ସେଥିରେ ଆମର ଅଜସ୍ର ଅର୍ଥ ବ୍ୟୟ ହେଉଛି । ଜଗନ୍ନାଥଙ୍କୁ ବାଧିତ ବା ବିକଳାଙ୍ଗ ଦେବତା ହିସାବରେ ସେହି ବିଭଗ ସଙ୍ଗେ ସଂଯୁକ୍ତ କରଯାଉ । ସେହି ବିଭଗଟି ହିଁ ତାଙ୍କ ଲଗି ବର୍ତ୍ତମାନ ଉପଯୁକ୍ତ ବିଭଗ । ତା' ନ ହେଲେ ତାଙ୍କୁ ଆଦିବାସୀ ଓ ହରିଜନ ବିଭଗ ଦାୟିତ୍ୱରେ ଛାଡ଼ି ଦିଆଯାଉ । ଏବେ ତ ଆଦିବାସୀ ଓ ହରିଜନମାନେ ଜଗନ୍ନାଥଙ୍କୁ ତାଙ୍କର ଖୋଦ୍ ଇଷ୍ଟଦେବତା ବୋଲି ଦାବୀ କରୁଛନ୍ତି । ତା'ଛଡ଼ା ଜଗନ୍ନାଥ ମଧ୍ୟ

ପତିତପାବନ ବୋଲି ବିଖ୍ୟାତ । ପତିତ, ଦଳିତ, ନିର୍ଯ୍ୟାତିତ ଓ ଅବହେଳିତ ଜାତିର ଉତ୍‌ଥାନ ପାଇଁ ମଧ୍ୟ ସେ ବେଶ୍ ସାହାଯ୍ୟ କରିପାରିବେ ।

ପୂର୍ତ୍ତ ଓ ନିର୍ମାଣ ବିଭାଗ ମନ୍ତ୍ରୀଙ୍କର ଏହି ପ୍ରସ୍ତାବ ସମସ୍ତଙ୍କ ମନକୁ ପାଇଲା । ଏବଂ ସମସ୍ତେ "ବାଟ ମିଳିଗଲା" ବୋଲି ଉଚ୍ଚସ୍ୱରରେ କହି କରତାଳି ଦେଲେ । ତା' ପରେ ବହୁ ଯୁକ୍ତିତର୍କ ଓ ଆଲୋଚନା ଚାଲିଲା ବହୁ ସମୟ ଧରି । ଏବଂ ପରିଶେଷରେ ସ୍ଥିର ହେଲା ଯେ ଜଗନ୍ନାଥଙ୍କ ବିଷୟକୁ ନିମ୍ନଲିଖିତ ବିଭାଗମାନେ ବାଣ୍ଟି କରି ବୁଝିବେ । ଯଥା—ଜଗନ୍ନାଥଙ୍କର ସମସ୍ତ ଦୈନନ୍ଦିନ ନୀତି ବୁଝିବେ ଆଦିବାସୀ ହରିଜନ ଓ ଗ୍ରାମମଙ୍ଗଳ ବିଭାଗ । ତାଙ୍କର ଯାନିଯାତ୍ରା କଥା ବୁଝିବେ ଟୁରିଜିମ୍ ବିଭାଗ । ତାଙ୍କ ମନ୍ଦିର ଓ ରାସ୍ତାଦିର ରକ୍ଷଣାବେକ୍ଷଣ ଦାୟିତ୍ୱ ନେବେ ପ୍ରତ୍ନତତ୍ତ୍ୱ ବିଭାଗ । ତାଂକ ସଙ୍ଗେ ସଂଯୁକ୍ତ ସମସ୍ତ ରାସ୍ତା ପୋଲ ଓ କୋଠାବାଡ଼ିର ଦାୟିତ୍ୱ ନେବେ ପୂର୍ତ୍ତ ଓ ନିର୍ମାଣ ବିଭାଗ । ତାଂକର ପଣ୍ଡା, ପଡ଼ିଆରୀ, ସେବକ ଇତ୍ୟାଦିର ଦାୟିତ୍ୱ ନେବେ ଶିକ୍ଷା ଓ ସାଂସ୍କୃତିକ ବିଭାଗ । କେବଳ ନବ-କଳେବର ଓ ପ୍ରତିବର୍ଷର ରଥଯାତ୍ରା ଦାୟିତ୍ୱରେ ରହିବେ ବନବିଭାଗ । ସବୁ କାମ ଠିକ୍‌ଠାକ୍ ଚାଲିଛି କି ନାହିଁ, ତା'ର ଦାୟିତ୍ୱରେ ରହିବେ ରାଜସ୍ୱ ବିଭାଗ ।

କହିବା ବାହୁଲ୍ୟ, ଏହି ମର୍ମରେ ଗୋଟିଏ ପ୍ରସ୍ତାବ ମଧ୍ୟ ବିଧାନସଭାରେ ଗୃହୀତ ହୋଇଗଲା । ଏବଂ ସେହି ବିଧାନସଭାରେ ମଧ୍ୟ ତା' ସାଙ୍ଗକୁ ଆଉ ଗୋଟିଏ ପ୍ରଗତିଶୀଳ ପ୍ରସ୍ତାବ ଆଗତ ହୋଇ ସର୍ବସମ୍ମତି କ୍ରମେ ଗୃହୀତ ହୋଇଗଲା । ତା' ହେଉଛି—ମନ୍ଦିରରୁ ପଣ୍ଡା, ପଡ଼ିହାରୀମାନଙ୍କର ସମସ୍ତ ଦାବୀ ରଦ୍ଦ କରାଯାଇ ସେମାନଙ୍କୁ ୧ମ, ୨ୟ, ୩ୟ ଓ ଚତୁର୍ଥ ଶ୍ରେଣୀର ସରକାରୀ କର୍ମଚାରୀରୂପେ ନିଯୁକ୍ତ ଦିଆଯାଉ ଏବଂ ଠାକୁର ରାଜାଙ୍କର ସମସ୍ତ ଅଧିକାରକୁ ଉଚ୍ଛେଦ କରାଯାଉ । ମୁଖ୍ୟମନ୍ତ୍ରୀ ଠାକୁର ରାଜାଙ୍କ କାମ ଚଳାନ୍ତୁ । ରଥ ଉପରେ ଛେରାପହଁରା ବି କରନ୍ତୁ ।

ମୂଳରୁ ମୂଳରୁ ବିରୋଧୀଦଳର କେତେକ ବ୍ୟକ୍ତି ଏଥିରେ ଗୁଁଗାଁ କରୁଥିଲେ । ମାତ୍ର ବିରୋଧୀଦଳର ନେତା ଓ ଉପନେତାମାନେ କହିଲେ—ଛାଡ଼ ହେ ! ଆମେ

ବିରୋଧ କଲେ ଅବା କୋଉ ଆମ କଥା ରହିବ ? ସେମାନେ ତ ସଂଖ୍ୟା-ଗରିଷ୍ଠ । ତା'ଛଡ଼ା, ଆମ ଭିତରେ ବା ସେମିତି ଏକତା କାହିଁ ? ଆମର ତ ଗାଈ ଠାଏ, ବାଛୁରୀ ଠାଏ । ସମସ୍ତେ ବର୍ତ୍ତମାନ ମାନିଯାଅ । ଦେଖ କଣ ହେଉଛି—କୋଉ ପାଣି କୁଆଡ଼େ ଯାଉଛି । ପୃଥ୍ୱୀ ତ ଅଥିର ଜଣାଯାଉଛି । କେତେବେଳେ କୋଉ କଥା । ଯାହା ତେଣିକି ଭଲମନ୍ଦ ହେବ ସରକାର ଉପରେ ଯିବ—ଆମର ବସିଯାଅ ବର୍ତ୍ତମାନ ତଳକୁ ମୁହଁପୋତି ।

ସରକାରୀ ଦଳର ସବୁ ପ୍ରସ୍ତାବ ପାସ୍ ହୋଇଗଲା । ଉପୁକ୍ତ ବିଭାଗମାନେ ଯେଝାର ବିଭାଗରେ ଜଗନ୍ନାଥଙ୍କ ପାଇଁ ସ୍ୱତନ୍ତ୍ର ଦପ୍ତରମାନ ଖୋଲିଦେଲେ ଓ ଜଣେ ଲେଖାଁ ଜଏଣ୍ଟ ସେକ୍ରେଟାରୀ ରଖିଦେଲେ ।

ଏ ଘଟଣାର ଅଳ୍ପ ଦିନ ପରେ, ମାନେ ଦିନ କେତୁଟା ପରେ, ଦିନେ ଅକସ୍ମାତ ବଡ଼ଦେଉଳରୁ ଗୋଟାଏ ବିରାଟ ପଥର ଘଡ଼ ଘଡ଼ ନାଦ କରି ତଳେ ଖସିପଡ଼ିଲା ଓ ତଳେ ପଡ଼ି ଭର୍ଗି ଚୁର୍‌ମାର୍ ହୋଇଗଲା । ମନ୍ଦିର ଭିତରେ ପଣ୍ଡା ପଡ଼ିହାରୀଙ୍କ ଭିତରେ ଗୋଟାଏ ହାଲହୋଳି ପଡ଼ିଗଲା । ସେମାନେ ପୂର୍ବରୁ ନିଜ ନିଜ ଅଧିକାର କାଏମ ରଖିବା ଲାଗି ସରକାର ବିରୋଧରେ ଗୋଟାଏ ଆନ୍ଦୋଳନ କରିବା ଲାଗି ସଜବାଜ ହେଉଥିଲେ । ବର୍ତ୍ତମାନ ଏହି ପଥର ଖସିବା ଅବ୍ୟାପାରଟି ସେମାନଙ୍କୁ ଗୋଟିଏ ଗଣ ଆନ୍ଦୋଳନ ସୃଷ୍ଟି କରିବା ଲାଗି ଅଲୌକିକ ପ୍ରେରଣା ଯୋଗାଇ ଦେଲା । କାରଣ ଜଗନ୍ନାଥଙ୍କ ରାଜ୍ୟର ଲୋକମାନେ ମଧ୍ୟ ଏଇ ପଣ୍ଡା ପଡ଼ିହାରୀଙ୍କ ପ୍ରତି ଭାରି ବିରକ୍ତ ହୋଇ ଯାଇଥିଲେ । ତେଣୁ ପଣ୍ଡାମାନେ ନିଜ ଅଧିକାର ସାବ୍ୟସ୍ତ କରିବାକୁ ଆନ୍ଦୋଳନ ଲାଗି ବଳ ବା ଉତ୍ସାହ ପାଉ ନ ଥିଲେ । ପଥରଟି ଖସିବା ଫଳରେ ସେମାନଂକ ଛାତିରେ ବଳ ପଶିଲା । ତା'ପରେ ସେମାନଂକ ଭିତରୁ କେହି କେହି ଆଉ ଗୋଟିଏ ଅଶୁଭ ଶକୁନ ଘଟିବାକୁ ଅପେକ୍ଷା କରି ରହିଲେ । ମାତ୍ର ବେଶି ଦିନ ଅପେକ୍ଷା କରିବାକୁ ପଡ଼ିଲା ନାହିଁ । ଦିନେ ଦେଖାଗଲା—ଗୃଧିନୀଟାଏ ନୀଳଚକ୍ର ଉପରେ ବସି ତାର ଦୁଇପକ୍ଷ ମେଲାଇ ଖରା ପୋଉଁଛି ଏବଂ ବିକଟାଳ ସ୍ୱରରେ ବୋବେଇ ଲାଗିଛି । ଚାରିଆଡ଼େ ହାଲହୋଳି ପଡ଼ିଗଲା । ପଣ୍ଡା ପଡ଼ିହାରୀମାନେ

ଠାକୁରଙ୍କର ଗୁଣାତ୍ମକ ମହିମା ପ୍ରଖ୍ୟାପନ କରି ପାରନ୍ତି ନାହିଁ । କିନ୍ତୁ କିଛି କିଛି ଅଶୁଭ ଶକୁନ ଦେଖାଗଲେ ସେମାନଙ୍କର ପାଟି ଖୋଲିଯାଏ । ସେମାନଙ୍କର କଣ୍ଠସ୍ୱର ବଜ୍ରନିର୍ଘୋଷକୁ ବଳିଯାଏ । ସେମାନେ ଉଚ୍ଚସ୍ୱରରେ ଚିଲନ୍ତି—ଆଉ ଗ୍ରରିଆଡ଼େ ଗୋଟାଏ ଆତଙ୍କ ଖେଳାଇ ଦିଅନ୍ତି । ସେମାନେ ତାହା ହିଁ କଲେ ଓ ପ୍ରଗ୍ରର କଲେ ଯେ ରାଜ୍ୟକୁ ବହୁ ବିପଦ ଘନେଇ ଆସୁଛି । ସାରା ଦେଶରେ ମଧ୍ୟ ଘୋର ବିପର୍ଯ୍ୟୟ ଦେଖାଯିବ । ବହୁ ଲୋକ କ୍ଷୟ ହେବ । ମହାମାରୀ, ଗୃହଯୁଦ୍ଧ, ବୈଦେଶିକ ଆକ୍ରମଣରେ ଦେଶ ଛାରଖାର ହୋଇଯିବ । ରାଜ୍ୟରେ ନାହିଁ ନ ଥିବା ବନ୍ୟା, ବାତ୍ୟା ଓ ମରୁଡ଼ି ଘୋଟି ଆସିବ । ହଇଜା, ବସନ୍ତ ଓ ମସ୍ତିଷ୍କଜ୍ୱରରେ ଲକ୍ଷ ଲକ୍ଷ ଲୋକ ମରି ପଡ଼ିବେ—ଚଉଷଠୀ ଯୋଗିନୀ କିଳିକିଳା ନାଦ କରି ଦିନଗତି ମଣିଷକୁ ଖାଇବେ ଓ ଟହଟହ ହୋଇ ହସିବେ—ଲଙ୍ଗଳା ହୋଇ ନାଚିବେ । କହିବା ବାହୁଲ୍ୟ—ଏହିପରି ଘଟଣାମାନ ମଧ୍ୟ ଦୁଇ ତିନିମାସ ଭିତରେ ରାଜ୍ୟରେ ଘଟିବାକୁ ଆରମ୍ଭ କଲା । ଖବରକାଗଜବାଲାଏ ରଡ଼ି ଛାଡ଼ିଲେ । କାରଣ ସେମାନଙ୍କୁ ସମ୍ବାଦ ଖୋରାକ ମିଳିଗଲା । ରାଜ୍ୟରେ ନାହିଁ ନ ଥିବା ବନ୍ୟା ମରୁଡ଼ିରେ ସବୁ ଜଳିଗଲା—ପ୍ରଚଣ୍ଡ ବାତ୍ୟାରେ ଦୁଇ ସହସ୍ର ଗ୍ରାମ ଉଡ଼ିଗଲା—ସମୁଦ୍ର ଜୁଆର ମାଡ଼ି ଆସିବା ଫଳରେ ଉପକୂଳବର୍ତ୍ତୀ ଅଞ୍ଚଳର ପ୍ରାୟ ଗ୍ରରି-ଶହ ଛତିଶିଟି ଗ୍ରାମ ଓ ଦଶହଜାର ଲୋକ ସମୁଦ୍ରଗର୍ଭରେ ଲୀନ ହୋଇ-ଗଲେ । ପ୍ରକାଶ ଥାଉ କି—ସେ ରାଜ୍ୟରେ ଏକାଥରକେ ଏକାବେଳକେ ମରୁଡ଼ି, ବନ୍ୟା, ବାତ୍ୟା ଓ ଜୁଆର ହେଲା । ହଇଜା ଓ ମସ୍ତିଷ୍କଜ୍ୱରରେ ମଧ୍ୟ ବହୁଲୋକ ମରିବାକୁ ଆରମ୍ଭ କଲେ । ଏହି ସମୟରେ ରାଜନୀତି କରୁଥିବା ଲୋକମାନଙ୍କୁ ବଡ଼ ସୁବିଧା ମିଳିଗଲା । ସରକାରୀ ଦଳ ଓ ବିରୋଧୀଦଳ, ଉଭୟପକ୍ଷର ରାଜନୀତିକ ଟାଉଟରମାନେ ଏହି ସୁଯୋଗକୁ ଅପେକ୍ଷା କରୁଥିଲେ । ସେମାନେ ଲୋକଙ୍କ ସାହାଯ୍ୟ ପାର୍ଶ୍ୱରୁ ଯାହା ମାରିବାର ମାରି ଲାଗିଲେ ଏବଂ ସରକାର ବିରୋଧରେ ପାଟିତୁଣ୍ଡ ଆରମ୍ଭ କରିଦେଲେ । ଏହି ସମୟରେ ମଧ୍ୟ ସରକାରୀ ଦଳରେ ଗୃହଯୁଦ୍ଧ ଆରମ୍ଭ ହୋଇଗଲା । ସରକାରୀ ଦଳର କେତେକ ଅସନ୍ତୁଷ୍ଟଗୋଷ୍ଠୀ ତାଙ୍କ ଆଶାନୁ-ରୂପ ଲାଭ ବା ପାଉଣା ବା ସ୍ଥାନ ନ ପାଇବାରୁ ନେତୃତ୍ୱର ପରିବର୍ତ୍ତନ

ପାଇଁ ଗୋଳ ଆରମ୍ଭ କରିଦେଲେ । ମୁଖ୍ୟମନ୍ତ୍ରୀ ହେବାକୁ ଚାହୁଁଥିବା କେତେକ ମନ୍ତ୍ରୀ ମଧ୍ୟ ଏହି ଅସନ୍ତୁଷ୍ଟଗୋଷ୍ଠୀକୁ ମତାଇ ଲାଗିଲେ । ବିରୋଧୀ ଦଳର କେତେକ ନେତା ମଧ୍ୟ କୌଣସି ପ୍ରକାରେ ହେଲେ ସରକାର ଭାଙ୍ଗିଯାଉ ବୋଲି କାମନା କରି ଏହି ଅସନ୍ତୁଷ୍ଟ ଗୋଷ୍ଠୀ ସଙ୍ଗେ ଭିତରେ ଭିତରେ ହାତମିଳାଇ ଲାଗିଲେ । ରାଜ୍ୟରେ ମହାଗୋଳ ଉପସ୍ଥିତ ହେଲା । ଶାସନକଳ ହୁଗୁଳି ପଡ଼ିଲା । ସରକାରୀ କର୍ମଚାରୀମାନଙ୍କୁ କଟେବାର ପଡ଼ିଗଲା । ଚାରିଆଡ଼େ ଅରାଜକତାର ବିଭିନ୍ନ ଶକୁନ ଦେଖାଦେଲା ।

ଏଣେ ବଡ଼ଦେଉଳରେ ଠାକୁରମାନଙ୍କ ନୀତି ମଧ୍ୟ ବିଭ୍ରାଟ ଧରିଲା । ମନ୍ଦିରର ସେବା ପୂଜା ସରକାରଙ୍କ ପ୍ରତ୍ୟକ୍ଷ ଦାୟିତ୍ୱାଧୀନ ହୋଇଥିବାରୁ ସରକାରୀକଳ ହୁଗୁଳିବା ଫଳରେ ଦିଅଁମାନଙ୍କ ନୀତି ମଧ୍ୟ ହୁଗୁଳା ଧରିଲା । ଗୋଟିଏ ଦିନର ନୀତି ସରିବାକୁ ଚାରିଦିନ ଲାଗିଲା । ଦିଅଁମାନେ ଭଲ କରି ଗାଧୋଇ ପାରିଲେ ନାହିଁ—ଜଳଖିଆ ବା ଭୋଜନ କରିପାରିଲେ ନାହିଁ—ଶୋଇ ପାରିଲେ ନାହିଁ । ବଡ଼ଦେଉଳ ବେଢ଼ାରେ ବଡ଼ଠାକୁରଙ୍କୁ ଆଶ୍ରା କରି ପଡ଼ିରହିଥିବା ଦେବଦେବୀମାନେ, ଚଣ୍ଡିଚାମୁଣ୍ଡାମାନେ ଓ ଭୂତପ୍ରେତାଦି ଓ ମୃତଭକ୍ତମାନଙ୍କ ଆତ୍ମାମାନେ ବଡ଼ ହଇରଣ ହୋଇଗଲେ । ସେମାନେ ଦିନେ ରାତି ଅଧରେ ଏକାଠି ହୋଇ ଜଗନ୍ନାଥଙ୍କ ପାଖକୁ ଆସି ଗରୁଡ଼ଖମ୍ବ ପାଖେ ରୁଣ୍ଡ ହୋଇ ବିଚାର କଲେ—ଏ ପରିସ୍ଥିତିରେ କ'ଣ କରାଯିବ ! ଆମେ ଏଠି ଆଉ କିଛି ଦିନ ରହିଲେ ଆମ ଦଫା ରଫା ହୋଇଯିବ । ଏ ଭାଇଭଉଣୀ-ମାନଙ୍କର କ'ଣ ଅଛି ? ସେମାନେ ତ ହେଲେ ସ୍ୱୟଂ ଭଗବାନ । ସେମାନେ ଭାବିଲେ ଖାଉଛନ୍ତି—ଭାବିଲେ ଖାଉ ନାହାନ୍ତି । ଭାବିଲେ ଶୋଉଛନ୍ତି—ଭାବିଲେ ଅନିଦ୍ରା । ଭାବିଲେ ଯାଉଛନ୍ତି—ଭାବିଲେ ରହୁଛନ୍ତି—ଭାବିଲେ ହସୁଛନ୍ତି—ଭାବିଲେ କାନ୍ଦୁଛନ୍ତି । ସେମାନେ ଭାବିଲେ ଏଠି ରହିବେ—ଆଉ କୋଉଠିକି ଚାଲିଯିବେ—ଆମେରିକା କି ଇଂଲଣ୍ଡ କି ଫ୍ରାନ୍ସ । କିନ୍ତୁ ଆମେ କ'ଣ କରିବା ? ଉପସ୍ଥିତ ଦେବଦେବୀ, ଚଣ୍ଡିଚାମୁଣ୍ଡା ଓ ଭକ୍ତମାନଙ୍କ ଆତ୍ମାମାନେ ନିଜ ନିଜ ଭିତରେ ଢେର୍‌ବେଳ ଯାଏ ଉଚ୍ଚବାଚ କରି ଆଲୋଚନା କଲେ । କିନ୍ତୁ କିଛି କୂଳକିନାରା ପାଇଲେ ନାହିଁ । କେବଳ ପାଟିତୁଣ୍ଡ ହୈହଲ୍ଲା ହା-ହୁତାଶ ଚାଲିଥାଏ । ଏ ପାଟିତୁଣ୍ଡ ଶୁଣି

ଜଗନ୍ନାଥଙ୍କ ବାହନ ବିହଙ୍ଗେନ୍ଦ୍ର ଶ୍ରୀମାନ୍ ଗରୁଡ଼ ତାଙ୍କ ଖମ୍ବ ଉପରେ ଥାଇ ସମବେତ ଦେବଦେବୀ ଚଣ୍ଡିଗ୍ରମୁଣ୍ଡାଙ୍କ ଉଦ୍ଦେଶ୍ୟରେ କହିଲେ–

ଏ ତୁମେମାନେ କିମ୍ପାଇ ଏତେ ଶୋକ କରୁଅଛ ? ଠାକୁରମାନେ ଆଜି ବହୁତ ବିଳମ୍ବରେ ପହୁଡ଼ ହୋଇଛନ୍ତି, ଏକଥା କି ତୁମ୍ଭମାନଙ୍କୁ ଜ୍ଞାତବ୍ୟ ନାହିଁ ? ତୁମ୍ଭମାନଙ୍କ ପାଟିଗୋଳରେ ପହୁଡ଼ ଭାଙ୍ଗିଯିବ । ଆମ୍ଭେ ଶ୍ରୀମୁଖରୁ ଭର୍ତ୍ସନା ଖାଇବୁ । ଏ ତୁମ୍ଭେମାନେ ଗୋଳ ବନ୍ଦ କର । ଏ ପୃଥୀକି ଅପାର କାଳ ଘୋଟିଲାଣି । ଏ ମଣ୍ଡଳରେ କେହି ଥାଏ ପଡ଼ିଲା ଭଳି ଜଣା ପଡ଼ୁନାହିଁ । ଲେକତାପନ ନାମେକ ଦୈତ୍ୟ ଜଣେ ଜାଗ୍ରତ ହୋଇ କୋକୁଆ ରୂପରେ ସବୁ ଜନମାନଙ୍କ ହୃଦ କନ୍ଦରରେ ପ୍ରବେଶ କରି ନାନାଦି ଅନର୍ଥ ଭିଆଉଅଛି । ସମସ୍ତଙ୍କ ମୁଣ୍ଡରେ ଖଳବଳ ପଶିଗଲେଣି । ମହା କନ୍ଦଳ ସୃଷ୍ଟି ହୋଇବ । ଏ ଭୁବନମଣ୍ଡଳ ନଷ୍ଟ ହୋଇବ । ମହାପ୍ରଭୁମାନେ ଅତି ନିକଟରେ ପାତାଳି ହୋଇଯିବେ । ତୁମ୍ଭେମାନେ ଆଜହୁଁ ନିଜ ନିଜର ବେବସ୍ଥା କର ।

ବିଷ୍ଣୁବାହାନ ଗରୁଡ଼ଙ୍କଠାରୁ ଏହି ଭବିଷ୍ୟାନ୍ତ ଶୁଣି ଦେବଦେବୀ ଓ ଚଣ୍ଡି-ଗ୍ରମୁଣ୍ଡାମାନେ ଆତଙ୍କରେ ତ୍ରାହି ତ୍ରାହି ବୋଲି ଡାକ ଛାଡ଼ିଲେ । ଏହି ସମୟରେ ଗମ୍ଭୀର କବାଟ ଖୋଲିଗଲା । ଏବଂ ତା' ଭିତରୁ ଲକ୍ଷ୍ମୀ ବାହାରି ଆସିଲେ । ସେ ନିଦ ମଳମଳ ଆଖିରେ ସମସ୍ତଙ୍କୁ ଗ୍ରହିଁ ପଗ୍ରରିଲେ–

ଆରେ ବତ୍ସବତ୍ସାମାନେ । ଏ ତୁମ୍ଭେମାନେ କି ସକାଶୁ ଶୋକ କରୁଅଛ ? କିମ୍ପାଇ ବୋବାଳି ଛାଡ଼ୁଅଛ ?

ସମସ୍ତେ ଏକ ସ୍ୱରରେ କହିଲେ–

"ମା ! ଆମ୍ଭେମାନେ ଶ୍ରୀମାନ୍ ଗରୁଡ଼ଙ୍କ ତୁଣ୍ଡରୁ ଯାହା ଶୁଣିଲୁ, ସେଥିରୁ ଆମ୍ଭମାନଙ୍କ ହୃଦକମଳ କମ୍ପୁଅଛି । ଆମ୍ଭେମାନେ କି ଉପାୟ କରିବୁ ? କେଉଁଆଡ଼େ ଯିବୁ ? ଆମକୁ ତୁମର ପଣତ ତଳେ ଘୋଡ଼ାଇ ରଖି ଶରଣ ଦିଅ ମା ! ଆମ୍ଭେମାନେ ଏଠାରେ ରହି ବଳିଆରଭୁଜ ତଳେ ଜୀବନଯାପନ କରି ନାବାଳକ ବାଳିକା ପ୍ରାଏକ ତୁମ୍ଭମାନଙ୍କ ଅନ୍ନରେ ଓ ଆଶ୍ରାରେ ପ୍ରତି-ପାଳିତ ହୋଇ ଆସୁଛୁ । ଆମ୍ଭେ ବ୍ରତମାନକୁ କୁଆଡ଼େ ଯିବୁ ? କି ଉପାୟରେ ବଂଚିବୁ ?

ଲକ୍ଷ୍ମୀ ସେମାନଙ୍କୁ ପ୍ରତ୍ୟେକଙ୍କୁ ଆଲିଙ୍ଗନ ଓ ଅଭୟ ଦେଇ କହିଲେ– ବତ୍ସବତ୍ସାମାନେ ! କିଛିମାତ୍ର ଭୟ ନ କର । ଶୋଚନା ନ କର । ଲୋକତାପନ ଦୈତ୍ୟ ବର୍ତ୍ତମାନ ଅମରମର୍ତ୍ତ୍ୟ ହୋଇଅଛି । ଜନମାନେ ସେହି ବଳରେ ବଳୀୟାନ୍ ହୋଇ ଚନ୍ଦ୍ର ସୂର୍ଯ୍ୟ ମାନୁନାହାନ୍ତି । ଧର୍ମାଧର୍ମ ବିଗ୍ରହ୍ମ ନାହାନ୍ତି । ଠାକୁର ଦେବତାଙ୍କୁ ଅବହେଳା କରୁଛନ୍ତି । ସେମାନେ ସମସ୍ତେ ନିଜ ନିଜର ସ୍ୱାର୍ଥ, ସୁଖ ଓ ଅଧିକାର ନେଇ ମାତିଛନ୍ତି । ଖୁବ୍ ଶୀଘ୍ର ସେମାନେ ପରସ୍ପର ଭିତରେ ଏଥିଲାଗି ହଣାହଣି ଓ ମରାମରି ହୋଇ ନାଶ ଯିବେ । ଖୁବ୍ ଶୀଘ୍ର ନୂତନ ପୃଥ୍ୱୀ ସର୍ଜନା ହେବ । ତୁମ୍ଭେମାନେ ନିଶ୍ଚିନ୍ତ ରୁହ–କିଛିକାଳ କଷ୍ଟେ ମଷ୍ଟେ ଚଳିଯାଅ । ମହାକାଳ ଓ ମହାକାଳୀ ତାଙ୍କ କାର୍ଯ୍ୟରେ ଲାଗି ଗଲେଣି ।

ସକାଳ ହୋଇ ଆସୁଥିଲା । ମହାପ୍ରଜ୍ଞ ଶ୍ରୀଳ ଶ୍ରୀଯୁକ୍ତ କାକଭୂଷଣ୍ଡ ତାଙ୍କର ସହଚର ସହଚରୀମାନଙ୍କୁ ନେଇ ଆନନ୍ଦବଜାରସ୍ଥିତ ବଟ ବୃକ୍ଷ ଉପରେ ବସି କା......କା......ରବରେ ମନ୍ଦିରାଭ୍ୟନ୍ତରକୁ ନିନାଦିତ କରି ପ୍ରାକ୍ ସୂର୍ଯ୍ୟୋଦୟର ବାର୍ତ୍ତା ଶୁଣାଇଲେ । ଦେବଦେବୀ, ଚଣ୍ଡିଗ୍ରମଣ୍ଡା ଓ ମୃତଭକ୍ତମାନଙ୍କ ଆତ୍ମାମାନେ ସେଇଠାରେ ମା' ଲକ୍ଷ୍ମୀ ଓ ଠାକୁରମାନଙ୍କ ଉଦ୍ଦେଶ୍ୟରେ ଆସନ୍ତା ସକାଳର ପ୍ରଣାମ ଜଣାଇ ଯେଝାର ମନ୍ଦିର ଭିତରକୁ ଗୁଞ୍ଜିଗଲେ ଓ ପୁନଶ୍ଚ ପ୍ରସ୍ତର ରୂପରେ ସ୍ଥିର ହୋଇ ବସି ରହିଲେ । କହିବା ବାହୁଲ୍ୟ ଯେ ରାତି ଅନିଦ୍ରାବଶରୁ ଓ ପାହାନ୍ତା ପହର ଶୀତଳ ପବନ ଲାଗି ଦେବଦେବୀ ଚଣ୍ଡିଗ୍ରମଣ୍ଡା ଓ ପ୍ରେତାତ୍ମମାନଙ୍କୁ ସଙ୍ଗେ ସଙ୍ଗେ ନିଦ ହୋଇଗଲା ।

ରାତ୍ରି ତଥାପି ପାହି ନାହିଁ । କାକରିଆ ଅନ୍ଧାର ଟିକିଏ ଗାଢ଼ ଦିଶୁଛି । କାକଭୂଷଣ୍ଡୀ ଓ ତାଙ୍କର ସହଚରସହଚରୀମାନେ କା କା ରବ ବନ୍ଦ କରି ଊଷାକାଳୀନ ସନ୍ଧ୍ୟାଜପରେ ନିମଗ୍ନ ହୋଇଗଲେ । ଏହି ସମୟରେ କଳ୍ପବୃକ୍ଷରେ ଗୋଟିଏ ନିଘଞ୍ଚ ଡାଳ ଉପରେ ବସି ଘୁମାଉଥିବା, କିମ୍ବା ଆଖି ବୁଜି ରାମନାମ ଜପ କରୁଥିବା ମହାବୀର ମହାଭକ୍ତ ବାୟୁନନ୍ଦନ ଶ୍ରୀମଦ୍ ହନୁମାନଜୀ ହଠାତ୍ କିଞ୍ଚିତ୍ ଦିବ୍ୟସ୍ପନ୍ଦନ ଅନୁଭବ କରି ଅଭିବିତ ମନରେ ଆଖି ଖୋଲି ତଳକୁ ଚାହିଁ ଦେଖିଲେ ଯେ ସର୍ବାଗ୍ରେ ସୁଦର୍ଶନ, ତାଙ୍କ

ପଛରେ ବଳଭଦ୍ର–ତାଙ୍କ ପଛରେ ସୁଭଦ୍ରା ଓ ସର୍ବାଶେଷରେ ସ୍ୱୟଂ ଜଗନ୍ନାଥ ମନ୍ଦିର ଭିତରୁ ଚୁପ୍‌ଚାପ୍ ବାହାରି ଆସି ବିମଳାଙ୍କ ମନ୍ଦିର ପାଖକୁ ଗଲେ । ଏବଂ ଏଠାରେ ଦୁଇପଟକୁ ବିଶାଳ ପକ୍ଷ ଦ୍ୱୟ ବିସ୍ତାର କରି କାତ ମୋଡ଼ି ଅପେକ୍ଷମାଣ ଗରୁଡ଼ଙ୍କ ପିଠି ଉପରେ ଜଣକ ପରେ ଜଣେ ବସିବାର ଉପକ୍ରମ କଲେ ।

ଶ୍ରୀମଦ୍ ହନୁମାନଜୀ ଏହା ଦେଖି ନିଃଶବ୍ଦରେ କଳ୍ପବୃକ୍ଷରୁ ଓହ୍ଲାଇ ଏକା ଲମ୍ଫକେ ଗରୁଡ଼ଙ୍କ ପାଖରେ ପହୁଞ୍ଚିଲେ । ହନୁମାନକୁ ଦେଖି ଜଗନ୍ନାଥଙ୍କ କଳାଶ୍ରୀମୁଖରେ ସାମାନ୍ୟ ହାସ୍ୟ ଫୁଟିଉଠିଲା । ମାତ୍ର ବଳଭଦ୍ର ମୁହଁକୁ ହାଣ୍ଡି କରି ବସିଥାନ୍ତି । ତାଙ୍କୁ ବଡ଼ ଅସୁବିଧା ଓ ଅସ୍ୱସ୍ତି ଲାଗୁଥାଏ । ଲକ୍ଷ୍ମୀ ଓ ବିମଳାଦି ଜଗନ୍ନାଥବଲ୍ଲଭମାନଙ୍କଠାରୁ ସୁଭଦ୍ରା ନିଃଶବ୍ଦରେ ବିଦାୟ ମାଗୁଥାନ୍ତି । ହନୁମାନ ପ୍ରଣିପାତ କରି କ'ଣ କହିବାକୁ ଯାଉଛନ୍ତି– ତାଙ୍କୁ କହିବାକୁ ନ ଦେଇ ଜଗନ୍ନାଥ କହିଲେ–

ବତ୍ସ ହନୁମାନ ! ଆମ୍ଭେମାନେ ବର୍ତ୍ତମାନ ଆମେରିକା ଯାଉଛୁ । ସେଠାରେ ସାନ୍‌ଫ୍ରାନ୍‌ସିସ୍କୋ ଠାରେ ଆମ୍ଭ ସକାଶେ ଯେଉଁ ଶ୍ରୀମନ୍ଦିର ନିର୍ମିତ ହୋଇଛି ଆମ୍ଭେମାନେ ସେଇଠାରେ ଅବସ୍ଥାନ କରିବୁ । ନାରଦ ଓ ସନକ ସନତାଦି ମୁନିଗଣ ସେଇ ଶ୍ୱେତଦ୍ୱୀପରେ ଆମ୍ଭର ଅପେକ୍ଷାରେ ଅଛନ୍ତି । ସେଠାକୁ ଯାଇ ଆମ୍ଭେ ଆଉ ସମସ୍ତଙ୍କ ଲାଗି ସୁବିଧାଜନକ ବନ୍ଦୋବସ୍ତ କରି ନାରଦଙ୍କୁ ଏଠାକୁ ପଠାଇବୁ । ତୁମ୍ଭେ ସ୍ୱୟଂ ଏହି ମନ୍ଦିର ଭିତରେ ଆମ୍ଭଙ୍କୁ ଆଶ୍ରାକରି ରହିଥିବା ଅନ୍ୟାନ୍ୟ ଦେବାଦେବୀ, ଚଣ୍ଡିଗ୍ରମଣ୍ଡା ଭୂତପ୍ରେତାଦି ଓ ପୂତାତ୍ମା-ମାନଙ୍କୁ ସ୍ୱୀୟ ସ୍କନ୍ଧରେ ବହନ କରି ସପ୍ତସମୁଦ୍ର ପାରହୋଇ ସେଠାରେ ପହୁଁଚିବ । ଆମ୍ଭେ ଏଥର ଶ୍ୱେତଦ୍ୱୀପରେ ଅବସ୍ଥାନ କରି ଦିବ୍ୟଲୀଳା ସଂପାଦନା କରିବୁ । ଏ ରାଜ୍ୟର ଅଧିବାସୀମାନେ ତାଂକ ଜନଗଣମାନଙ୍କୁ ନେଇ ଚଳନ୍ତୁ । ଏ ରାଜ୍ୟର ଜନଗଣ, ଜନସେବକ ଓ ଜନନେତାମାନେ କାଲି ସକାଳୁ ଏହି ରତ୍ନସିଂହାସନକୁ କିନ୍ତୁ ଶୂନ୍ୟ ଦେଖିବେ ନାହିଁ । ସେମାନେ ମୋର ଦାରୁବିଗ୍ରହକୁ ନେଇ ଯେପରି ଇଚ୍ଛା ସେପରି କାରବାର କରୁଥାନ୍ତୁ । ...ଆଥ ବତ୍ସ ! ପୂର୍ବଦିଗ ଫର୍ଚ୍ଚା ଦିଶିଲାଣି । ଚାଲ ଗରୁଡ଼ ! ଉପରକୁ ଉଠ ।

ଆଦେଶ ପାଇବା ମାତ୍ରେ ବିହଙ୍ଗେନ୍ଦ୍ର ଗରୁଡ଼ ବାରେକ ମାତ୍ର ପକ୍ଷ ସଞ୍ଚାଳନରେ ଉପରକୁ ଉଠିଗଲେ ଏବଂ ମୁହୂର୍ତ୍ତକ ମଧ୍ୟରେ ଆକାଶରେ କେଉଁଆଡ଼େ ଅଦୃଶ୍ୟ ହୋଇଗଲେ ।

ଅତଃପର ବୀରକୁଳାଗ୍ରଣୀ ଓ ଭକ୍ତକୁଳ ମଉଡ଼ମଣି ଶ୍ରୀମଦ୍ ହନୁମାନଜୀ ଏକା ଲମ୍ଫକେ ଶ୍ରୀମନ୍ଦିର ଉପରକୁ ଉପନୀତ ହେଲେ ଏବଂ ନୀଳଚକ୍ର ତଳେ ଦଧିନଉତି ଉପରେ ଏକ ବିଷର୍ଣ୍ଣ ଗମ୍ଭୀରତାରେ ବସି ତହିଁ ଉପରୁ ଜଗନ୍ନାଥ ଶୂନ୍ୟ ଏହି ବିଶାଳ ଅଚେତନ ଓ ହତଭାଗ୍ୟ ଭୂଖଣ୍ଡକୁ ନିରୀକ୍ଷଣ କରୁ କରୁ ଘନଘନ ନିଃଶ୍ୱାସ ନିକ୍ଷେପ କରିବାକୁ ଲାଗିଲେ ।

ବହୁ ଦୂରରୁ ସମୁଦ୍ର ଆରପଟେ ପୂର୍ବାଶାର ଚକ୍ରବାଳ ଭିତରୁ ଏକ ନୂତନ ଦିନର ସୂର୍ଯ୍ୟ ଉଦିତ ହେବା ଲାଗି ପ୍ରସ୍ତୁତ ହେଉଥିଲା । ଏବଂ ସେହି ପ୍ରସ୍ତୁତି ପର୍ବର ଭୂମିକା ରଚନା କରି ଚକ୍ରବାଳ ରକ୍ତିମ ହୋଇ ଉଠୁଥିଲା । ଶ୍ରୀମଦ୍ ହନୁମାନଜୀଂକ ବିଷର୍ଣ୍ଣତା କିନ୍ତୁ କ୍ରମଶଃ ବର୍ଦ୍ଧି ଚାଲିଥିଲା । ସେ ଭାବୁଥିଲେ, ତା'ହେଲେ ଆଜିର ଏଇ ସୂର୍ଯ୍ୟଦେବ ଉଦିତ ହେଲା ପରେ କାହାର ବନ୍ଦାପନା କରି ନିଜକୁ ଧନ୍ୟ ମନେକରିବେ ?

ହନୁମାନଜୀଂକର ମହାଦୀର୍ଘ ଲାଙ୍ଗୁଳଟି ଚରମ ବିଷାଦର ପ୍ରତୀକ ରୂପେ ମନ୍ଦିର ଚୂଡ଼ାରୁ ନିମ୍ନଦେଶକୁ ଲମ୍ବିଆସି କ୍ଳାନ୍ତଭାବେ ମନ୍ଦିର ପ୍ରାଙ୍ଗଣକୁ ସ୍ପର୍ଶ କରି ମଲା ସାପଟିଏ ପରି ନିଥର ହୋଇ ପଡ଼ି ରହିଥିଲା ।

॥ ॥ ॥

( ୧୯୭୯ ଏପ୍ରିଲ ସମାବେଶ )

## ମାତୃରୂପେଣ ସଂସ୍ଥିତା...

ଏଥର ଗାଁରେ ପହଂଚିବା ପର୍ଯ୍ୟନ୍ତ ମୁଁ ଜାଣି ନ ଥିଲି ଯେ ବ୍ୟାପାରଟା ଏତେଦୂର ଗଲଣି । ଯୋଉକଥା ଆଜିକି ତିରିଶି ବର୍ଷ ଧରି ଶୁଣା ନ ଥିଲା, ସେ କଥା ମୁଁ ପୁଣି ଥରେ ଶୁଣିବାକୁ ପାଇବି ବୋଲି ଆଶା କରି ନ ଥିଲି । ଯାହାଙ୍କ କଥା ମୁଁ ଏହି ଦୀର୍ଘ ଏତେ ବର୍ଷ ଧରି କେବେ ଥରୁଟିଏ ହେଲେ ବି ଭବି ନାହିଁ—ଏପରିକି ସେ ଆଉ ଆମ ଗାଁରେ ଅଛନ୍ତି, କି ଆଉ କୁଆଡ଼େ ଗୁଲିଗଲେଣି, କିମ୍ବା ମୋଟ ଉପରେ ସେ ଆଉ ଏ ପୃଥୀରେ, ଏ ଖଣ୍ଡମଣ୍ଡଳରେ ଅଛନ୍ତି କି ନାହାନ୍ତି—ଏ ସବୁ ବିଷୟରେ ମୋ ମୁଣ୍ଡ କେବେ ଖେଳିନାହିଁ । ମୋ ମୁଣ୍ଡରେ ହରେକ ରକମର ଚିନ୍ତା—ପରିବାର-ବୃତ୍ତି-ସମାଜ ରାଜନୀତି-ଦେହସୁଖ । ମୁଣ୍ଡକୁ ଫୁରୁସତ୍ ବା କାହିଁ ? ତା' ଛଡ଼ା ମୁଁ ତ ଗତ ତିରିଶି ବର୍ଷ ହେଲା ପ୍ରବାସୀ । ମଧ୍ୟେ ମଧ୍ୟେ ସିନା ଗ୍ରାମକୁ ଯାଏ । ତା' ମଧ୍ୟ ବିନା କାରଣରେ ନୁହେଁ । ଜମିବାଡ଼ିରେ କିଛି ଅସୁବିଧା ହେଲେ ବୁଢ଼ାବୁଢ଼ୀ ହୋଇ ଯାଇଥିବା ବାପମାଆଙ୍କର କିଛି ଦେହଦୁଃଖ ହେଲେ, ଗାଁରେ ଥିବା ଭାଇମାନଙ୍କର କିଛି ସ୍ୱାର୍ଥ ସଂଘାତ ଗଣ୍ଡଗୋଳ ହେଲେ, କିମ୍ବା ଗ୍ରାମର କିଛି ଗୋଟାଏ ବଡ଼ ସମସ୍ୟା ହେଲେ ମୋତେ କିଛି ସମୟ ଲାଗି ଗାଁକୁ ଯିବାକୁ ପଡ଼ିଛି । ହଁ—ଭାଇମାନଙ୍କର ପିଲାପିଲିଙ୍କ ବାହା ବ୍ରତରେ

ମଧ୍ୟ ଗାଁକୁ ଯାଇଛି ବହୁଥର । କିନ୍ତୁ ତାଙ୍କ କଥା କେବେ ଘୃଣାକ୍ଷରେ ବି ମୋ ମୁଣ୍ଡକୁ ଜୁଟିନାହିଁ—କି କେହି ମଧ୍ୟ ଭୁଲରେ ତାଙ୍କ ନାଁ ମୋ କାନରେ ପକାଇ ନାହାନ୍ତି ।

ଗତ ପଚିଶି ତିରିଶି ବର୍ଷ ଭିତରେ ଆମଗାଁରେ ଭଲ କେତେ କଥା ସବୁ ଘଟି ନ ଗଲାଣି । ସହରରୁ ଯୋଉ କାଦୁଆ ରାସ୍ତାଟି ଆମ ଗାଁ ଦେଇ ସମୁଦ୍ରକୂଳ ଯାଏ ଲମ୍ବିଯାଇଛି ସେ ରାସ୍ତାଟି ଇତି ମଧ୍ୟରେ ପିଚୁ ହୋଇ ଯାଇଛି—ଏବଂ ସେ ରାସ୍ତାରେ ବର୍ତ୍ତମାନ ଦିନରାତି ଶହ ଶହ ବସ୍, ଟ୍ରକ୍, କାର୍, ସ୍କୁଟର ଓ ସାଇକେଲ ଚଳପ୍ରଚଳ ହେଉଛନ୍ତି । ଏଣେ ପୁଣି ଆମ ଗାଁ ଗୋଟିଏ ସହରରେ ମଧ୍ୟ ପରିଣତ ହୋଇ ଆସୁଛି ଆସ୍ତେ ଆସ୍ତେ । ଗାଁରେ ବର୍ତ୍ତମାନ ବହୁ କୋଠାଘର । ହାଇସ୍କୁଲ, ଗାର୍ଲସ୍କୁଲ, ପ୍ରସ୍ତାବିତ କଲେଜ, ଡେଲ୍ଟା ଅଫିସ, ବ୍ଲକ୍, ପଞ୍ଚାୟତ, ଥାନା, ତିନିତିନିଟା ବ୍ୟାଙ୍କ, ଗୋଟାଏ ହାସ୍ପାତାଳ, କରତକଳ, ଆଖୁକଳ, ଟାଇଲ୍ କାରଖାନା, ଦୁଇଦୁଇଟା ଧାନହଲର, ତହସିଲଦାର ଅଫିସ—ଏବଂ ସେ ସବୁ ସାଙ୍ଗକୁ ଭାରତମାତା ବିଶୁଦ୍ଧ ହୋଟେଲ, କଟକଚଣ୍ଡୀ ହୋଟେଲ, ଲିଙ୍ଗରାଜ ମିଷ୍ଟାନ୍ନ ଭଣ୍ଡାର, ହେମାମାଳିନୀ ଡ୍ରେସ୍ ଷ୍ଟୋର୍, ଡକ୍ଟର ପି. ଶତପଥୀଙ୍କ ହଠାତ୍ ଆରୋଗ୍ୟ ନିକେତନ, ସବୁ ମିଳେ ମନୋହାରୀ ଦୋକାନ, ଢାକା ଆୟୁର୍ବେଦିକ୍ ଫର୍ମାସୀ, ପଞ୍ଜାବ ହୋଟେଲ, ଏବଂ ବହୁ ଗୁହା ଓ ପାନ ଦୋକାନ । ତା' ସାଙ୍ଗକୁ ଏବେ ପୁଣି ଶୁଣାଯାଉଛି—ମାଗା ବେହେରା ତା' ଦୋକାନ ପଛକୁ ଯୋଉ ଆଡ଼ି ବଖରାକ ଏବେ ନୂଆ ତୋଳିଛି, ସେଠି ଦେଶି ବିଦେଶୀ ଉଭୟବିଧ ସୁରା ମଧ୍ୟ ମିଳୁଛି । ହାଟ ଆରପଟକୁ ବସ୍‌ଷ୍ଟାଣ୍ଡ । ଗତ ବର୍ଷେ ହେଲା ପୁଣି ଗୋଟାଏ ବୁଲା ସିନେମା ମଧ୍ୟ ଆସି ହାଟ ପାଖେ ଆସ୍ଥାନ୍ ଜମେଇଛି । ଏବଂ ସ୍ଥାୟୀ ହେବାକୁ ଚେଷ୍ଟା କରୁଛି । ଶୁଣାଯାଏ, ସ୍ଥାନୀୟ ରାଜନୀତିକ ନେତାଙ୍କର ସେଥିରେ ଗୁପ୍ତ ସେୟାର୍ ଅଛି ବୋଲି । ପ୍ରତି ବର୍ଷ ମଧ୍ୟ ଗାଁକୁ ଗୋଟିଏ ସର୍କସ ଦଳ ଆସେ । ଏବଂ ରଜ ଓ ଦଶହରାକୁ ହାଟ ପଡ଼ିଆରେ ଲଢ଼େଇ ଯାତ୍ରା ହୁଏ । ଚରିଗ୍ଟରିଟା ସାଇକେଲ ମରାମତି ଦୋକାନ ସାଙ୍ଗକୁ ଗୋଟାଏ ମଟର ସାଇକେଲ ଦୋକାନ ମଧ୍ୟ ବସିଲାଣି । ଦଶହରାକୁ ଆମ ଗାଁରେ ଏବେ ଚାରୋଟି ଦେବୀ ମେଢ଼ ଦୁଇଟି ମହାଦେବ ମେଢ଼ ମଧ୍ୟ ହୁଏ ।

ଗତବର୍ଷ ବିଶ୍ୱକର୍ମା ମେଢ଼ ମଧ୍ୟ ହୋଇଥିଲା । ଆମ ଗାଁ କ୍ରମଶଃ ସହର ପାଲଟି ଗଲାଣି । ବିଜୁଳି ଆଲୁଅ ଓ ଚାରିଆଡ଼େ ଦିନରାତି ମାଇକ୍‌ରେ ଉଚ୍ଚକିତ ସିନେମା ସଙ୍ଗୀତ ଚତୁର୍ଦ୍ଦିଗ କମ୍ପାଉଛି । ବଜାରର ସବୁ ଘର କାନ୍ଥରେ ସିନେମା ଓ ଚିତ୍ର ତାରକାଙ୍କ ଛବି । ବଜାରରେ ପ୍ରତି ବାରଟା ଗୋଟେ ଯାଏ ଗହଳ ଚହଳ ଲାଗିରହେ । ଏବଂ ଦିନେ ଦୁଇଦିନ ଅନ୍ତରରେ ସ୍କୁଲ ପିଲା, ପ୍ରସ୍ତାବିତ କଲେଜ ପିଲା ସ୍ଥାନୀୟ କାରଖାନାଗୁଡ଼ିକର ଶ୍ରମିକମାନେ ଇନ୍‌କିଲାବ୍-ଜିନ୍ଦାବାଦ୍ ଧ୍ୱନି ଦେଇ ବଜାର ଉପରେ ମାର୍ଚ୍ଚିଂ କରି ଚାଲିଯା'ନ୍ତି ।

ତା'ଛଡ଼ା ଗାଁରେ ବର୍ତ୍ତମାନ ବହୁବିଧ ସମସ୍ୟା । ପଞ୍ଚାୟତ ନିର୍ବାଚନ ଠାରୁ ଆରମ୍ଭ କରି ଭଗଗ୍ରଷ ଓ ହରିଜନ ସମସ୍ୟା ପର୍ଯ୍ୟନ୍ତ ବହୁବିଧ ଘଟଣାରେ ଗ୍ରାମ ଆକ୍ରାନ୍ତ । ତା'ଛଡ଼ା ହାଇସ୍କୁଲରେ ପିଲାଙ୍କ କପି ସମସ୍ୟା, ଗାର୍ଲସ ସ୍କୁଲରେ କାମିନୀକାଞ୍ଚନଗତ ବହୁ ସମସ୍ୟା । ଅଫିସରମାନଙ୍କ ବଦଳି ସମସ୍ୟା । ଅବଶ୍ୟ ମୋର ଏ ସବୁ ସଙ୍ଗେ କୌଣସି ସଂପର୍କ ନ ଥାଏ । ଯଦିଓ ମଧ୍ୟେ ମଧ୍ୟେ ଗ୍ରାମକୁ ଆସିଲେ କିଛି କିଛି ମୋ କାନରେ ବାଜେ । ସେ ସବୁ ମୋର ଏ କାନରେ ପଶି ସେ କାନରେ ବାହାରିଯାଏ । କାରଣ, ଗ୍ରାମଟି ବର୍ତ୍ତମାନ ଯୋଉମାନଙ୍କ ହାତରେ, ସେମାନଙ୍କର ମନୋବୃତ୍ତି ଅନୁଯାୟୀ ଗାଁ ତାର ଠିକ୍ ବାଟରେ ଗ୍ଲଲିଛି । ତା' ଛଡ଼ା ରାଜ୍ୟର ନିର୍ବାଚନ ରାଜନୀତି ମଧ୍ୟ ଅଛି । ଏବଂ କୋଉ ଦଳର କାହାପଟେ ଏଥର ଠିଆ ହେଲେ ନିଜର ମଙ୍ଗଳ ହେବ, ସେ ସବୁ ତଥ୍ୟ ମଧ୍ୟ ଆମ ଗାଁର ବର୍ତ୍ତମାନ ନେତାମାନଙ୍କୁ ଖୁବ୍ ଭଲ ଭାବେ ମାଲୁମ ଅଛି । ମୋର ସେଥିରେ କିଛି ଯାଏ ଆସେ ନାହିଁ । ଗାଁର ନେତାମାନଙ୍କ ସାଙ୍ଗେ ଦେଖା ହେଲେ ଗାଁର ବହୁ ସମସ୍ୟା ଓ ତାର ସମାଧାନର ପନ୍ଥା ସମ୍ବନ୍ଧେ ମୋ କାନରେ କିଛି ବାଜେ ! ବିଭିନ୍ନ ଲୋକ ବିଭିନ୍ନ ଲୋକଙ୍କ ଅପକର୍ମାଦି ବିଷୟରେ ମଧ୍ୟ ମୋ କାନରେ କିଛି ପକାନ୍ତି । କିନ୍ତୁ ମୁଁ ଯାହାଙ୍କ ବିଷୟରେ ବର୍ତ୍ତମାନ କହିବାକୁ ଯାଉଛି—ତାଙ୍କ ନାମରେ କୌଣସି ନିନ୍ଦା ବା ପ୍ରଶଂସା ମୁଁ ଏ କୋଡ଼ିଏ ପଚିଶ ବର୍ଷ ଧରି କିଛି ଶୁଣି ନାହିଁ । ଏପରିକି ତାଙ୍କ ନାଁ ମଧ୍ୟ କେହି ମୋ ଆଗରେ ଧରିନାହାନ୍ତି ।

କିନ୍ତୁ ଏଥର ଗାଁରେ ପହଁଚିବା ମାତ୍ରେ ମୋର ଅଶୀ ବର୍ଷର ବୁଢ଼ୀବୋଉ କାନ୍ଦ କାନ୍ଦ ହୋଇ ପ୍ରଥମେ ସେଇ କଥାଟି ମୋତେ କହିଲା । କହିଲାବେଳେ ତାର କଣ୍ଠ କ୍ରୋଧ, ଆତଙ୍କ ଓ ଶୋକୋଚ୍ଛ୍ୱାସରେ ଥରି ଉଠୁଥିଲା । ପ୍ରଥମେ ସେ ମୋ କାନ୍ଧରେ ତାର ଥୁରୁଥୁରୁ ହାତ ରଖି ଅନୁନୟ କଲାଭଳି କହିଲା—ସେ ଆଉ ରହିବନିରେ ପୁଅ ।

କିଏ ବୋଉ ? କାହା କଥା କହୁଛୁ ?

ଆରେ ପୁଅ, କେମିତି ଭଲା ସେ ଆଉ ରହନ୍ତା ? ଏତିକି କଦର୍ଥନା ତାକୁ ଏ ଗାଁବାଲା ଦେଲେଣି ? କେତେ ଆଉ ସେ ସହନ୍ତା ? ଆମେ ଭଲା ସହି ପାରନ୍ତୁ ?

ମୁଁ ତଥାପି ପଚାରିଲି—କାହା କଥା ତୁ କହୁଛୁ ? ପଧାନ ଘର ବୁଢ଼ୀ ?

ଆରେ ନାହିଁରେ, ପଧାନ ଘର ବୁଢ଼ୀ ତ ଅଇନେ ସୁଖରେ ଅଛି । ତା ଝିଆରୀର ଜୋଇଁ ଗାଁକୁ ଆଇଥେଲା—ବୁଢ଼ୀକୁ ସାଙ୍ଗରେ ନେଇଗଲା—ବଡ଼ ଡାକ୍ତର ହୋଇଛି—ତା' କଣ୍ଠରେ ଦୟା ବସିଲା । ବୁଢ଼ୀକି ନେଇଗଲା ଭେବନିଶର । ସେଠି ବୁଢ଼ୀ କୁଆଡ଼େ ରାଣୀ ଭଳିଆ ଭୋଗ ପାଉଛି । ଭେବନା ଯାଇଥିଲା ଯେ କହୁଥିଲା ବୁଢ଼ୀ କଥା । ତା'ହେଲେ ତୁ କାହା କଥା କହୁଛୁ ? କାହାକୁ ଗାଁବାଲା ଏତେ କଦର୍ଥନା ଦେଲେ ? ଶାମ ଶତପଥୀ ଯାହାକୁ ଘରଜୋଇଁଆ କରି ଆଣିଥିଲେ ତା' କଥା କହୁଚୁ କି ? ଆରେ ନାହିଁ ବା—ତାର କିଏ କଣ କରିବେ ? ସେ ତ ଏଇନେ ଧାନକଳ ପକେଇ କାହିଁରେ କଣ ? ଚାରିବଖରା କୋଠା ତୋଳିଲାଣି—ଦାଣ୍ଡ ପାହାଚରେ ସିଂହ ବସେଇଛି । ଆଉ ତା'ହେଲେ କିଏ ? ସନାତନ ମହାପାତ୍ରେ ? ଯେ ଚଣ୍ଡି ସାଧୁଥିଲେ ? ସେ ବୁଢ଼ା କଣ ଆଉ ଅଛି ? ସେ ପରା ଦି'ବର୍ଷ ହେଲା ମଲାଣି । ସେଇ ଚଣ୍ଡୀ ତ ତାକୁ ଖାଇଲା । କାଳିନ୍ଦୀ ବଣିଆକୁ କଣ ବେତାଳ ପେଶିଲା । କାଳିନ୍ଦୀ ବଣିଆ ଘରେ ଖାଲି ଗୋରୁ ହାଡ଼ ପଡ଼ିଲା ଶୂନ୍ୟରୁ । ସେଇଠୁ ସେ ଗଲା କୃଷ୍ଣପୁର କାଳିଆ ବାବାଜୀ ପାଖକୁ । କାଳିଆ ବାବାଜୀ ଗୁଣିଆଙ୍କ ଗୁରୁ । ସେ ଏମିତି ବାଣ ପେଶିଦେଲା ଯେ ସନା ମହାପାତ୍ର ଛାତି ଫାଟିଗଲା । ସେ ରକ୍ତ ବାନ୍ତି କରି ମଲା ।

ତା'ହେଲେ ତୁ କାହାକଥା କହୁଚୁ ?

ତୁ ଶୁଣିନୁଁ ?

ନା' ବୋଉ । କାହାକୁ ଗାଁବାଲା ଏତେ କଦର୍ଥନା ଦେଲେ ? କଣ କଦର୍ଥନା ?

କଦର୍ଥନା ନୁହଁ ? ତା'ର ପଚିଶମାଣ ଜମି ଖାଇଲେ । ତା' ପୋଖରୀରୁ ମନ ଇଚ୍ଛା ମାଛ ମାରି ଖାଇଲେ । ତା' ଘର ତୋଳିବେ ବୋଲି ଟଙ୍କା ଭେଦା କଲେ—ଘର ଅଧା ତୋଳା ହୋଇଛି—ଭେଦା ଟଙ୍କାତକ ଚଳୁ କରିଦେଲେ । ତା' ଅଗଣା ବାଡ଼ ଭଙ୍ଗି ତା' ଘରକୁ ଲଗେଇ କରି ପଞ୍ଚାୟତବାଲା ଗଲ୍ଲା ଫିଟେଇଲେ । ସେ ଗଲ୍ଲାରେ ପୁଣି ପଠାଣମାନେ ଗୋରୁ ଚମଡ଼ା ଲଦି ଶଗଡ଼ ବୋହିଲେ । ତା' କୁଡ଼ିଆଟିକୁ ବି ଛପର କଲେ ନାହିଁ । ଗ୍ରଳକାକ କଣା । ଖରଦିନେ ଖର ଖାଇଲା—ବର୍ଷାଦିନେ ବର୍ଷା ଖାଇଲା । ତା' ଦେହରେ ଖଣ୍ଡିଏ ଦର୍ହ କନା ବି ପିନ୍ଧେଇଲେ ନାହିଁ । ଶୀତଦିନଜାକ ସେ ଜାଡ଼ ଭୋଗିଲା । ପୁଣି ଦେଖ୍—ଗଲା ଆଷାଢ଼ରେ ରଥଯାତ୍ରା ଦିନ ସେ ଆଟିକାଏ ପଣା ପିଏ—ସେତେକ ବି ଧରମଛଡ଼ାମାନେ ତାକୁ ଦେଲେ ନାହିଁ । ତା'ର ଦୁଇ ଦୁଇ ହଳ ରୂପା ମୁକୁଟ, ରୂପା ଚୂଡ଼ୀ ରୂପା ନୋଥ ଥିଲା । ତାକୁ କିଏ କୁଆଡ଼େ ନେଲେ । ଦିନେ ବି ସେ ଦରବ ସେ ପିନ୍ଧିଲା ନାହିଁ । ଯେତେହେଲେ ମାଇକିନିଆ ଝୁଅ ତ ! ଦରବଟିଏ ପିନ୍ଧିବାକୁ ଫେର୍ ଆମର ତ ମନ ହଉଛି । ଆଛା ତୁ ଦେଖ୍ ପୁଅ—ତା' ଘୋଡ଼ା, ଆଉ ବାଘତକ କୋଉ କାଳରୁ ଭଙ୍ଗିଭୁଙ୍ଗି ଗଲଣି । ଆଉ କେହି ତାକୁ ଘୋଡ଼ାଟିଏ କି ବାଘଟିଏ କି ହାତୀଟିଏ ଦେଲେ ନାହିଁ । ସେ ଭଲା କେମିତି କୁଆଡ଼େ ଆତଯାତ ହବ ? ଗତିକେ ବାରସାଇ ବୁଲିବ—ତମ ଭଲ ମନ୍ଦ ବୁଝିବ—ଆଉ ତା' ଗୋଡ଼ରେ ବଳ ଅଛି ? ଆମେ ଭଲା ବୁଲି ପାରିବା ? ତୁମର ତ ପୁଣି ସାଇକେଲ, ମଟର ସାଇକେଲ ନ ହେଲେ ଚଳୁନାହିଁ ? ଆଛା ପୁଅ ଶୁଣ୍—ଏ ପରପଞ୍ଚ ସରପଞ୍ଚଟାର ବୁଦ୍ଧି ଶୁଣ୍—ତା' ଘର ପାଖେ ଗଉଡ଼ ସାଇକୁ ଲଗେଇକରି ଗୋଟାଏ ଧାନ କଳ ବସେଇଛି । ସବୁବେଳେ ସେ କଳଟା ରଡ଼ି ଛାଡୁଛି । ସେ ରଡ଼ିରେ ତାକୁ ନିଦ ହଉନାହିଁ । ସେ ତ ଦିନଜାକ ଶୋଇଲେ ପୁଣି ରାତି ଅନିଦ୍ରା ହୋଇ ଗାଁଜାକ ବୁଲିବ ? ତୁମ ଭଲ ମନ୍ଦ ବୁଝିବ ? ସେଥିରେ ପୁଣି ଠିକ୍ ତା' ଦୁଆର ମୁହଁରେ ଗୋଟାଏ

ଏତେ ଭଲେଟି ଆଲୁଅ ଜଳେଇଛି ଯେ ସେଇଟା ଘଡିଜାକ ଜଳୁଛି ଦାଉଦାଉ ହୋଇ—ସେ ଭଲ ଘଡିରେ ତା'ଘରୁ ବାହାରିବ କେମିତି ସେ ଆଲୁଅରେ ? ଘଡିଯାକ ଭଲ ତୁ ସେଠି କାହିଁକି ଆଲୁଅଟାଏ ଜଳଉଛୁ ? ସେଇଥି ପାଇଁ ଘଡିରେ ଆଉ କୋଉ ଚଣ୍ଡୀଗ୍ରମୁଣ୍ଡା, ଭୂତ ପ୍ରେତ, ଡାହାଣୀ ଚିରୁଗୁଣୀ ତା' ପାଖକୁ ଆସି ପାରୁନାହାନ୍ତି । କି ସେ ମଧ୍ୟ ସେମାନଙ୍କ ସାଙ୍ଗରେ ଆଉ କଥାବାର୍ତ୍ତା ହୋଇ ପାରୁନି । ସେ ଆଉ କାହାଠୁଁ କୋଉଠୁ କଣ ବାତାନି ଶୁଣିବ କହିଲୁ ? ତାର ତ ଅନ୍ଧାରରେ କାରବାର ।

ବର୍ତ୍ତମାନ ମୁଁ ବୁଝି ପାରିଲି—ବୋଉ କାହାକଥା କହୁଛି । ଆମ ଗାଁ ବାରସାଇର ଗ୍ରାମଦେବତୀ କୁଟାମଚଣ୍ଡୀଙ୍କ କଥା ନିଷ୍ଚେ । କୁଟାମଚଣ୍ଡୀ ଆମ ଗାଁର ଅଧିଷ୍ଠାତ୍ରୀ ଦେବୀ । ଗାଁର ଆପଦ ବିପଦକୁ ସେଇ ସାହା । ସେ ମଧ୍ୟ ଗାଁର ତତ୍ତ୍ୱାବଧାରିକା । ଚଣ୍ଡୀପୁରଣ ମତରେ ଆଦିଶକ୍ତି ଦୁର୍ଗା ଯେତେବେଳେ ଅସୁର ସଙ୍ଗେ ଯୁଦ୍ଧ କରୁଥିଲେ, ସେତେବେଳେ ନିଜ ଦେହରୁ ଅସଂଖ୍ୟ ଚଣ୍ଡୀ ଗ୍ରମୁଣ୍ଡା ଜନ୍ମକରି ଅସୁରମାନଙ୍କୁ ନିପାତ କରଇଲେ । ଯୁଦ୍ଧ ଶେଷରେ ସେହି ଚଣ୍ଡିଗ୍ରମୁଣ୍ଡାଙ୍କୁ ଆଦିମାତା କହିଲେ—ହେ ଚଣ୍ଡୀଗ୍ରମୁଣ୍ଡାଗଣ ! ତୁମେମାନେ ଅସ୍ଥିର ହୁଅ ନାହିଁ, ମୁଁ ତୁମମାନଙ୍କୁ ଗୋଟିଏ ଗୋଟିଏ ଗ୍ରାମ ଦେଉଛି । ସେଠି ତୁମ୍ଭେମାନେ ବିଭିନ୍ନ ନାମ ଧରି ପ୍ରତିଷ୍ଠିତ ହେବ ଏବଂ ସେହି ଗ୍ରାମବାସୀମାନେ ତୁମମାନଙ୍କୁ ଉତ୍ତମ ବଳୀଭେଜା ପଣାପାଣି ଦେଇ ଖୁସିରେ ରଖିବେ ଏବଂ ତୁମ୍ଭେମାନେ ସେଇ ସେଇ ଗ୍ରାମର ଭଲ ମନ୍ଦକୁ ଦାୟୀ ରହିବ ।

ସେଇଦିନୁ ଆମ ଗାଁରେ କୁଟାମଚଣ୍ଡୀ ବିରାଜମାନ କରୁଛନ୍ତି । ଗ୍ରାମ ଶେଷ ଉପକଣ୍ଠରେ । ଏପଟେ ବ୍ରାହ୍ମଣ ଶାସନ, ଆରପଟେ ଗଉଡ଼ ସାହୀ—ମଝିରେ ଗହୀର ଆଡ଼କୁ ରାସ୍ତା । ସେଇ ରାସ୍ତାବାଟେ ଗହୀର ଦେଇ ଅନ୍ୟ ଗାଁ ଗଣ୍ଡାରୁ ବସନ୍ତେଇ, ବାଡ଼ୀ ଆଦି ଅକସ୍ମାତ୍ ଠାକୁରଣୀମାନେ ଆମ ଗାଁକୁ ପଶି ଆସନ୍ତି । କୁଟାମଚଣ୍ଡୀଙ୍କୁ ସେଥିପାଇଁ ସେମାନଙ୍କ ସଙ୍ଗେ ବହୁତ ବରବର ହେବାକୁ ପଡ଼େ । ସେମାନଙ୍କୁ ବୁଝେଇବାଝେଇ, ପଣାପାଣି ଦେଇ ନାନା ଅନୁନୟ କରି ବୋଧ କରିବାକୁ ପଡ଼େ । ବେଳେବେଳେ କଳିକଜିଆ ବି କରିବାକୁ ପଡ଼େ । ଯୁଦ୍ଧ କରିବାକୁ ପଡ଼େ । ତଥାପି ସୁଦ୍ଧା ବର୍ଷେ ବର୍ଷେ

ସେମାନେ ବଳପୂର୍ବା ହୋଇ ଆମ ଗାଁରେ ପଶିଯାନ୍ତି । ଦଶ-ପନ୍ଦର ମୁଣ୍ଡ ନେଇ ଟହ ଟହ ହସି ଅନ୍ୟ ଗାଁକୁ ମାଡ଼ି ଯା'ନ୍ତି । ଆଉମଧ୍ୟ ବେଳେବେଳେ ଧୋଇ ମଲୁଡ଼ି ପଡ଼େ–ଝିଣ୍ଟିକା ପଡ଼ନ୍ତି ଧାନ ବିଲ ଉପରେ–ନାନାଦି ଅଜଣା ପୋକ ଧାନ କ୍ଷେତକୁ ଚରିଯା'ନ୍ତି । କୁତାମଚଣ୍ଡୀଙ୍କୁ ବହୁ ପରିଶ୍ରମ ପଡ଼େ ସେତେବେଳେ, ଗାଁକୁ ଏ ଆପଦରୁ ତାଗିବାକୁ । ତା' ଛଡ଼ା ଗାଁରେ ବ୍ୟକ୍ତିଗତ ଦୁଃଖବିପଦ ତ ବରବର ଲଗି ରହିଛି । କାହାର ପିଲ ଜନ୍ମ ହୋଇ ପାରୁନି–କାହାକୁ ପାଳିଜର ଛାଡ଼ୁନାହିଁ–କାହାର ପୁଅ ବିଦେଶରୁ ଆସୁନାହିଁ–କାହା ପେଟକୁ ମାରୁଛି–କାହାର ବଳଦ ହଜିଛି–କାହା ଗାଈ ବାରଂବାର ଗର୍ଭ ଫେରଉଛି–କାହାଘରେ କିଏ ବେତାଳ ପେଶିଛି–କିଏ କୋଉଠି ଘଡିରେ ଡରି କରି ଆସି ଝାଡ଼ାବାନ୍ତିରେ ପଡ଼ିଛି–କାହା ପୁଅ ତାର ସଦ୍ୟ ବିବାହିତା ବୋହୂକୁ ପସ୍ତରୁ ନାହିଁ, ଭାଉଜ ସଙ୍ଗେ ମାତିଛି– କାହା ପୁଅର ମୁଣ୍ଡରେ ଭୂତ ପଶିଛି–କାହାର ଭୁଆସୁଣୀ ଝିଅକୁ ବାରମ୍ବାର ଡାହାଣୀ ଲଗୁଛି–କାହା ଜୋଇଁ ତା' ଝିଅକୁ ପସ୍ତରୁ ନାହିଁ ଏମିତି ଏମିତି ଗାଁର ବାରସାଇରେ ପ୍ରତିଦିନ ବାରଦଣ୍ଡା ବିଶାଶଏ ଅନୁଦ୍ଵେଗ ସବୁଦିନେ ଲଗି ରହିଛି । ଆମ ପିଲଦିନେ କୁତାମଚଣ୍ଡୀଙ୍କୁ ଡର ନ ଥାଏ । ସବୁଦିନେ ମାଜଣା, ଗାଧୁଆ, ଭେଗରଗ, ପଣାପାଣିରେ ଠାକୁରଣୀଙ୍କୁ ନିଃଶ୍ଵାସ ମରେଇ ଦିଅନ୍ତି ନାହିଁ ଗାଁବାଲଏ । ତା'ଛଡ଼ା ପ୍ରତି ମଙ୍ଗଳବାର ଆଉ ଶନିବାର ଦିନ କୁକୁଡ଼ା ବଳୀ ପଡ଼େ । ଯାହାର ଯାହା ମାନସିକ, ତାହା ପୂରଣ ହେଲେ ସେ ଠାକୁରଣୀଙ୍କ ପାଖରେ କୁକୁଡ଼ା ହେଉ ବୋଦା ହେଉ ବଳୀ ପକାଇ ଦେଇଯାଏ । ତା' ଛଡ଼ା ଚଇତ ମାସରେ ତ ସବୁଦିନ ବଳୀ ପଡ଼ିବ । ବୈଶାଖ ମାସ ସଂକ୍ରାନ୍ତିକି ଏଠି ଝାମୁ ଯାତ ହୁଏ । କାଳିସୀମାନେ ଉଦୁଉଦିଆ ଦି'ପ୍ରହରେ ଡହଡହ ନିଆଁରେ ଗ୍ଭଲନ୍ତି । କୁତାମଚଣ୍ଡୀଙ୍କ କାଳିସୀ ଥିଲେ ଦୁଇଜଣ । ଭଜନୀ ବେହର ଆଉ ମଦନା ଭୋଇ । ସେମାନଙ୍କୁ ବର୍ଷକେ ତିନି ଗ୍ଭରିଥର କାଳିସୀ ଲଗେ । ବେକରେ ମନ୍ଦାର ମାଳା ପକାଇ କପାଳରେ ସିନ୍ଦୁର ବୋଳି ବାବୁରି ବାଳ ଉଡ଼ାଇ କଳା ଶାଢ଼ୀ ପିନ୍ଧି ଦୁଇ ହାତରେ କାଉଁଳୀ ବେତ ହଲଇ ସେମାନେ ନାଚନ୍ତି । ଉନମତ୍ତ ଦିଶୁଥାନ୍ତି । ଏଣେ ଢୋଲ ମହୁରୀରେ ବୀର ବାଜା ବାଜୁଥାଏ ।

ଗାଁ କଂପୁଥାଏ । ଝୁଣା ଧୂଆଁରେ ଠାକୁରଣୀ ଅଗଣା କୁହୁଡ଼ିଆ ପଡ଼ିଯାଏ । ସେମାନେ କୁଅ ଭିତରେ ବୁଡ଼ି ଫୁଲ ବାହାର କରନ୍ତି–ଜଳନ୍ତା ସଳିତା ଗିଳିଯା'ନ୍ତି କୋଡ଼ିଏ ପଚିଶିଟା କରି । ତା'ପରେ ଭୂଇଁ କି ବେତରେ ପିଟି ପିଟି ଗାଁର ଅନୀତି ଅପକର୍ମମାନ ଉଚ୍ଚସ୍ୱରରେ ଘୋଷଣା କରନ୍ତି । କୁତାମ ଚଣ୍ଡୀ ତାଙ୍କ ଭିତରେ ଅବତରି ତାଙ୍କ ତୁଣ୍ଡରେ ସେ ସବୁ କହନ୍ତି.........

ଆରେ ଆରେ ଅଳପେଇସାଏ ! ହଇରେ ମତେ କଣ କରି ପାଇଲ କି ? ହଇରେ ଭବୁଚ ମୁଇଁ କିଛି ଜାଣୁ ନାହିଁ କିରେ ? ଆରେ ବାଡ଼ିଖିଆଏ ! ଆରେ ନିଆଁସିଆଏ–ହଇରେ ଗଲ୍ଲ ମାସ ଶନିବାର ରତିରେ ମୋ ପୋଖରୀରେ ଜାଲ ପକାଇ ଘରିଟା ଭକୁର କିଏ ଧରି ନେଇ ଖାଇଲ୍ଲ ? ଆରେ ମୁଁ ତାକୁ ଖାଇବିରେ ! ମୁଁ ତା' ରକ୍ତ ପିଇବି । ତା'ର ଏଡ଼େ ବହପ ? ଆରେ ଆରେ ରଇଜଳାଏ ? କିରେ ଶୋବନା ପଧାନ ତା' ଭଇବୋହୂକୁ ଛୁଇଁଛି କି ନାହିଁ ? ସତ କଥା ସେ ମାନିଯାଉରେ...ନହେଲେ ତା' ବଡ଼ପୁଅକୁ ଖାଇବି । ...ଆରେ ଆରେ ଆରେ ସତ୍ୟାନାଶିଆଏ । ଆରେ ରଧାକାନ୍ତଙ୍କ ରୂପା ଛତି କିଏ ଚ୍ଛେରି କରିଛ ମାନିଯାଅ–ନହେଲେ ବାଡ଼ୀ ବସନ୍ତେଇ କି ଡାକିବି–ସେ ତମ ସମସ୍ତଙ୍କୁ ଗୋଟି ଗୋଟି କରି ମୋଡ଼ି ଖାଇବେ । ...ଆରେ କୁଳବୁଡ଼ାଏ ! କିରେ ନୋକା ମିଶରର ରଣ୍ଡ ବୋହୁ ତା ବେଧ ଛୁଆକୁ କୋଉଠି ପୋତିଛି ମାନିଯାଉରେ ଏ ଏ ଏ ଏ... ମୁଁ ତା' ବଉଁଶକୁ ଖାଇଯିବି.........

ଏଣେ ଡୁମୁ ଡୁମୁ ହୋଇ ଢୋଲ ବାଜୁଥାଏ । ମହୁରୀ ବାଜୁଥାଏ । ହରିବୋଲ ହୁଳହୁଳିରେ ଠାକୁରଣୀ ବେଢ଼ା ଉଛୁଳୁଥାଏ । ସମସ୍ତେ ଆତଙ୍କରେ ଥରୁଥାଆନ୍ତି । "ମାଆ ମାଆ ରକ୍ଷାକର"–"କୋପ ଶାନ୍ତି କର ମାଆ"– ଡାକରେ ଗଗନ କଂପୁଥାଏ । ମାତ୍ର କାଳେସୀ କିଛି ଶୁଣୁ ନ ଥାଏ । କେହି ଜଣେ ଶୁଭମନାସିଆ ଭକ୍ତ ନୂଆ ଆଟିକାରେ ଛେନା, କଦଳୀ, ଗୁଡ଼, ଗୋଲମରିଚ ପଣା ଧରି କାଳେସୀ ମୁହଁ ପାଖକୁ ନେଇ ଅନୁନୟ କରି କହେ –ମାଆ ଲୋ ! ଯାହା ହେବାର ହେଲାଣି, ସେ ପାପୀମାନେ କିଛି ମାନିବେ ନାହିଁ–ତୁ' ଏତେକ ପଣାପିଇ ତୋ' କୋପ ଶାନ୍ତିକର–ଓ ହୋ ଲୋ ମାଆ । ନାଚି ନାଚି ଗର୍ଜି ଗର୍ଜି ତୋ ତଣ୍ଟି ଶୁଖିଯିବଣି–ନେ, ମା' ପିଇଦେ ଏବେ...

କାଳେସୀ ଘଗରେ ଶୋଇଠା ମାରେ । ନ ହେଲେ ଜାଉଁଳୀ ବେତରେ ସେ ପଣା ହାଣ୍ଡି ବାଡ଼େଇ ଭଙ୍ଗି ଦିଏ । ନାଁ-ନାଁ-ଉଠା ଉଠାରେ—ମୁଁ କିଛି ପିଇବି ନାହିଁ । ଏ ଗାଁରେ ପାପ ମାତ୍ରା ବଢ଼ିଗଲାରେ...କେହି ଆଉ ଧର୍ମକୁ ରଖୁନାହାନ୍ତି...ମୁଁ ଏବେ କାଳୀ ଠାକୁରାଣୀ କି କଣ କହି ବୋଧ ଦେବି ? ସେ ତ ସବୁ ଜାଣିଗଲାଣି । ଆରେ ଗାତପଶାଏ । ଯିଏ ଏ ସବୁ ଅପକର୍ମ କରିଛ ମାନିଯାଅରେ...ନ ହେଲେ ମୁଁ ତୁମ ସମସ୍ତଙ୍କୁ ଆଜି ଦିନକ ଭିତରେ ଖାଇବି-ଖାଇବି-ଖାଇବି...

ବହୁ ସମୟ ଏମିତି ଚାଲେ । ହୁଏତ ଜଣେ ଦି'ଜଣ ଅତର୍କିଆ ପାପୀ ଜନଗହଳି ଭିତରୁ ବାହାରି ଆସନ୍ତି । ବେକରେ ପାଳଦଉଡ଼ା ପକାଇ କାଳେସୀ ଆଗରେ ଲମ୍ବ ହୋଇ ପଡ଼ିଯାନ୍ତି । ମାଆ ମାଆ କ୍ଷମା କର—କ୍ଷମା କର—ଏଇଥରକ କ୍ଷମା କର ମା !!

ତାଙ୍କ ଭିତରୁ ହୁଏତ ଜଣେ ବହୁକାଳୁ ବିପତ୍ନୀକ ଲୋକ ଦିନେ ରାତିରେ କାମାସକ୍ତିରେ ଅସାକ୍ଷମ ହୋଇ ତାର ସାନ ଭାଇର ଅନୁପସ୍ଥିତିରେ ଭାଇ ବୋହୂକୁ ଧରି ପକାଇଥିଲା...କିମ୍ବା ହୁଏତ ଜଣେ କେହି ମହାଦେବଙ୍କ ନଡ଼ିଆ ଗଛରୁ ନଡ଼ିଆ ଚୋରି କରି ସାଙ୍ଗମେଳରେ ଚୂଡ଼ାଘଷା କରି ଖାଇଥିଲା...ଏ ସବୁ କଥା ମାନିଯା'ନ୍ତି ଓ ତାଙ୍କ ପିଠିରେ କୁତାମଚଣ୍ଡୀଙ୍କ କାଳେସୀର ଜାଉଁଳୀ ବେତର ମାଡ଼ରେ ନୋଳା! ଫାଟିଯାଏ । ତା'ପରେ ହରିବୋଲ ହୁଳହୁଳି ଓ ଢୋଲ ବାଜାର ଶବ୍ଦ ଚୂମୂଳ ହୋଇଉଠେ । ଗାଁବାଲା ନେହୁରା ହୋଇ ପାପୀଙ୍କ ପାଇଁ କ୍ଷମା ମାଗନ୍ତି । କାଳେସୀ ଶାନ୍ତ ହୁଏ । ପଣା ପିଏ ଓ ପାପୀମାନଙ୍କୁ ପ୍ରାୟଶ୍ଚିତ୍ତର ବିଧାନ କହି ଦେଇ ଲମ୍ବ ହୋଇ ପଡ଼ି କିଛିକ୍ଷଣ ଅଚେତା ହୋଇଯାଏ ।

ବର୍ଷକେ ଦୁଇଥର କୁତାମଚଣ୍ଡୀଙ୍କ ପାଖେ ଜନ୍ତାଳ ହୁଏ । ଗାଁର ବାରସାହୀ ଯୋଗ ଦିଅନ୍ତି । ମହାଷ୍ଟମୀକୁ ହଣ୍ଡା ହଣ୍ଡା ବଳି ପଡ଼ିଥିବା ଛେଳି ମେଣ୍ଢା ମାଉଁସ ସଙ୍ଗେ ପରିବା, ଚାଉଳ, ଘିଅ ଆଦି ମିଶି ଗୋଟେ ମହା ଜନ୍ତାଳ ହୁଏ । ରାତିଯାକ ଭଜନ ଚାଲେ । ଘଣ୍ଟ ମାଦଳ ହୁଏ । ସମସ୍ତେ ମିଶି ଭୋଗ

ଖା'ନ୍ତି । ବୈଶାଖ ମାସରେ ବି ସେମିତି କୃଷ୍ଣ ଦଶମୀ ଦିନ ମାଛ ଜନ୍ତାଳ ହୁଏ । ଠାକୁରାଣୀଙ୍କ ପୋଖରୀରୁ ମହଣ ମହଣ ରୋହୀ, ଭାକୁର, ସେଉଳ, ବାଳିଆ ପ୍ରଭୃତି ମାଛ ଧରା ହୋଇ ହଣ୍ଡା ହଣ୍ଡା ତର୍କାରୀ ରନ୍ଧା ହୁଏ—ଖେଚେଡ଼ୀ ସଙ୍ଗେ ତା ଭୋଗ ହୁଏ । ଗାଁର ବାରସାହୀର ଆବାଳବୃଦ୍ଧବନିତା ଏକତ୍ର ହୋଇ ପ୍ରସାଦ ସେବା କରନ୍ତି ।

କୁଟାମଚଣ୍ଡୀଙ୍କର ଏମିତି ମହିମା ଥିଲା ସେ କାଳେ । ଲୋକଙ୍କର ତାଙ୍କ ଉପରେ ଖୁବ୍ ଡର ଥିଲା—ଭରସା ମଧ୍ୟ ଥିଲା ଆହୁରି ବେଶି । ଆମ ଗାଁରେ ଆହୁରି ଢେର ଢେର ମହିମାବନ୍ତ ଠାକୁର ଅଛନ୍ତି । ଗଙ୍ଗବଂଶ ଅମଳରୁ ଅଛନ୍ତି ଶୋଭନେଶ୍ୱର ମହାଦେବ—ବିରାଟ ମନ୍ଦିର—କାରୁକାର୍ଯ୍ୟ ଭର୍ତ୍ତି—୩୬୦ ବାଟି ଜମି ଖଂଜା—ଦିନକୁ ପାଞ୍ଚ ଧୂପ—ଯାନିଯାତ୍ରା ତ ବର୍ଷକଯାକ । ବିରାଟ ହତା—ଚଂପା ଆଉ ବଉଳ ଗଛରେ ପୂର୍ଣ୍ଣ । ପୁଣି ଅଛନ୍ତି—ରାଧାକାନ୍ତ । ଅତି କମନୀୟ ଦେବତା । ତାଙ୍କର ବିରାଟ ମଠ—୩୬୫ ବାଟି ଜମି । ଯୋଉ ସାଇରେ ସେ ମଠ, ସେ ସାଇରେ ଦିନରାତି କର୍ପୂର ଚନ୍ଦନ ଚୁଆର ବାସ୍ନା ପବନରେ ଘୁରି ବୁଲୁଥାଏ । ସଦାବ୍ରତ ମଠ । ପ୍ରତିଦିନ ସାଧୁ ସନ୍ନ୍ୟାସୀ ଅତିଥି ଅଭ୍ୟାଗତ ଲାଗି ରହିଥାନ୍ତି । ମଠ ବଗିଚାରେ ମଲ୍ଲୀ, ମାଳତୀ, ମାଧବୀ ବଉଳ ଯୁଇ ଯାଇ ଆଦି ଫୁଲର ଚମତ୍କାର ଉଦ୍ୟାନ । ଏ ଦୁଇ ଠାକୁରଙ୍କ ବ୍ୟତୀତ ମଧ୍ୟ ଅଛନ୍ତି ପୁଣ୍ଡେଶ୍ୱର ମହାଦେବ, ନୀଳକଣ୍ଠେଶ୍ୱର ମହାଦେବ, ଖରଖିଆ ହନୁମାନଜୀ, ଚତୁର୍ମୁଖୀ ବ୍ରହ୍ମା—ଏପରିକି ଆମ ସାହିରେ ସ୍ୱୟଂ ଭଗବାନ ଚତୁର୍ଦ୍ଧା ମୂର୍ତ୍ତି ଜଗନ୍ନାଥଙ୍କର ଛୋଟ ମନ୍ଦିରଟିଏ ମଧ୍ୟ ଅଛି । ସେଠି ରଥଯାତ୍ରା, ଚନ୍ଦନଯାତ୍ରା ହୁଏ । ଫଗୁଣ ମାସରେ ସବୁ ଠାକୁରଙ୍କ ଦୋଳ ଉତ୍ସବ ହୁଏ । ଏହି ମହିମାବନ୍ତ ଠାକୁରମାନଙ୍କ ପାଖେ ବହୁ ଯାନିଯାତ୍ରା, ବହୁ ପୁଣ୍ୟ ପରବ ଓ ବହୁ ଭୋଗରାଗ ମଧ୍ୟ ହୁଏ । ଏମାନଙ୍କ ପାଖେ ଶୁଦ୍ଧପୂତ ବ୍ରାହ୍ମଣଙ୍କ ବ୍ୟତୀତ ଆଉ କେହି ପୂଜା କରନ୍ତି ନାହିଁ । ସମସ୍ତେ ବି ଠାକୁରମାନଙ୍କୁ ଛୁଇଁ ପାରନ୍ତି ନାହିଁ । ଲୋକେ ଏମାନଙ୍କୁ ବହୁ ମାନ୍ୟ କରନ୍ତି । ଦୂରରେ ଥାଇ ପ୍ରଣାମ ଜଣାନ୍ତି । ମାତ୍ର କୁଟାମଚଣ୍ଡୀଙ୍କ ପାଖେ ସେମିତି କଥା ନୁହେଁ । ସମସ୍ତେ ତାଙ୍କୁ ଛୁଅନ୍ତି । ଗାଧୋଇ ଦିଅନ୍ତି । ସେଠି ଜାତିଭେଦ ନାହିଁ । ଲିଙ୍ଗଭେଦ ନାହିଁ । ବାରିକ ଘର ବୋହୂ ହଳଦୀ

ଲଗେଇ ଦେବ—ଗୁଡ଼ିଆ ଘର ବୋହୂ ପାଣି ଢାଳି ଘଷି ମାଜି ଦେବ—ତେଲୀ ଘର ବୋହୂ ଘିଅ ଲହୁଣୀ ମାଲିସି କରିଦେବ—କୁମ୍ଭାର ଘର ଝିଅ ଶାଢ଼ୀ ପିନ୍ଧେଇ ଦେବ—ବଢ଼େଇ ଘର ବୁଢ଼ୀ ଠାକୁରଣୀଙ୍କ ମୁଣ୍ଡରେ ସିନ୍ଦୁର ଲଗେଇ ଦେବ । ବ୍ରାହ୍ମଣ ଘର ବୁଢ଼ୀ ଠାକୁରଣୀଙ୍କି କଦଳୀ ଉଖୁଡ଼ା ଛେନା ଭୋଗ ଲଗେଇ ଦେବ । ସେ ପ୍ରକାର ବାରଣ ଏଠି ନାହିଁ । ସେ ପରା ସମସ୍ତଙ୍କ ମାଆ ! ତା'ଆରି ପଣତ ତଳେ ସେ ସମସ୍ତଙ୍କୁ ଘୋଡ଼େଇ ରଖିଛି । ଦୋଷ ଦେଖିଲେ ମାଡ଼ ଦେବ । କାନ୍ଦିଲେ ପୁଣି ଲୁହ ପୋଛି ଦେଇ କୋଳରେ ପୂରେଇ ଗେଲ କରିବ । ଗାଁଟାଯାକର ଭଲ ମନ୍ଦ, ପାପ, ପୁଣ୍ୟ ରୋଗ, ବୈରାଗ, ସୁଖ ଦୁଃଖ, ସବୁଥିକି ସେଇସିନା ଦାୟୀ । ପିଲାଙ୍କୁ ସର୍ବ ବିପଦରୁ ରକ୍ଷା କରିବାକୁ ତା' ଛଡ଼ା ଆଉ ଭଲ କିଏ ଅଛି ? ଶୋଭନେଶ୍ୱର କହ, କି ନୀଳକଣ୍ଠେଶ୍ୱର କହ, ବ୍ରହ୍ମା କହ କି ଜଗନ୍ନାଥ କହ, ସେମାନେ କଣ ଏ ଦାୟିତ୍ୱ ତୁଲେଇ ପାରିବେ ନା ତାଙ୍କୁ ଏ ଦାୟିତ୍ୱ କିଏ ଦେଇଛି ? ସେମାନେ ଲୋକଙ୍କୁ ଗତି ମୁକ୍ତି ଦେବେ—ସତ୍‌ପଥ ଦେଖାଇବେ—ଭକ୍ତି ଜ୍ଞାନ ଦେବେ—ସ୍ୱର୍ଗକୁ ବାଟ ବତେଇ ଦେବେ । ଆଉ କଣ କାହାକୁ ପାଳିକରି ହେଲା ଦେଖିବେ—ନା ଗାଁରେ ହଇଜା ମଡ଼କ ପଡ଼ିଲେ ଜଗିବେ—ନା' କିଏ କୋଉ ଦୁଷ୍କର୍ମ କଲେ ତାକୁ ଦଣ୍ଡିବେ ? ଏ ପରା ହେଲେ ମାଆ ! ଗ୍ରାମଦେବତୀ !! ଗାଁଟାଯାକକୁ ନିଜ କୋଳରେ ଧରି ରଖିଛନ୍ତି । ସେଥିପାଇଁ ତ ବାହା ବ୍ରତ ପୁଆଣୀରେ କି ଘର ଅନୁକୂଳରେ ବା ଚାଷ ଅନୁକୂଳରେ ଆଗ କୁଟାମଚଣ୍ଡୀଙ୍କୁ ସାତ ଅହିଅ ମାଇପେ ଯାଇ ଗାଧୋଇ ଦେବେ, ମାର୍ଜଣା କରି ଭୋଗରାଗ କରିବେ—ତା' ପରେ ଯାଇ ଯୋଉ କଥା ।

କିନ୍ତୁ ଯା ବୋଲି ଯେ କୁଟାମଚଣ୍ଡୀ ଆମ ଗାଁର ସବୁ କଥା ସଜାଡ଼ି ଦେଉଥିଲେ—ବା ସବୁ ରୋଗ ବୈରାଗ ଭଲ କରି ଦେଉଥିଲେ—ବା ସବୁ ପାପୀଙ୍କ ପାପ ଧରିପାରୁଥିଲେ ତା' ନୁହଁ । ମୋ ପିଲା ଦିନେ ଆମ ଗାଁରେ କେତେ ପାପ କାର୍ଯ୍ୟ ନ ହୋଇଛି ? ବାଜ ମିଶ୍ରର ବିଧବା ସ୍ତ୍ରୀକୁ ଯିଏ ପାପଗର୍ଭ କରିଥିଲା କୁଟାମଚଣ୍ଡୀ ତାର କିଛି ଖବର ରଖିଥିଲେ ? ସିଏ ଦୁର୍ବୃତ୍ତ ଗାଁରୁ ଖସି ପଳାଇ ଯାଇ କଟକରେ ହୋଟେଲ କରି ମହା ମଉଜରେ ରହିଲା । କଣ ତାର ହୋଇଗଲା ? ଆଚ୍ଛା, ବଇଆ ଷଡ଼ଙ୍ଗୀଙ୍କର

ସେଇ ରଣ୍ଡ ଯୁବତୀ ଭଉଣୀଟିକୁ ରାତାରାତି ନେଇ ଚାଲିଗଲା ଆମ ବସ୍ତିର ନଜିର ମିଆଁ—ତାକୁ ନିଜେ ଉପଭୋଗ କରିସାରି କଲିକତା ବେଶ୍ୟା ଗଳିରେ ବିକି ଦେଇ ଆଇଲା । କୁତାମଚଣ୍ଡୀ ଭଲା ନଜୀର ମିଆଁର କଣ କରିପକାଇଲେ ? ବରଂ ନଜୀର ମିଆଁ ଏବେ ତା' ପୁଅ ସାଙ୍ଗରେ କଲିକତାକୁ ଚମଡ଼ା ଚାଲଣ କରି ଖୁବ୍ ବଡ଼ଲୋକ ହୋଇ ଗଲଣି । ଆଚ୍ଛା, ମହନୀ ମହାପାତ୍ରର କୁତାମଚଣ୍ଡୀ କଣ କରି ପକାଇଲେ ? ସେ କୂଟଚକ୍ରାନ୍ତ କରି ଗୋପୀ ପଧାନର ଅନାଥ ଛୁଆଙ୍କ ଆଖିରେ ଧୂଳିଦେଇ ତାର ଘରଡିହ ସୁଦ୍ଧା ମାରିନେଲା—ଆଉ ଗୋପୀ ପଧାନର ଅନାଥ ଛୁଆମାନେ ବିକଳରେ ଗାଁ ଛାଡ଼ି ଛତରରେ ପଶିଲେ । କୁତାମଚଣ୍ଡୀ ନା ମହନୀ ମହାପାତ୍ରର କିଛି କରି ପାରିଲେ ନା ଗୋପୀ ପଧାନର ଅନାଥ ଛୁଆଙ୍କୁ କିଛି ସାହା ଭରସା ହୋଇ ପାରିଲେ ? ସେମିତି ଆମ ଗାଁର ଅତି ଧାର୍ମିକ, ସରଳ, ପରୋପକାରୀ ସୋମନାଥ ହୋତା ହଠାତ୍ କୋଉଠି ଭେଟଣା ହୋଇ ଆସି ମାତ୍ର ଚାରିଟା ଝାଡ଼ା ଓ ଦୁଇଟା ବାନ୍ତି କରି ମରିଗଲେ । କୁତାମଚଣ୍ଡୀ ତାଙ୍କୁ ରଖି ପାରିଲେ କି ? ଆଚ୍ଛା, କନ୍ଧେଇ ବେହେରା କେଡ଼େ ଭଲ ଲୋକ ନ ଥିଲା ? ଗଉଡ଼ ଓଗାଳ ବୋଲିରେ ତାକୁ ଦଶଖଣ୍ଡ ଗାଁରେ କେହି ପାରୁ ନ ଥିଲେ । ପଞ୍ଝହତା ମର୍ଦ୍ଦ । ଦୁଇ ହାତରେ ଦୁଇଟା ମଇଁଷିଙ୍କ ଶିଙ୍ଗ ଧରି ଅଟକାଇ ଦେଉଥିଲା । ଭରି ଭକ୍ତିମାନ୍ ଲୋକ ବି ସେ ଥିଲା ଆମ ଗାଁରେ । ଦୋଳକୁ ଚମତ୍କାର ସିଙ୍ଗା ବଜାଏ । ତା' ଭାରିଯା ପୁଣି ବାରମାସୀ ସବୁଦିନେ ସକାଳୁ କୁତାମଚଣ୍ଡୀଙ୍କ ଅଗଣା ଓଳାଇ ସଫା କରିଦିଏ । ସେଇ କନ୍ଧେଇ ବେହେରାକୁ ପୁଣି ସଞ୍ଜବୁଡ଼େ କୁତାମଚଣ୍ଡୀଙ୍କ ପାଖ କିଆବୁଦାରୁ ନାଗସାପ ବାହାରି କାହିଁକି କାମୁଡ଼ିଲା ? ଆଉ ସେଇ ବିଷ ଜାଳାରେ କନ୍ଧେଇ ବେହେରା ଟଳି ପଡ଼ିଲା ପାଞ୍ଚ ମିନିଟ୍‌ରେ ? ତାକୁ ପୁଣି ଆଣି କୁତାମଚଣ୍ଡୀଙ୍କ ଆଗରେ ବସାଇ ଝଡ଼ା ଫୁଙ୍କା କରା ଯାଉଥିଲା । କୁତାମଚଣ୍ଡୀ ତାକୁ ରଖି ପାରିଲେନି କାହିଁକି ?

କହିବାକୁ ବସିଲେ ଅନେକ କଥା କହି ପାରିବି । କୁତାମଚଣ୍ଡୀଙ୍କ ହାତରେ କଣ ସବୁକାକ କ୍ଷମତା ଅଛି ନା କଣ ? ନା ସେ ଏ ଚରାଚର ବିଶ୍ୱର ହର୍ତ୍ତ୍ରୀ କର୍ତ୍ତ୍ରୀ ବିଧାତ୍ରୀ ? ତେବେ ତାଙ୍କ ସାଧ୍ୟମତେ ସେ ଆମ ଗାଁର

ଦାୟିତ୍ୱ ତୁଲଉ ନଥିଲେ ତ ଆଉ କଣ ? ଗାଁ ବାଲାଙ୍କର କି ଗୋଟାଏ ଭରସା ଥିଲା ତ !! ମାଆ ବୋଲି ଡାକଟାଏ ମାରିବା ପାଇଁ—"ମାଆଲୋ ରକ୍ଷାକର" କହି ଦଉଡ଼ିଯିବା ପାଇଁ ଜଣେ କେହି ଥିଲା ତ ! ସମସ୍ତଙ୍କର ନିଜ ନିଜର ମାଆ ଅଛନ୍ତି । ମାତ୍ର ସମସ୍ତଙ୍କର ହେଇ କିଏ ଗୋଟିଏ ମାଆ କଣ କୁଟାମଚଣ୍ଡୀଙ୍କ ଛଡ଼ା ଆଉ କିଏ ସେକାଳେ ଥିଲେ ନା ଏକାଳେ ବି ଅଛନ୍ତି ? କୁଟାମଚଣ୍ଡୀଙ୍କୁ ଦୋଷ ଦେଇ ଲାଭ ନାହିଁ । ବରଂ କୁଟାମଚଣ୍ଡୀଙ୍କ ନାଁରେ ବହୁ କଥା ପାର ହୋଇ ଯାଉଥିଲା । ବହୁ ସନ୍ଦେହ ଆଉ ଜିଜ୍ଞାସା ସମାଧାନ ହୋଇ ଯାଉଥିଲା । ଭଲ ହେଲେ କୁହାଯାଉଥିଲା—କୁଟାମଚଣ୍ଡୀ କୃପା କଲେ । ଖରାପ ହେଲେ କୁହାଯାଉଥିଲା—କୁଟାମଚଣ୍ଡୀ କୋପ କଲେ । ...ଆଜି ହୁଏତ ମୁଁ ଜାଣୁଛି ବା ମୋର ବିଶ୍ୱାସ ହୋଇଛି ଯେ ଆମର ଭଲ ମନ୍ଦ ପାଇଁ କେହି ଦାୟୀ ନୁହନ୍ତି କି ଆମେ ମଧ୍ୟ ଦାୟୀ ନୋହୁଁ । ଘୋର ଅନ୍ଧାରରେ ଅନ୍ଧ ନିୟତି ବାଡ଼ି ବୁଲଉଛି । ତାର ଆଖି ନାହିଁ, କାନ ନାହିଁ— ଏଣେ ବାଜିଗଲେ ଦୋଷ ନାହିଁ । ଘିରି ଘିରି ହୋଇ ବୁଲୁଛି ପୃଥିବୀ—ଥର ଥର ହୋଇ କମ୍ପୁଛି ମେଦିନୀ—କିଲିବିଲି ହୋଇ ଦଉଡ଼ିଛନ୍ତି ମହାଶୂନ୍ୟରେ ପ୍ରାଣମୂର୍ଚ୍ଛା ହୋଇ କିଏ କୁଆଡ଼େ । କୋଟି କୋଟି ସୂର୍ଯ୍ୟ, କୋଟି କୋଟି ଚନ୍ଦ୍ର ଆଉ କୋଟି କୋଟି ତାରା...କୁଆଡ଼ୁ ଆସିଲେ ଜଣା ନାହିଁ—କୁଆଡ଼େ ଯାଉଛନ୍ତି ଜଣା ନାହିଁ—ସାଲୁବାଲୁ ହେଉଛନ୍ତି ଅସଂଖ୍ୟ ଅଣୁ ପରମାଣୁ— କୋଉଠି କେତେବେଳେ ହଠାତ୍ ମିଶିଯାଉଛନ୍ତି—କୋଉଠି କେମିତି ହଠାତ୍ ଫିଟି ପଡୁଛନ୍ତି—ଆଗ ନାହିଁ କି ପଛ ନାହିଁ—ଅର୍ଥ ନାହିଁ କି ଅନର୍ଥ ନାହିଁ । କୋଉଠି ସମୁଦ୍ର ଶୁଖି ପର୍ବତ ବାହାରୁଛି—କୋଉଠି ପର୍ବତ ଦବିଲାଣି ରସା- ତଳକୁ—ସେଠି ଗଭୀର ସମୁଦ୍ରରେ ଲହଡ଼ା ଖେଳୁଛି । ଗୋଟିଏ ମୁହୂର୍ତ୍ତରେ ଏକାବେଳକେ କୋଟି କୋଟି ସୂର୍ଯ୍ୟ ଜନ୍ମ ହେଉଛନ୍ତି ମହାଶୂନ୍ୟରେ—ଆଉ କୋଟି କୋଟି ସୂର୍ଯ୍ୟ ପାଉଁଶ ହୋଇ ମିଳାଇ ଯାଉଛନ୍ତି ମହାଶୂନ୍ୟରେ...... ଏଠି କିଏ କାହାକୁ ତାରିବ ନା କିଏ କାହାକୁ ମାରିବ ?

ଏଭଳି ଯୋଉଠି ଅବ୍ୟବସ୍ଥା—ସେଠି ବିଶ୍ୱରୀ କୁଟାମଚଣ୍ଡୀ । ଅଢ଼େଇ ଫୁଟ ପଥର ଖଣ୍ଡିକ ଉପରେ ବଙ୍କା ଢଙ୍କା ମୂର୍ତ୍ତିଟିଏ । ମୁହଁଯାକ ସିନ୍ଦୂର ବାଲୁ ବାଲୁ—କଳା ଶାଲୁ ଖଣ୍ଡିଏ ଦେହରେ ବେହରଣ ? ଦୁଇ ଗ୍ରରିଟା କନିଅର

ଆଉ ମନ୍ଦାର ଫୁଲ ଏଠି ସେଠି ଖୋଷା ହୋଇଛି । ଭଙ୍ଗାରୁଜା ଘର । ଚାଳରୁ ଛପର ଉଡ଼ିଗଲାଣି । ଘରଯାକ ଉଇହୁଙ୍କା । ହଳଦୀ ଆଉ ସିନ୍ଦୂର ମିଶା ପାଣି ମାଟି ଚଟାଣରେ ଭିଜି ଭିଜି ଘରଜାକ ବିଚିକିଟା ଗନ୍ଧରେ ଫାଟିପଡୁଛି । ଦେହଜାକ ଜନ୍ଦା ଆଉ ଝିଟିପିଟି ଚାଲୁଛନ୍ତି । ପିଣ୍ଡି ତଳକୁ ପୋଡ଼ା ମାଟିର ଭଙ୍ଗା ଘୋଡ଼ା, ହାତୀ ଆଉ ବାଘ ଗଦା ହୋଇଛନ୍ତି । ତା' ସନ୍ଧିରେ ମୂଷା, ଚୁଚୁନ୍ଦ୍ରା ଆଉ ଚିତିସାପ ଲୁଚିଛନ୍ତି । କଣ ଲାଭ ଭଲା କୁତାମଚଣ୍ଡୀଙ୍କୁ ଦୋଷ ଦେଇ ? ବରଂ ଅସହାୟା ବୋଲି ବେଶି ଦୟା କରିବା କଥା । ଯେମିତି ନିଜ ମାଆ ଉପରେ ଦୟା ହୁଏ । କେତେ ଛାତି ଫଟା ସ୍ନେହ ତାର । କିନ୍ତୁ କି ଶକ୍ତିହୀନ ! ସାମର୍ଥ୍ୟହୀନ ! ମହାଶୂନ୍ୟ ଆଉ ଅନ୍ଧା ନିୟତି ହାତରେ ଏଠି ସମସ୍ତେ କ୍ରୀଡ଼ନକ—ପୁଅମାନେ ଆଉ ମାଆମାନେ । ଏଠି କିଏ କାହାକୁ ରଖିପାରିବ । ମାଆ ପୁଅକୁ ନା ପୁଅ ମାଆକୁ—କେହି ରଖି ପାରିବେ ନାହିଁ । ଏଠି କିଏ ପଚାରେ ତୁମର ସ୍ନେହକୁ —ଆସକ୍ତିକୁ—ପ୍ରେମକୁ ? କଣ ତାର ମୂଲ୍ୟ ? ସ୍ନେହ କି ପ୍ରେମ ତ ନିଜେ ନିଜକୁ ବି ରଖିପାରିବେ ନାହିଁ—ଅନ୍ୟକୁ ରଖିବା କେତେ ଦୂରର କଥା । ଆସକ୍ତି ଏଠି ଖାଲି ଯନ୍ତ୍ରଣା । ଏହା ନିଜର ନିପାରିଲା ପଣକୁ, ଅସହାୟ ପଣକୁ ଆହୁରି ଗାଢ଼ କରି ଚେତେଇଦିଏ । ସବୁ ଆସକ୍ତିର ସେତିକି ପରିଣତି —ସେତିକି ମୂଲ୍ୟ । ଆମ ଗାଁର ବାର ସାଇର ଲୋକଙ୍କର ସ୍ନେହମୟୀ ମାଆ କୁତାମଚଣ୍ଡୀ । ହଜାରେ କି ବାରଶ କେତେ ବର୍ଷ ହେଲାଣି କେଜାଣି, କିନ୍ତୁ ଏଇ ମୁଲକରେ ଆମ ଗାଁର ପତନ ହେଲା ଦିନରୁ ଲକ୍ଷ ଲକ୍ଷ ଗ୍ରାମ-ବାସୀଙ୍କର ଭଲମନ୍ଦ, ପାପପୁଣ୍ୟ, ଆପଦବିପଦର ଦାୟିତ୍ୱ ନେଇଥିବା, ସ୍ନେହ କୃପା ବାତ୍ସଲ୍ୟରେ ଗାଁଟାଜାକର ଲୋକଙ୍କୁ ପଣତ ଘୋଡ଼ାଇ ରଖୁଥିବା ଆଉ ଆପଣା ଶକ୍ତି ସାମର୍ଥ୍ୟର ବାହାରକୁ ନ ଯାଇ ପାରୁଥିବା ଅଢ଼େଇଫୁଟ ପଥରରେ ନିର୍ମିତ ହଳଦୀ ସିନ୍ଦୂରବୋଳା, କଳାକନାଗୁଡ଼ିଆ ଠାକୁରଣୀଟିଏ ଏଇ କୁତାମଚଣ୍ଡୀ । ସେ ପୁଣି କୁଆଡ଼େ ରାତି ଅଧରେ ବର୍ଷକ ତିନିଶ ପଞ୍ଚଷଠୀ ଦିନ ବର୍ଷା ଶୀତ ନ ମାନି, ପୋଡ଼ା ମାଟିର ଘୋଡ଼ା କି ବାଘ ଉପରେ ଚଢ଼ି ମୋ ଗାଁର ବାର ସାଇଜାକ ବୁଲୁଥାନ୍ତି—ଆଗତ ଭବିଷ୍ୟ ବିପଦ ଆପଦମାନ କଳୁଥାନ୍ତି—ଅବାରଣ ବାରଣ ପାଞ୍ଚୁଥାନ୍ତି—ଅପଶକ୍ତି ବା ଅପ

ଦେବତାମାନଙ୍କ ସଙ୍ଗେ ବୁଝିଆବୁଝି ବା ସନ୍ଧିସାଲିସି କରି—ଅବା ଅନୁନୟ ବିନୟ କରି—କିମ୍ବା କଳିକଜିଆ କରି—ସେମାନଙ୍କୁ ଗାଁରୁ ତଡୁଥାନ୍ତି । ଅଥବା ପୁଣି କେବେ କେବେ ନିଜ ପିଲାଙ୍କୁ ସେମାନଙ୍କ ଦାଢରୁ ବଂଚାଇବା ଲାଗି ସେମାନଙ୍କ ସଙ୍ଗେ ଯୁଦ୍ଧବିଗ୍ରହ କରି, ନିଜଠାରୁ ବଳପୂର୍ବା ଅପଶକ୍ତିମାନଙ୍କ ହାତରୁ ମଧ୍ୟ ସହସ୍ରବାର ମାଡ଼ଗାଳି ଓ ଅପମାନ କଷଣ ସହୁଥାନ୍ତି ନୀରବରେ । କଷଣ ସହୁଥାନ୍ତି ନୀରବ ସଂଗୋପନରେ ବର୍ଷ ବର୍ଷ ଧରି, କେଜାଣି କେତେ ବର୍ଷ ହେଲା ପାଅଁଶ କି ହଜାରେ । ସେଇ କୁତାମଚଣ୍ଡୀ, ବାର ସାଇର ଅଧିଷ୍ଠାତ୍ରୀ ଦେବୀ, ବାର ସାଇର ଦାରିଦ୍ର୍ୟଶୀଳା ସ୍ନେହ ମମତାମୟୀ ମାଆ ଠାକୁରଣୀ ଆଉ ଏଠି ଏ ଗାଁରେ ରହିବେ ନାହିଁ ? କାହିଁକି ?

ବୋଉ କାହିଁକି ଏ କଥା କହୁଛି ? କାହିଁକି ସେ ଆଉ ଏଠି ରହିବେ ନାହିଁ ? ସେ ଯଦି ଏଠି ନ ରହନ୍ତି ତେବେ ଆମେ ସବୁ ଏ ଗାଁରେ ରହିବୁ କେମିତି ? ଆଉ କାହିଁକି ବା ରହିବୁ ? ଅବଶ୍ୟ ବର୍ତ୍ତମାନ ହଇଜା କି ବସନ୍ତରୁ ରକ୍ଷା କରିବାର ଦାୟିତ୍ୱ କୁତାମଚଣ୍ଡୀଙ୍କ ଉପରେ ନାହିଁ । ଚୋରକୁ ଖୋଜି ବାହାର କରିବା ଲାଗି ମଧ୍ୟ ତାଙ୍କ କାଳେସୀର ଆବଶ୍ୟକତା ନାହିଁ । ବର୍ତ୍ତମାନ ଆମ ଗାଁରେ ଡାକ୍ତରଖାନା, ହାସପାତାଳ, ଥାନା ଓ ଆମ ଅଭାବ ପୂରଣକାରୀ ବହୁ ଅନୁଷ୍ଠାନ ଅଛି । ବର୍ତ୍ତମାନ ମଧ୍ୟ କୋଉ କଥା ପାପ, ଆଉ କୋଉ କଥା ପୁଣ୍ୟ, ତାର ସର୍ବଶେଷ ବିଗ୍ରହ ଲାଗି ମଧ୍ୟ କେହି କୁତାମଚଣ୍ଡୀଙ୍କ ଉପରେ ନିର୍ଭର କରିବ ନାହିଁ । ତାଙ୍କର ମଧ୍ୟ ଆଉ ଏ ବୟସରେ ଗାଁର ବାର ସାଇର ଲୋକଙ୍କ ଦାୟିତ୍ୱ ନେବା ଦରକାର ନାହିଁ—ଉଚିତ ମଧ୍ୟ ନୁହେଁ । ଆଜି ଆମ ଗାଁ ଲୋକଙ୍କ ଚିତ୍ତରେ ତାଙ୍କ ସ୍ଥିତିର କୌଣସି ବ୍ୟାବହାରିକ ଗୁରୁତ୍ୱ ଇ ନାହିଁ ।

ସେ ଥିଲେ କେତେ, ନ ଥିଲେ ବା କେତେ—ସେଥିପାଇଁ କାହାର ମୁଣ୍ଡ ବଥାଇବ ନାହିଁ । ସେ ବର୍ତ୍ତମାନ ଗ୍ରାମ ଉପକଣ୍ଠରେ ଭଙ୍ଗା ଖଲ୍ଲ ଘରେ ପଡ଼ିଥିବା ଖଣ୍ଡିଏ ପଥର ମାତ୍ର । ଏବଂ ଦେଶର ପ୍ରତ୍ନତତ୍ତ୍ୱ-ବିଭାଗ ସେ ପଥରକୁ ନିରୀକ୍ଷଣ କରି ଓ ପରୀକ୍ଷା କରି ସ୍ଥିର କରିବେ ଏ ମୂର୍ତ୍ତି କୋଉ ଶତାବ୍ଦୀରେ ନିର୍ମିତ । ଏ ବୌଦ୍ଧ ମହାଯାନୀ ତନ୍ତ୍ରର ଦେବୀ ନା

ହିନ୍ଦୁ ତନ୍ତ୍ରର ଗ୍ରାମଣ୍ଡୀ । ଏ ଅଂଚଳର ପ୍ରତ୍ନତାତ୍ତ୍ୱିକ ଗୁରୁତ୍ୱ ଦୃଷ୍ଟିରୁ ଏ ମୂର୍ତ୍ତିଟିର ମୂଲ୍ୟ କେତେ ହୁଏତ ସେମାନେ ତାହା ନିରୂପଣ କରିବେ । ବର୍ତ୍ତମାନର ଶିକ୍ଷିତ ଯୁବକ ଗ୍ରାମବାସୀ ହୁଏତ ଭାବୁଥିବେ ପ୍ରତ୍ନତତ୍ତ୍ୱବିଭାଗ ଯଦି ଏ ମୂର୍ତ୍ତିଟିକୁ ନିକଟସ୍ଥ ଯାଦୁଘରକୁ ନେଇଯାନ୍ତା, ତେବେ ଗ୍ରାମର ଯୁବ ସମିତି ସେ ବାବତକୁ ବେଶ୍ କିଛି ଅର୍ଥ ମଧ୍ୟ ଲାଭ କରନ୍ତେ । ଏବଂ ସେ ଜାଗାରେ ସେମାନେ ଗୋଟିଏ ସମିତି ଗୃହ ବା କ୍ଲବ୍ ଘର ନିର୍ମାଣ କରନ୍ତେ ।

କିନ୍ତୁ ବୋଉ ମୁହଁରୁ କୁତାମଚଣ୍ଡୀ ଏ ଗାଁ ଛାଡ଼ି ଚାଲିଯିବେ ଶୁଣିବା କ୍ଷଣି ମୋର ହୃଦୟ ବିଦାରି ହୋଇଗଲା । ସତେ କି କୁତାମଚଣ୍ଡୀ ନୁହନ୍ତି, ମୋ ବୋଉ କହୁଛି ଯେ ଏ ଅବହେଳା ସହି ନପାରି ସେ ଏ ଗାଁ ଛାଡ଼ି, ଆମ୍ଭମାନଙ୍କୁ ଛାଡ଼ି କୁଆଡ଼େ ପଳେଇବେ ! ସତେକି ବୋଉ କହୁଛି—ଯେ ଆମେ ସବୁ ବର୍ତ୍ତମାନ ତାକୁ ଅଦରକାରୀ ଭାବିଲୁଣି—ଅବାନ୍ତର ବୋଲି ଭାବିଲୁଣି—ଏବଂ ତାକୁ ଗୋଟିଏ ବହୁବର୍ଷର ଅବକ୍ଷୟମାଣ କୁସଂସ୍କାରର ପ୍ରତୀକ ବୋଲି ଭାବିଲୁଣି—ଅତଏବ ତାର ଆମ୍ଭମାନଙ୍କୁ ଛାଡ଼ି ଚାଲିଯିବା ଉଚିତ !! ପୁରୀ ବଡ଼ ଦାଣ୍ଡରେ ବୁଲି ଭିକ ମାଗିବା ଉଚିତ ।

ମୁଁ ବିରସ କଣ୍ଠରେ ପଚାରିଲି—ବୋଉ ! ତୁ କେମିତି ଜାଣିଲୁ ଯେ କୁତାମଚଣ୍ଡୀ ଆଉ ଆମ ଗାଁରେ ରହିବେ ନି ବୋଲି ?

ବୋଉ ସେହିଭଳି ବିଷନ୍ନ ଆଉ ଅଭିମାନାତ୍ମକ କଣ୍ଠରେ କହିଲା—କେମିତି କଣ ଜାଣିଲିରେ ପୁଅ । ଦୀନା ବେହେରାକୁ ଜାଣିଛୁ ଟି । ମୁଁ କହିଲି—ହଁ ମୁଁ ଦୀନା ବେହେରାକୁ ଜାଣିନି ? ଆମ ଗାଁରେ ତା'ଭଳି ସୁନ୍ଦର ମଣିଷ ଆଉ କିଏ ଅଛି ? ତାକୁ ଦେଖିଲେ ମୋର ଭକ୍ତି ଆସେ । ବୋଉ କହିଲା—ସେଇ ଦୀନା ବେହେରାକୁ ସ୍ୱପ୍ନରେ ଦେଖା ଦେଇ କୁତାମଚଣ୍ଡୀ କହିଲେ—ଆରେ ଦୀନୁ ! ଆଉ ମୁଁ ଏ ଗାଁରେ ରହିବି ନାହିଁ । ମତେ ତ ଆଉ ଗାଁ-ବାଲା ପଚାରୁ ନାହାନ୍ତି । ମୋତେ ଗଣ୍ଡିଏ ଉଖୁଡ଼ା ବି ଭଲକରି ଖାଇବାକୁ ଦେଉ ନାହାନ୍ତି । ପଣାପାଣି ଟିକିଏ ବି ମୋ ପାଟିରେ ଦେଲେ ନାହିଁ । ଖଣ୍ଡିଏ ଚିରା କରିଆ ବି ମୋ ଦେହରେ ନାହିଁ । ମୋ ହତା ଭିତରେ ଗୋରୁ

ଚମଡ଼ା ବୋହି ନଉଛନ୍ତି । ମୋ କବାଟରେ କୋଲପଟିଏ ବି ନାହିଁ । ଘର ଠିଆ ମେଲା । କୁକୁର ଶିଆଳ ପଶୁଛନ୍ତି । ମୁଁ ସେ ଘର ଛାଡ଼ି ଏ ଗଛ ସେ ଗଛ ହଉଛି । କୋଉଠି ବସିବାକୁ ତ ମତେ ଜାଗା ନାହିଁ । ମୁଁ ଚାଲିଯାଉଛି ପୁରୁଷୋତ୍ତମ । ସେଇଠି ବିମଳାଙ୍କ ପାଖରେ ରହିବି । ଗଣ୍ଡିଏ ଖାଇବାକୁ ତ ମିଳିବ ସେଠି । ଖରା ବର୍ଷାରେ ବାସ ଟିକିଏ ତ ହେଲେ ମିଳିବ । ଏଣେ ଜଗନ୍ନାଥଙ୍କ ଦର୍ଶନ ତ ପାଇବି ।...

ବୋଉ ଏତିକି କହି ଧୁକୁ ଧୁକୁ ହୋଇ କାନ୍ଦିଲାଗିଲା । ମୁଁ ବୋଉକୁ କୋଳକୁ ଆଉଜାଇ ନେଇ କହିଲି–ତୁ ତୁନି ହୁଅ ବୋଉ । ମୁଁ ଦେଖିବି କୁଟାମଚଣ୍ଡୀ କେମିତି ଆମକୁ ଛାଡ଼ିଛୁଡ଼ି ଦେଇ ଏ ଗାଁ ଛାଡ଼ି ପଳେଇବେ ମୁଁ ଦେଖିବି । କୋଉ ମାଆ ଭଲା ତା' ପିଲାଙ୍କୁ ଛାଡ଼ି କୁଆଡ଼େ ପଳେଇ ଯାଇ ପାରିବ ? ମିଛ କଥା । ତୁ ତୁନି ହୁଅ ।

ବୋଉ କିନ୍ତୁ ସେହିଭଳି ଆହତ ଅଭିମାନୀ କଣ୍ଠରେ କହି ଚାଲିଥାଏ–ନାଇଁ ନାଇଁ ସେ ଯାଉ । ଯାଉ ଚାରି ସେ ପୁରୁଷୋତ୍ତମ । କାହିଁକି ସେ ଆଉ ଏଠି ରହିବରେ ? ତୁମର ଏଠି ଏତେ କୋଠା ଟୋଳା ଚାଲିଛି–ଏତେ ଭେଜି ଘତରେ ଗାଁ ପଡୁଛି ଉଠୁଛି । ଆଉ ତାକୁ ଏଡ଼େ ହିନୀମାନ କରି ଏଠି ଏ ଗାଁବାଲା ରଖିବେ–ସେ ରହିବ ? କାହିଁକି ବା ? ସେ ଯାଉ ଚାରି ପୁରୁଷୋତ୍ତମ–ବିମଳାଙ୍କ ପାଖକୁ ।

ବୋଉ ଯେମିତି କଥା କହୁଥାଏ–ମନେ ହେଉଥାଏ ସତେ କି ବୋଉ ତା' ନିଜ ବୋଉ କଥା କହୁଛି–ଆଉ ଆମକୁ ଝିଙ୍ଗାସୁଛି । ମୁଁ କହିଲି–ବୋଉ ! ଚାଲ ଯିବା ଠାକୁରାଣୀଙ୍କ ପାଖକୁ ।

ମାଆ ପୁଅ ଦୁହେଁ ଯାଇ ପହଁଚିଲୁ କୁଟାମଚଣ୍ଡୀଙ୍କ ପାଖେ । ଦୀନା ବେହେରାଙ୍କ ସ୍ୱପ୍ନବୃତ୍ତାନ୍ତ ଶୁଣିବା ପରେ ଗାଁବାଲା ଟିକିଏ ସଚେତନ ହୋଇ ଉଠିଛନ୍ତି । କେତେକ ଲୋକ ଜମିଛନ୍ତି ସେଠି । ନିଜେ ଦୀନା ବେହେରା ଫୁଲମାଳଟିଏ ପକେଇ ଏକବସ୍ତ୍ର ହୋଇ ଗୋଟିଏ ଓଳି ହବିଷ କରି ଠାକୁରାଣୀଙ୍କ ଆଗ କନିଅର ଆଉ ମନ୍ଦାରବଣ ଭିତରେ ନଡ଼ିଆ ଗଛଟିଏ

ପାରି ତା' ଉପରେ ବସିଛି । ତା' ଆଗରେ ଘଣ୍ଟିଏ । ତା' ଭିତରେ କେତୋଟି ନୋଟ୍ ମୁଦ୍ରା ପଡ଼ିଛି । ଗାଁବାଲା ଯେଉଁମାନେ ଆସୁଛନ୍ତି କିଛି ଗୁନ୍ଦା ପକାଉଛନ୍ତି ତା' ଭିତରେ । ଆଉ କେତେକ ଗ୍ରାମବାସୀ ବେଢ଼ା ସଫା କରୁଛନ୍ତି କୋଡ଼ି କୋଦାଳ ଧରି । କେତେକ ଛାମୁଣ୍ଡିଆ ତିଆରିରେ ଲାଗିଛନ୍ତି । ଶୁଣିଲି—ଆସନ୍ତା ସଂକ୍ରାନ୍ତିକି ଗୋଟାଏ ବଡ଼ ଯଜ୍ଞ ହେବ ଏବଂ ତା' ପରଦିନ ଏକ ବଡ଼ ଜନ୍ତାଳ ହେବ । ଦୀନା ବେହେରାର ସ୍ୱପ୍ନ ସମସ୍ତଙ୍କ ଭିତରେ କିଛି ଆତଙ୍କ ମଧ୍ୟ ସୃଷ୍ଟି କରିଛି । ବହୁ ବର୍ଷ ଧରି ଏଠି ଠାକୁରାଣୀ କାହା ଉପରେ ଅବତରି ନ ଥିଲେ ! କାହାକୁ କାଳେସୀ ଲାଗି ନ ଥିଲେ । କାହାକୁ ବି ସପନେଇ ନ ଥିଲେ । ମାତ୍ର ଏବେ ଦୀନା ବେହେରାକୁ ସପନେଇଛନ୍ତି । ବହୁ ଲୋକଙ୍କ ଭିତରେ ଆତଙ୍କ ଖେଳିଛି । କେଜାଣି କଣ ଅଘଟନ ଦୁର୍ବିପାକ ଘଟିଯିବ । ଆମ ଗାଁର ଦୁଇଜଣ ବଡ଼ ମହାଜନ କଥା ଦେଲେଣି—ଠାକୁରାଣୀଙ୍କ କୋଠାଘର ତୋଳାଇଦେବେ । ଯୁବନେତା ଏମ୍. ଏଲ୍. ଏ. ମଧ୍ୟ ଲୋକଙ୍କ ମତିଗତି ଦେଖି କହିସାରିଲେଣି—ଏଠି ଗୋଟେ ଭଲ କୂଅ ଖୋଳାଯିବ । ଗାଁର ସବୁଠାରୁ ଚତୁର ଧୂର୍ତ୍ତ ଆଧୁନିକ ବ୍ୟବସାୟୀ ଜଣେ, ଯେ କି ଠାକୁରାଣୀଙ୍କ ଜମି ଦାୟିତ୍ୱରେ ଥିଲେ—ସେ ମଧ୍ୟ କହିଲେଣି ଯେ ଠାକୁରାଣୀଙ୍କ ପାଇଁ ନିକଟରେ ଗୋଟିଏ କମିଟି ଗଠନ କରି ତାଙ୍କର ଆୟ ବଢ଼ାଇବା ଲାଗି ଚେଷ୍ଟା କରିବେ ।

ଦୀନା ବେହେରାଙ୍କୁ ଦେଖିଲି । ଘଣ୍ଟରେ ଗୁନ୍ଦା ଦେଲି । ଦୀନା ବେହେରା ମତେ ଟିକିଏ ପାଦୁକ ପାଣି ଦେଲେ । ମୋ ବେକରେ ସିନ୍ଦୂର ଲଗାଇ ଦେଲେ । ମୁଁ ତାଙ୍କୁ ଚାହିଁଲି । ସରଳ ଶୀର୍ଣ୍ଣ ଚେହେରାର ଲୋକଟିଏ । ତାଙ୍କ ଭିତରୁ ତାଙ୍କର ପବିତ୍ର ଆତ୍ମା ମତେ ସ୍ପଷ୍ଟ ଦେଖାଯାଉଥିଲା । ସେ କାହାଠାରୁ କିଛି ଦାବୀ କରୁ ନ ଥିଲେ । ବରଂ ସେ ଅତି ସହଜ ମନେ ହେଉଥିଲେ । ତାଙ୍କ ବ୍ୟବହାରରୁ ଜଣା ପଡୁ ନ ଥିଲା ଯେ ସେ କିଛି ଗୋଟାଏ ଅସାଧାରଣ ଅଲୌକିକ ଅନୁଭୂତି ପାଇଛନ୍ତି ବୋଲି ଖୁବ୍ ଗର୍ବ ବା ଗୌରବାନ୍ୱିତ ମନେ କରୁଛନ୍ତି । କିନ୍ତୁ ତାଙ୍କର ଚାହାଣୀ ଖୁବ୍ ସ୍ୱପ୍ନାଚ୍ଛନ୍ନ ଓ କୋମଳ ଥିଲା । ତାଙ୍କୁ ଦେଖି ମୋର କିନ୍ତୁ ବିଶ୍ୱାସ ହୋଇଗଲା ଯେ ସତକୁ ସତ ସେ କୁତାମଚଣ୍ଡୀଙ୍କୁ ଦେଖିଛନ୍ତି । ତାଙ୍କ କଥା ଶୁଣିଛନ୍ତି । ତାଙ୍କ ଦୁଃଖ

ବୁଝିଛନ୍ତି । ତାଙ୍କ ଅଭିମାନକୁ ହୃଦୟଙ୍ଗମ କରିଛନ୍ତି । ସେତେବେଳକୁ ସନ୍ଧ୍ୟା ହୋଇ ଆସୁଥାଏ । ଆକାଶରେ ମେଘ ଜମିଥାଏ । ମାତ୍ର ପଶ୍ଚିମଆକାଶରେ ଯୋଉଠି ସୂର୍ଯ୍ୟ ଢଳି ପଡ଼ୁଥିଲେ ; ସେଠି ଖୁବ୍ ରକ୍ତବର୍ଣ୍ଣ ଜମି ଯାଇଥାଏ । ଏବଂ ସେଥିରୁ ଝଲକା ଝଲକା ରକ୍ତିମ ରଶ୍ମୀ ବାଉଁଶ ବଣ, ଦେବଦାରୁବଣ, ଓ ଆମ୍ବ ଜାମୁ ଆଦି ଗଛମାନଙ୍କ ଫାଙ୍କ ଦେଇ ଠାକୁରଣୀଙ୍କ ବେଢ଼ାକୁ ଗୋଟାଏ ଅଲୌକିକ ରଙ୍ଗରେ ରଞ୍ଜିତ କରିଥାଏ । ଠାକୁରଣୀଙ୍କ ଘର ଭିତରୁ ଝୁଣା ଧୂଆଁ ପଦାକୁ ବାହାରି ଆସୁଥାଏ । ଦୀନା ବେହେରା ସେହିଭଳି ନଡ଼ିଆ ଗଂଛ ଉପରେ ଧୀରଭବେ ବସି ରହିଥାନ୍ତି । ଦଳ ଦଳ ହୋଇ ଲୋକ ତାଙ୍କ ପାଖକୁ ଆସୁଥାନ୍ତି । ଡାଲା ଡାଲା ଭୋଗ ବାହାରେ ଥୁଆ ହୋଇଥାଏ । ଠାକୁରଣୀଙ୍କ ଘର ଭିତରେ ପୂଜାରୀ ଘଣ୍ଟି ବଜାଇ ଭୋଗ କରୁଥାନ୍ତି ଓ ମଧ୍ୟେ ମଧ୍ୟେ "ମା" "ମା" ବୋଲି ଉଚ୍ଚ ସ୍ୱରରେ ଡାକି ଉଠୁଥାନ୍ତି । ଏଣେ ବାହାରେ ଜମିଥିବା ଲୋକେ ପରସ୍ପର ମଧ୍ୟରେ ଦୀନା ବେହେରଙ୍କ ସ୍ୱପ୍ନ ବିଷୟରେ ଧୀରେ ଧୀରେ କେହି ବା ବଡ଼ ପାଟିରେ ଆଲୋଚନା ଚଳାଇଥାନ୍ତି । ଦୁଇ ତିନିଜଣ ମିଆଁ ମଧ୍ୟ ଖଣ୍ଡେ ଦୂରରେ ଠିଆ ହୋଇ ଏହି ଦିଗରେ ଚାହିଁ ରହିଥାନ୍ତି । ...ମୁଁ ମୋର ବୋଉ ବୁଢ଼ୀର ହାତ ଧରି ଠାକୁରଣୀଙ୍କ ଘର ଭିତରକୁ ପଶିଗଲି । ଖଣ୍ଡିଏ ନୂଆ ନାଲି ରଙ୍ଗର କଣ୍ଠା ଶାଢୀରେ ତାଙ୍କୁ ଆପାଦମସ୍ତକ ଘୋଡ଼ାଇ ଦିଆଯାଇଥାଏ । ଆଉ ଖଣ୍ଡିଏ କଳା ଶାଲୁକନା ତାଙ୍କ ମୁଣ୍ଡ ଉପରେ ଓଢ଼ଣା ଭଳି ଗୁଂଜାଯାଇଥାଏ । ଗୋଟିଏ କନିଅର ଓ ମନ୍ଦାର ଫୁଲର ମାଳା ମଧ୍ୟ ସେ ପିନ୍ଧିଥାନ୍ତି ।

ସେ ଘର ଭିତରକୁ ପଶି ଠାକୁରଣୀଙ୍କୁ ଦେଖିବା ମାତ୍ରେ ମୋର ହୃଦୟ ଥରିଉଠିଲା । ଅନେକ ବର୍ଷ ହେଲା ମୁଁ ତାଙ୍କ ପାଖକୁ ଆସିନାହିଁ । ତାଙ୍କୁ ଦେଖି ନାହିଁ । ତାଙ୍କ ଭଲମନ୍ଦ ବୁଝିନାହିଁ । ମନରେ ଦୋଷୀଭବ ପ୍ରବଳ ହୋଇଉଠିଲା । ଏବଂ ତତ୍‌ସଙ୍ଗେ ସଙ୍ଗେ ଅନୁତାପ ଓ କୃତଜ୍ଞତାବୋଧର ଢେଉ ଉଚ୍ଛୁଳି ଉଠିଲା । ମୁଁ ତାଙ୍କ ବିଗ୍ରହକୁ ଧରିପକାଇଲି । ତାଙ୍କ ଦୁଇ ପାଦକୁ ଧରି ଭୂମିରେ ମୁଣ୍ଡ ଲଗାଇ ପ୍ରଣାମ କଲି । ମନେ ମନେ କହିଲି– ମାଆ ! ତୁ ଆମର ପରମାରାଧ୍ୟା ! ତୋର ଅନୁରାଗ ଆଉ କୃପାର ଅନ୍ତ ନାହିଁ । ତୋ' ଋଣ ଆମେ ଜନ୍ମ ଜନ୍ମ ଧରି ସୁଝି ପାରିବୁ ନାହିଁ । ପୁରୁଷ

ପୁରୁଷ ଧରି ଆମେ ଏ ଗାଁବାଲଙ୍କାକ ତୋର ନିଗପଦ ପଣତ ତଳେ ଆଶ୍ରା ପାଇଛୁ–ଭରସା ପାଇଛୁ–ସ୍ନେହ ପାଇଛୁ । ମାଆ ସତରେ କଣ ତୁ ଆମକୁ ଛାଡ଼ି ଏଠୁ ଗ୍ଲଲିଯିବୁ ବୋଲି ଘିର କରିଛୁ ?

ଏତିକି କହୁ କହୁ ମୋ ଭିତରେ ଅଜ୍ଞାନ ବାଳୁତ ଶିଶୁର କୋହ ଘୋଟିଗଲ । ମୋର ଆଖିରୁ ଧାର ଧାର ଲୁହ ଗଡ଼ିଲ । ମୁଁ ଭୁମିରୁ ମୁଣ୍ଡ ଉଠାଇ ଠାକୁରଣୀଙ୍କୁ ଜାବୁଡ଼ି ଧରିଲି । ତାଙ୍କ ମୁହଁ ଆଉ ଦେହକୁ ଆଉଁସି ଲଗିଲି ଏବଂ ମନେ ମନେ କହି ଲଗିଲି–ମାଲେ ! ତୁ ଏ ଗାଁ ଛାଡ଼ି ଯା'ନା । ତୁ ଗଲେ ଘରି ଏ ଗାଁ ଛେଉଣ୍ଡ ହୋଇଯିବ । ଏ ଗାଁ ଆଉ ଭଲ ଲଗିବ ନାହିଁ । ମୋ ବୋଉ ସର୍ବଦା କାନ୍ଦିବ । ମୋ ବୋଉଭଳି ଏ ଗାଁରେ ବହୁ ଲେକ ତୋ' ପାଇଁ କାନ୍ଦିବେ । ଜୀବନସାର କାନ୍ଦିବେ । ମୁଁ ଆଉ ଏ ଗାଁକୁ ଆସିବି ନାହିଁ । ମାଲେ ! ଯେଝା କାମରେ ବ୍ୟସ୍ତ ରହି ତୋତେ ଭୁଲି ଯାଇଥିଲୁ । ଆଜିକାଲି ଜୀବନ ବଞ୍ଚେଇବା ଆଉ ପରିବାର ପୋଷଣ କରିବା ବହୁ କଷ୍ଟକର ହୋଇ ପଡ଼ିଛି ମାଆ ! ମୁହୂର୍ତ୍ତେ ବି କାହାକୁ ଫୁରୁସତ୍ ମିଳୁନାହିଁ । କିନ୍ତୁ ତଥାପି ମୁଁ ମାନୁଛି–ଆମେ ତୋ' ପାଖରେ ମହା ଅପରାଧ କରିଛୁ । ତୁ କ୍ଷମା କର ମାଆ । ମୁଁ କଥା ଦଉଛି ମାଆ–ଆମେ ତୋ ଘରକୁ କୋଠା କରିଦବୁ । ତୋତେ ସମ୍ବଲପୁରୀ ମଠା ଆଉ ସୋନପୁରୀ ପାଟ ଶାଢ଼ୀ ପିନ୍ଧେଇବୁ । ତୋ' ମୁଣ୍ଡରେ ରୁପା ମୁକୁଟ ଚଢ଼େଇବୁ । ତୋତେ ସୁନା ନୋଥ ଆଉ ରୁପା ଚୁଡ଼ୀ ପିନ୍ଧେଇବୁ । ତୋତେ ପାଞ୍ଚ ଧୂପ ଭୋଗ ଦେବୁ । ତୋତେ ଯାହା ରୁଚିବ ସେ ଦ୍ରବ୍ୟ ଆମେ ତୋତେ ଭୁଞ୍ଜାଇବୁ । ମାଲେ ! ଆମେ ବାରସାଇର ପୁଅ ଝିଅ ଏତେ ଥାଉଁ ଥାଉଁ ତୁ ଏମିତି ନିରିମାଖୀ ହୋଇ ଗ୍ଲଲିଯିବୁ କୁଆଡ଼େ ? ଆଛା ମାଆ ! ତୁ ଭଲ ଏତେ ବର୍ଷ ଧରି ମନେ ମନେ ଏମିତି ଅଭିମାନରେ ରହିଲୁ କାହିଁକି ? ଏଇ ଗତ କୋଡ଼ିଏ ପଚିଶ ବର୍ଷ ଭିତରେ ତୁ କାହା ଉପରେ ଅବତରି ନ ଥାଉ ? କାଳେସୀ ଲଗେଇ ନ ଥାଉ ? ସପନେଇ ନ ଥାଉ ? ମୋତେ କାହିଁକି ସ୍ୱପ୍ନରେ ଦେଖା ଦେଲୁନି କହିଲୁ ଦେଖି । ତୁ କଣ ବୁଝି ପାରୁନୁ ଆମେ ସବୁ କେତେ ବ୍ୟସ୍ତତା ଆଉ ଜଞ୍ଜାଳ ଭିତରେ ଦିନ କାଟୁଛୁ ? ଅବଶ୍ୟ ମୁଁ ମୋ କାନ ମୋଡ଼ି ହୋଇ କହୁଛି ଯେ ତତ୍‌ସତ୍ତ୍ୱେପି ଆମେ ତୋ କଥା ବୁଝିବା

ଉଚିତ୍ ଥିଲା । କିନ୍ତୁ ତୋର ମଧ୍ୟ ବହୁ ଆଗରୁ ସପନେଇବା ଉଚିତ୍ ଥିଲା ।
ଆଗେ ତ ବହୁ ଲୋକଙ୍କୁ ବହୁବାର ସପନାଉଥିଲୁ । ଏବେ କଣ ହେଲା ?
ଆମେ ତୋ ଅସୁବିଧାଟା ଜାଣିବୁ କିପରି ? ଅବଶ୍ୟ ଏ କଥା ସତ ଯେ
ଆମେ ସବୁ ଏ ଯୁଗରେ ବାଲୁଙ୍ଗା ଜନ୍ମ ହୋଇଛୁ । ଆମ କଥା ଛଡ଼ା ଆମର
ଆଉ କୋଉ ଦିଗକୁ ନିଘା ନାହିଁ । ଆମ ମୁଣ୍ଡ ମଧ୍ୟ ଥୟ ନାହିଁ । ଆମେ
ସବୁ ବାରଘରଉଳିଆ ଧରିଗଲୁଣି । ଆମ ହୃଦ ପଥର ହୋଇଗଲାଣି । ତଥାପି
ମାଆ—ମୁଁ ତତେ ନେହୁରା ହୋଇ କହୁଛି—ତୁ ଯା'ନା ! ତୁ ଯା'ନା ! ହେଇ ଦେଖ୍
ମୁଁ କେମିତି କାନ୍ଦୁଛି ! କୋହରେ ମୋ ଛାତି ଫାଟି ଯାଉଛି । ମାଲୋ ! ତୋ'
ଭଳି ଆମର ଆଉ କିଏ ହେବ ? ତୋ'ଭଳି ଏତେ ଆପଣାର ଆଉ କୋଉ
ଦିଅଁ ଦେବତା ଆମର ହେବେ କି ? ତୁ ଯାହା ଆମ ପାଇଁ ବର୍ଷ ବର୍ଷ ଧରି
ସହିଛୁ—ଆଉ କୋଉ ଦିଅଁ ଦେବତା, ରକ୍ଷ ଯକ୍ଷ ଦାନବ କି ମଣିଷ ସେତିକି
ଆଉ ସେମିତି ଆମପାଇଁ ସହି ପାରିବେ ନାହିଁ । ଏ ଗାଁର ଯାହା କିଛି
ଉନ୍ନତି ଆଜି ହୋଇଛି, ସବୁ ତୋରି କୃପାରୁ । ମୋର ଯାହା କିଛି ଆଜି
ବଢ଼ତି ହୋଇଛି ସବୁ ତୋରି କଲ୍ୟାଣରୁ । ଆମକୁ ଘଣ୍ଟ ଘୋଡ଼ାଇ ନିରଂ
ପଦରେ ରଖିବୁ ବୋଲି ଆମର ପ୍ରତିକୂଳ ଦୁର୍ଭାଗ୍ୟ ସଙ୍ଗେ ତୁ ଯେତେ
ଲଢ଼ିଛୁ—ଲଢ଼ି ଲଢ଼ି ତୁ ଯେତେ କ୍ଷତବିକ୍ଷତ ହୋଇଛୁ, ସେମିତି ଆଉ କେହି
ହୋଇନାହାନ୍ତି କି ହେବେ ନାହିଁ । ମାଆଲୋ ! ଏଇ ଥରକ ତୁ ଆମକୁ କ୍ଷମା
କର । ସନ୍ତାନମାନେ ଅଯୋଗ୍ୟ ହେଲେ ବୋଲି, ଅଚେତନ ଅମନୋଯୋଗୀ
ହେଲେ ବୋଲି କୋଉ ମାଆ ଭଲା ଅଭିମାନରେ ସେମାନଙ୍କୁ ଅରକ୍ଷ କରି
ଛାଡ଼ି ଗ୍ଲିଯାଏ ? ମାଲୋ ! ତୁ ଯା'ନା—ତୁ ଯା'ନା—ଆମେ ତୋତେ କେହି
ଛାଡ଼ିବୁ ନାହିଁ—ତୋତେ କୁଣ୍ଢେଇ କରି ରଖିବୁ—

କେତେବେଳେ ଯାଏଁ ମୁଁ ଏମିତି କାନ୍ଦିକାନ୍ଦି କୁତାମଚଣ୍ଡୀଙ୍କ ପାଖେ
ମନେ ମନେ ମନ କଥା ଗୁଣି ହେଉଥାଏ ମୋତେ ଜଣାନାହିଁ । କେତେ
ବେଳୁ ତାଙ୍କ ଦେହରୁ ମୋ ହାତ ଛାଡ଼ି ଗଲାଣି ଓ ମୁଁ ତାଙ୍କ ଭଂଗା
ସିଂହାସନଟି ଉପରେ ଭରା ଦେଇ ଠିଆ ହୋଇଥିଲି ତା' ମଧ୍ୟ ମତେ ଜଣା
ନାହିଁ । ଘର ଭିତରେ ରାତି ଜମିଗଲାଣି । ଦୀପ ଆଲୁଅରେ ଓ ଝୁଣା
ଧୂଆଁରେ ଘରଭିତର ରହସ୍ୟମୟ ହୋଇ ଉଠିଛି । ମୋର ଉଦ୍‌ଗତ ଅଶ୍ରୁ

ମଧ୍ୟ ମତେ ଅନ୍ଧ କରି ଦେଇଛି । ମୋର ଚିତ୍ତବୃତ୍ତି ମଧ୍ୟ ଆଛନ୍ନ ହୋଇ ଉଠିଛି । ଘର ଭିତରକୁ ପୂଜା ଉଦ୍ଦେଶ୍ୟରେ ବହୁ ସ୍ତ୍ରୀ ପୁରୁଷ ଆସୁଛନ୍ତି, ଯାଉଛନ୍ତି । ପୂଜାବେଳେ ଘଣ୍ଟି ବାଜୁଛି । ମା ମା ଡାକ ପଡୁଛି । ଏହି ସମୟରେ ମତେ ଲଗିଲା—ପଛପଟୁ ମତେ ମୋ ବୋଉ କୁଣ୍ଢେଇ ଧରିଛି । ମୁଁ ତତ୍‌କ୍ଷଣାତ୍ ବୋଉ ଆଡ଼କୁ ବୁଲିଗଲି ଓ ଆବେଗରେ ତାକୁ କୁଣ୍ଢାଇ ଧରି ଭେ ଭେ ହୋଇ କାନ୍ଦି ଉଠିଲି । ମୋର ଆବେଗ ଜର୍ଜର ଅଶ୍ରୁବର୍ଷିତ ଆଲିଙ୍ଗନ ଭିତରେ ଅଶୀ ବର୍ଷର କ୍ରନ୍ଦନରତା ଅଭିମାନିନୀ ଜୀର୍ଣ୍ଣଶୀର୍ଣ୍ଣା ଥୁରୁଥୁରୁ ମାଆଟିଏ ! ମାଆଟିଏ ! ଅବହେଳିତା ବୋଲି ମନେ କରୁଥିବା ମାଆଟିଏ—ନିଜକୁ ଅଦରକାରୀ ବୋଲି ଭାବି ଅଭିମାନରେ ଫୁଙ୍କୁଚି ଯାଉଥିବା ମାଆଟିଏ—ପଳେଇ ଯିବାକୁ ବସିଥିବା ଭଗ୍ନହୃଦୟା ଆହତମନା ମାଆଟିଏ । କିନ୍ତୁ ମୁଁ କାହାକୁ କୁଣ୍ଢାଇ ଧରିଥିଲି ? କାହାକୁ—ଜାବୁଡ଼ି ଧରିଥିଲି ? ମୋ' ମାଆକୁ ନା ଆମ ଗାଁର ବାରସାଇର ଯୁଗଯୁଗ ଧରି ଅଧିଷ୍ଠାତ୍ରୀ ଦେବୀ ମାଆ କୁତାମଚଣ୍ଡୀ ଠାକୁରାଣୀଙ୍କୁ ?

॥ ॥ ॥

## ବୃନ୍ଦାବନର ଶେଷଧୂପ

ଫାଟକ ଠକ୍‌କିନା ହେଲାମାତ୍ରେ ରଘୁବାବୁ ରାମକୃଷ୍ଣଲୀଳାମୃତ ପୁସ୍ତକରୁ ମୁହଁ ଫେରାଇ ସେଇଆଡ଼କୁ ଚାହିଁଲେ । ଲୋକଟି ଫାଟକଟିକୁ ନୀରବରେ ବୁଜିଦେଇ ଘରଆଡ଼କୁ ମୁହାଁଇ ଆସିଲା । ଏ ବ୍ୟାପାର ଦେଖି ରଘୁବାବୁ ଟିକିଏ ବିରକ୍ତ ବୋଧକଲେ । ଏ ଘରେ ସବୁଦିନେ ଅତିଥି । ପୁଣି ଗତ ସପ୍ତାହେ କାଳ ଘରକୁ ଅତିଥିଅଭ୍ୟାଗତ ସୁଅ ଭଳି ଛୁଟିଛନ୍ତି । ଜଣେ କାଲି ରାତିରୁ ଆସିଥିଲା—ଆଜି ସକାଳେ ଚାହାଜଳଖିଆ ଖାଇ ବସ୍‌ଷ୍ଟାଣ୍ଡକୁ ବାହାରି-ଗଲା ତ—ଫେର୍ ଆଜି ସନ୍ଧ୍ୟାରେ ଆଉଜଣେ ମହାଜନଙ୍କର ଆବିର୍ଭାବ ହେଲାଣି । ଏମାନେ ଆଉ ଏଠି ରଖାଇ ଦେବେନାହିଁ । ଗାଁ ପାଖ ସହରରେ ରହିଲେ ଏ ଅତ୍ୟାଚାର ଭୋଗିବାକୁ ତୁମେ ବାଧ୍ୟ । ଗାଁ ଟା ଯାକର ଲୋକେ ତୁମ ଘରକୁ ଛୁଟିବେ । କାହାର କଚେରୀରେ କାମ ଥିବ ତ କାହାର ବଡ଼ଡାକ୍ତରଖାନାରେ—କିଏ ଜୋଇଁ ଖୋଜିବାକୁ ଆସିଥିବ ତ କିଏ ଆସିଥିବ ଝିଅ ଦେଖିବାକୁ । କିଏ ପୁଅକୁ ଧରି ଆସିଥିବ ପରୀକ୍ଷା ଦେବାକୁ ବା ନାମ ଲେଖାଇବାକୁ କଲେଜରେ ।

ଏଣେ ଘରେ ପିଲାମାନେ ମଧ୍ୟ ମହା ଅସନ୍ତୁଷ୍ଟ । ସେମାନେ ପଢ଼ିପାରୁ ନାହାନ୍ତି । ସେମାନେ ଠିକ୍ ଭାବେ ଶୋଇପାରୁ ନାହାନ୍ତି । ଗାଧୋଇପାରୁ

ନାହାନ୍ତି । ଏପରିକି ପାଇଖାନା ମଧ୍ୟ ଯାଇପାରୁ ନାହାନ୍ତି । କାରଣ ଅତିଥିଙ୍କ ଭିତରୁ କେହି ଗାମୁଛା କି ଲୁଙ୍ଗି କିଛି ଆଣି ନଥିବେ–ବିଛଣା ଆଣି ନଥିବେ–ମଶାରୀ କଥା ବା କାହିଁକି ପଡ଼ିଛି ? ସେମାନେ ନିଶ୍ଚିନ୍ତ ନିର୍ବିକାର ହୋଇ ପିଲାଙ୍କ ଜିନିଷରେ ଭାଗ ନେବେ । ତେଲ, ସାବୁନ, ପାନିଆ ତ ମାମୁଲି କଥା–କେହି କେହି ବଡ଼ପୁଅର ସାଇକେଲ ଧରି ସକାଳୁଆ କଚେରୀକୁ ଚାଲିଯିବେ କାହାକୁ କିଛି ନକହି । ଏଣେ ବଡ଼ପୁଅର ପ୍ରାକ୍‌ଟିକାଲ୍ ପରୀକ୍ଷା ଥିବ ସକାଳ ଆଠଟାରେ । ଏଠୁ ତିନି କିଲୋମିଟର ଦୂରରେ କଲେଜ । କେହି କେହି ଗୁଡ଼ାଖୁ ଘଷାଠାରୁ ଝାଡ଼ା ଯିବା ପର୍ଯ୍ୟନ୍ତ ଓ ଝାଡ଼ା ଯିବାଠାରୁ ସାବୁନରେ ଲୁଗା କାଚିସାରି ନିଜେ ସାବୁନ ଲଗାଇ ଗାଧୋଇବା ପର୍ଯ୍ୟନ୍ତ ପ୍ରାୟ ଏକଘଣ୍ଟା କାଳ ଗାଧୁଆଘରେ କବାଟ କିଳି ସମସ୍ତ କାର୍ଯ୍ୟ ସମାପନ କରୁଥିବେ–ଏଣେ ମଝିଆଁ ଝିଅର କଲେଜ ବସ୍ ଟାଇମ୍ ହୋଇଯିବଣି–ସେ ଗାଧୋଇ ନଥିବ । କୋଉଦିନ ପୁଣି କେହି ଅତିଥିମହାତ୍ମା ମଝିଆଁ ପୁଅର ହାଓ୍ୱାଇ ଚଟି ପିନ୍ଧି ବଜାରକୁ ଯିବଣି ଚାଲି ଏବଂ ତା' ନିଜର ପିତାଛିଣ୍ଡା ଅଧାଘୋରା ଚଟି ସେଠି ପଡ଼ିଛି । ମଝିଆଁ ପୁଅ ରାଗରେ ଖୁନ୍ ।

ପିଲାମାନଙ୍କୁ ଛାଡ଼ିଦେଲେ ବି ସେ ନିଜେ ଟିକିଏ ଏମାନଙ୍କ ଯୋଗୁଁ ଶାନ୍ତିରେ ରହିପାରନ୍ତି ନାହିଁ । ସେମାନେ ଆସିଲେ ରଘୁବାବୁଙ୍କୁ ନିଜେଛାରେ ବସାଇ ଦେବେ ନାହିଁ । ରାମକୃଷ୍ଣଲୀଳାମୃତ ପଢ଼ାଇ ଦେବେ ନାହିଁ । ରେଡ଼ିଓରୁ ଭଜନ ଶୁଣାଇ ଦେବେ ନାହିଁ । ଖାଲି ଏଣୁତେଣୁ ଗାଁ କଳିକଜିଆ, ମାଲି-ମକଦମା କଥା ଗପିବେ ଓ ତାଙ୍କ ମନକୁ ଅଶାନ୍ତିରେ ଭରିଦେବେ ।

ସବୁଠାରୁ ବେଶୀ ହନ୍ତସନ୍ତ ହୁଅନ୍ତି ଗୃହିଣୀ ସୁଭଦ୍ରା ଦେବୀ । ପାଇଖାନାକୁ ବ୍ରସ୍‌ରେ ସଫା କରିବାଠାରୁ ଆରମ୍ଭ କରି, ଲୁଗାକଚା, ଘରସଫା ଓ ରନ୍ଧନ କାର୍ଯ୍ୟଠାରୁ ପରିବେଷଣ ପର୍ଯ୍ୟନ୍ତ ଏବଂ ଅତିଥି ଅଭ୍ୟାଗତଙ୍କ ପରିଚର୍ଯ୍ୟା କରୁ କରୁ, ପୁଣି ପିଲାମାନଙ୍କ ବନ୍ଧୁବାନ୍ଧବୀମାନଙ୍କ ପ୍ରତି ମନଯୋଗ ଦେଉ ଦେଉ ସକାଳ ଛଅଟାରୁ ରାତି ବାରଟା ଯାଏ ନିଃଶ୍ୱାସ ମାରିବାକୁ ବେଳ ନଥାଏ । ଶୀତଦିନ ଖଟିରେ ବି ଦେହମୁହଁରୁ ଝାଳ ନିଗିଡ଼ି ପଡ଼ୁଥାଏ । ମୁହଁରେ ହସ ଲିଭିଗଲାଣି କୋଉକାଳୁ । କପାଳରେ ଆଶଙ୍କାର ରେଖା–

ଆଖିରେ କ୍ଳାନ୍ତି ଆଉ ବିରକ୍ତି । ସକାଳେ ପିଲାମାନେ ଜଳଖିଆ ଖାଇଲା-ବେଳେ ଯଦି କୁଆଟିଏ ଅଗଣା ପାଚେରୀ ଉପରେ ବସି ରଉ ରଉ କରି ଏକଲୟରେ ବୋବେଇ ଉଠେ, ତେବେ ସୁଭଦ୍ରା ଦେବୀ ତାକୁ ଉଡ଼େଇ ଦେଉ ଦେଉ ରାଗରେ କହନ୍ତି—ଆଜି ଆଉ କେତେଜଣ କୁଣିଆ ଆସିବେରେ । ସତକଥା—ଅବାଞ୍ଛିତ ଲୋକଙ୍କୁ ରାନ୍ଧିବାଢ଼ି ପରଶି ପରଶି ତାଙ୍କର ଦିହକ ଗଲାଣି । ସେ ଏ ଘରକୁ ଆସିଲେଣି ଛବିଶବର୍ଷ ହେଲା । ଏତେବର୍ଷ ଭିତରେ ତାଙ୍କ ବାପଘରୁ କୁଣିଆ ଆସିଥିବେ ମାତ୍ର ତିନି କି ଚାରିଥର । କିନ୍ତୁ ଏଥିରୁ କୁଆଡ଼ୁ ଗୁଡ଼ାଏ ଆସି ବର୍ଷ ବର୍ଷ ଧରି—ଦିନେ ବି ଛାଡ଼ ନାହିଁ । ମଣିଷ ଏବେ କେତେ ରାନ୍ଧିବାଢି ଯୋଗେଇବ ? ବିଛଣା ଯୋଗେଇବ ? ପାଇଖାନା ଯୋଗାଇବ ? ତା' ଛଡ଼ା ଆଜିକାଲି ଯୋଉ ବଜାର ହେଲାଣି......

ଗୃହିଣୀଙ୍କ ପରେ ବିଚାର ରଘୁବାବୁ । ତାଙ୍କ କଥା ବା କାହିଁକି ପଡ଼ିଛି ? ସୁଭଦ୍ରା ଦେବୀ କହନ୍ତି—ସେ କୁଆଡ଼େ ଭୋଳାନାଥ । ତାଙ୍କର ଅଫିସ ଭଲ ତ ସେ ଭଲ । ଘରେ କିଏ ଗଲା ଅଇଲା, ମଲା କି ଜିଇଁଲା, ମହାଶୟଙ୍କର କୁଆଡ଼ିକି ନିଘା ନାହିଁ କି ଚିନ୍ତା ନାହିଁ । ଚାଉଳ କେ:ଜି କେତେ, ନା ମୁଁ ମଠରେ ଖାଏ ! ଘରେ ଥିବା ଯାଏ ଧର୍ମ-ବହିଟିଏ ଧରି ଆରାମଚଉକୀରେ ବସି ପଢୁଥିବେ—ପଢୁ ପଢୁ ସେଇଠି ଶୋଇପଡ଼ିବେ । ପ୍ରତିଦିନ ଅଫିସରୁ ଫେରି ପାଇଖାନା ସାରି ଗ୍ରହାଜଳଖିଆ ସମାପନାନ୍ତେ ଆଜି ଏ ମନ୍ଦିର, କାଲି ସେ ମଠ, ଆଜି ଏ ବାବାଜୀ ତ କାଲି ସେ ବୈଷ୍ଣବ—ସେଇମାନଙ୍କ ସାଙ୍ଗେ ସମୟ କାଟନ୍ତି । ଘରେ କିଏ ମଲେଣି କି ରଲେଣି ସେଥିରେ ତାଙ୍କର ଯାଏଆସେ କେତେ ?

ଗୃହିଣୀଙ୍କ ଅଭିଯୋଗ ଅବଶ୍ୟ ଗୋଟିଏ ଦୃଷ୍ଟିରୁ ଦେଖିଲେ ମିଥ୍ୟା ନୁହେଁ । ଦରମା ତ ମାସକଯାକ ଚଳିବାକୁ ଅକୁଳାନ ହେଉଛି । ପିଲମାନେ ବି ସେମିତି କିଛି ଢାକ୍ଷଲ୍ୟମାନ ଦେଖାଯାଉ ନାହାନ୍ତି । ଝିଅଦୁଇଟା, ଯାହା ଜଣାଗଲାଣି, ବାହାହୋଇ ପାରିବେ ନାହିଁ । ସେମିତି ବିଶେଷ ରୂପଗୁଣ ତ ନାହିଁ—ତା'ଛଡ଼ା ବର କିଣିବା ପାଇଁ ଏତେ ମାଲପାଣି ବା କୋଉଠୁ ମିଳିବ ? ଏଣେ ଝିଅାରୀ ବାହାଘରେ ଆଉ ବାପା, ମାଆଙ୍କ ଶ୍ରାଦ୍ଧିଘରେ ଯେ କେବେ

ହଜାର ଟଙ୍କା କରଜ ହୋଇଥିଲା, ତା' ଏପର୍ଯ୍ୟନ୍ତ ଶୁଝାଯାଇ ପାରୁନାହିଁ । ଚାକିରୀକାଳ ପୂର୍ଣ୍ଣ ହେବାକୁ ଆଉ ବାକି ବର୍ଷ ପାଞ୍ଚଟା ଅଛି । ଏପର୍ଯ୍ୟନ୍ତ ଘରଖଣ୍ଡିଏ ମଧ୍ୟ କୋଉଠି ତୋଳା ଯାଇପାରିଲା ନାହିଁ—କି କିଣାଯାଇ ପାରିଲା ନାହିଁ । ପୈତୃକ ଘର ଖଣ୍ଡିକ ବି ଗାଁରେ ଛପର ଉଡ଼ି ଗଲଣି । ଦୁଇଦୁଇଟା ବାତ୍ୟା ଖାଇ ବିଚାର ସେମିତି ମୁଣ୍ଡ ଟେକିଛି । ଦୁଇ ବଖରା ଘର ମାତ୍ର । ......ଏଣେ ବି ସଂସାରଟା ଆଉ ସେମିତି ବିଶେଷ କିଛି ଭଲ ଲାଗୁନାହିଁ । ଦେହଟା ବି କ୍ରମଶଃ କେମିତି ଅବଶ ଆଉ ଥକ୍‌କା ଲାଗୁଛି । କୋଉ କଥାରେ ସରାଗ ରହୁନାହିଁ । ମନେହେଉଛି—ସତେବା ଏ ପୃଥିବୀ ଏଣିକି ମଧୁଶୂନ୍ୟ !

ରଘୁବାବୁ ମନେ ମନେ ଆହୁରି ହତାଶ ହେଉ ହେଉ ଶେଷଆଡ଼କୁ ହସି ପକାନ୍ତି ଏବଂ ଏ କେତେଦିନ ଧରି ପୁରୀ ବଡ଼ଦାଣ୍ଡରୁ କିଣିଥିବା ଗୋଟିଏ ମାଳୀ ଆଣି ଜପ କରିବସନ୍ତି ରାମନାମ । ସଂସାର କ୍ଷେତ୍ରରେ ତ କିଛି ଅର୍ଜନ କରି ହେଲା ନାହିଁ—କିଛି ପ୍ରତିଷ୍ଠା କରି ହେଲା ନାହିଁ । ଯଦି ନିଜ ଭିତରେ କିଛି ଭଗବତୀ ଐଶ୍ୱର୍ଯ୍ୟ ପ୍ରତିଷ୍ଠା କରିହେବ ! କିନ୍ତୁ ତାହା ବି କ'ଣ ଏତେ ସହଜ ? ରଘୁବାବୁ ମାଳା ଜପୁ ଜପୁ ଦୀର୍ଘ ନିଃଶ୍ୱାସ ଛାଡ଼ନ୍ତି । ନାଃ ! ତାଙ୍କ ଦେହାତି କିଛି ସାଧନ କରିହେବ ନାହିଁ—କିଛି ଅର୍ଜନ କରିହେବ ନାହିଁ—କିଛି ମଧ୍ୟ ପ୍ରତିଷ୍ଠା କରିହେବ ନାହିଁ । ଭଗବାନ ହେଲେ ସଂସାରର ଅତିରିକ୍ତ ବିଷୟ । ସଂସାର କ୍ଷେତ୍ରରେ ଯେ ଅପାରଗ, ସେ ବା କାହୁଁ ସଂସାର ଅତିରିକ୍ତଙ୍କୁ ଅର୍ଜନ କରିପାରିବ ? ତଥାପି—ତଥାପି—

ତଥାପି ରଘୁବାବୁ ମାଳା ଗଡ଼ାଉଥା'ନ୍ତି । ନାମ ଜପୁଥାନ୍ତି । ରାମକୃଷ୍ଣ ବିବେକାନନ୍ଦଙ୍କ ଲୀଳାମୃତ ବା ବାକ୍ୟାମୃତ ପଢ଼ି ଚାଲନ୍ତି । ସନ୍ଧ୍ୟାପରେ ବିଭିନ୍ନ ମଠ ମନ୍ଦିରକୁ ଯାଇ ଭଜନକୀର୍ତ୍ତନରେ ଯୋଗଦିଅନ୍ତି । ସେ ଜାଣନ୍ତି —ତାଙ୍କୁ କିଛି ମିଳିବ ନାହିଁ—କୌଣସି କିଛି ପ୍ରାପ୍ତ ହେବନାହିଁ, ତାଙ୍କର କୂଳ ଯାଇଛି, ଶ୍ୟାମ ମଧ୍ୟ ଯାଇଛନ୍ତି । ସେ ସଂସାରର ଅଗଣିତ ଏଣୁଟ ତେଣୁଟ ମାନଙ୍କ ଭିତରୁ ଜଣେ—ଯେଉଁମାନେ ଏ ସଂସାରରେ ଝଡ଼ିପୋକ ପରି ଗୋଛା ଗୋଛା ହୋଇ ଜନ୍ମ ହୁଅନ୍ତି—ତା'ପରେ କିଛିକ୍ଷଣ ଭୂମି ଉପରେ ଅଳ୍ପ ଆକାଶରେ ଉଡ଼ି ଉଡ଼ି ସେଇ ଭୂଇଁ ଉପରେଇ ଟଳି ପଡ଼ନ୍ତି । ସେମାନଙ୍କ

ପତଳା ଛୋଟ ଡେଣାଗୁଡ଼ିକ ଭୂଇଁ ଉପରେ ଧୂଷ ଉଡ଼ିଲ ପରି ଉଡୁଥାଏ ।
ବାସ୍, ଏତିକି ଜାଣିଗଲେ ଆଉ କିଛି ଭବିତ ହେବାରେ ନାହିଁ । ଆଉ କିଛି
ଚିନ୍ତା ନାହିଁ—ଅବଶୋଷ ନାହିଁ । ଆଉ କ'ଣ ମିଳିପାରେ ବୋଲି ଆଶା
କରିବାର ମଧ୍ୟ ନାହିଁ । ତେଣୁ ଗୋଟେ ପ୍ରକାର ମୁକ୍ତି ଭବରେ ରଘୁବାବୁ
ନିଶ୍ଚିନ୍ତ ହୋଇ ରହିବା ଭଳି ରହନ୍ତି । ଝଡ଼ିପୋକ ବୋଲି ଭବିଲ ମାତ୍ରେ—
ମନ ଭିତରେ ଏକପ୍ରକାର ଶାନ୍ତି ଓ ମୁକ୍ତିଭବ ଜାଗରିତ ହୋଇଥାଏ ।
—ଆଉ କିଛି ଦାୟିତ୍ୱ ମାଡ଼ିପଡ଼େ ନାହିଁ ।

ରଘୁବାବୁ ଦେଖନ୍ତି—ସଂସାର କ୍ଷେତ୍ରରେ ତାଙ୍କ ସାଙ୍ଗର ଲୋକେ କୋଉଠି
ନା କୋଉଠି ଯାଇ ଉଠିଲେଣି । ତାଙ୍କ ପରେ ଆସିଥିବା ଲୋକେ ମଧ୍ୟ
କାହିଁ କାହିଁ କଥା କଲେଣି । ତାଙ୍କ ଗାଁରେ ମଧ୍ୟ ଯେଉଁମାନେ ବାବନା-
ଭୂତ ହୋଇ ବୁଲୁଥିଲେ, ସେମାନେ ଆଜି ଯେଝା ହାତରେ ଯେ ଚଉଦ
ପାଆ । ଗାଁ ଆଜି ଧନଧାନ୍ୟରେ ଭସୁଛି । ଧୋଇ ନାହିଁ କି ମରୁଡ଼ି ନାହିଁ ।
ମାଲୁଣୀ ନଈ ଦି'କଡ଼େ ବନ୍ଧ ହୋଇଯାଇଛି । ଏଣେ ଗହୀର ଭିତରେ
କେନାଲ ଗଲଣି । ଲୋକେ ପ୍ରଚୁର ଗ୍ଷ କରୁଛନ୍ତି । ବଜାର ବଢ଼ିଲଣି ।
ବେପାରବଣିଜରେ ଗାଁ ବର୍ତ୍ତମାନ ଖୁବ୍ ଧନାଢ଼୍ୟ । ଲୋକେ ବର୍ତ୍ତମାନ ଦୁଇ
ହାତରେ ଧନଧାନ୍ୟ ଉପାର୍ଜ୍ଜନ କରୁଛନ୍ତି । କାହାକୁ ଫୁରୁସତ୍ ନାହିଁ । କିନ୍ତୁ
ରଘୁବାବୁଙ୍କର ତିନିଏକର ଜମି ଭଗ ଲଗିଛି । ସେଥିରୁ ସେ ବର୍ଷକୁ ବର୍ଷ କିଛି
ପାଉଥିଲେ ଆଗେ । ମାତ୍ର ଏବେ ଭଗଗ୍ଷୀ ବାବନା ଭୋଇ ଆଉ ଗଉଣୀଏ
ଧାନ ବି ଏ ଦୁଇବର୍ଷ ହେଲ ଦଉନାହିଁ । ସେ କହୁଛି—ଜମିତକ ତାର । ସେ
ବାରବର୍ଷରୁ ଅଧିକା ହେଲଣି ସେ ବିଲରେ ଗ୍ଷ କରୁଛି । ବାବନା ଭୋଇର
ତିନିତିନିଟା ତାଗଡ଼ା ପୁଅ । ସମସ୍ତେ ସେ ଜମିକୁ ଦଖଲ କରି ବସିଛନ୍ତି ।
ସେ ଜମି ଉପରୁ ବି ଆଶା ଛାଡ଼ିଦେଲେଣି ରଘୁବାବୁ । ନିଅନ୍ତୁ ସେ ଯେମିତି
ପାରୁଛନ୍ତି । ସେ କାହା ସାଙ୍ଗେ ଦଙ୍ଗାହାଙ୍ଗାମା କରିପାରିବେ ନାହିଁ କି
ମାଲିମକଦ୍ଦମା ଲଢି ପାରିବେ ନାହିଁ । ଏ ଭୂମିକୁ ସେ ଅର୍ଜି ନଥିଲେ—ତାଙ୍କ
ବାପା ଏତେକ ଜମି କିଣିଥିଲେ । ବାପା ଥିଲେ ଜଣେ ନାମଜାଦା
ପାଲଗାୟକ । ଜୀବନରେ ଏଇ ତିନିମାଣ ଜମି ସେ ଅର୍ଜ୍ଜନ କରିଥିଲେ ।
ବାପା ସେ ଭୂମିକୁ ଛାଡ଼ି ଆରପାରିକୁ ଗ୍ଲିଗଲେଣି କୋଉକାଳୁ । ଏବେ

ବାବନା ଭେଇ ଆଉ ତାର ପିଲମାନେ କହୁଛନ୍ତି—ସେମାନେ ଏ ଜମିର ଭୋଗଦଖଲକାର । ହେଉନ୍ତୁ ସେମାନେ ଭୋଗଦଖଲକାର । କିଛି ଯାଏ ଆସେନା । ଏ ଜମି ଚିରଦିନ ବାବନା ଭେଇ ଓ ତାର ପିଲମାନଙ୍କ ହାତରେ ବି ରହିବ ନାହିଁ । କାହା ପାଖେ ସେ ରହିବ ତାହା କାହାକୁ ବା ଜଣା ? ଯାହା ପାଖକୁ ଯାଉ କି ଯାଏଆସେ ? ଖାଆନ୍ତୁ ସେମାନେ ସେତେକ ଚାଷ କରି । ଏ ଝଡ଼ିପୋକ ଖାନ୍ତେ—ସେ ଝଡ଼ିପୋକ ଏବେ ଖାଉଛନ୍ତି । ଖାଇଯାନ୍ତୁ—। ଝଡ଼ି ପଡ଼ନ୍ତୁ । ରଘୁବାବୁ କାହା ବିରୁଦ୍ଧରେ କିଛି ଭବିପାରନ୍ତି ନାହିଁ । କାହାର ନ୍ୟାୟ କି ଅନ୍ୟାୟ ତଉଲି ପାରନ୍ତି ନାହିଁ । ବାବନା ଭେଇ ତାଙ୍କ ପୈତୃକ ଜମି ମାଡ଼ିବସି ଭୋଗଦଖଲ କରିବା ନ୍ୟାୟ କି ଅନ୍ୟାୟ—ସେକଥା ସେ ମୀମାଂସା କରିପାରନ୍ତି ନାହିଁ । ତେଣୁ ସବୁଠୁ ଭଲ ଚୁପ୍‌ଚାପ୍ ।

ଚୁପ୍‌ଚାପ୍-ଚୁପ୍‌ଚାପ୍ । ହଁ ନାହିଁ କି ଚୁଁ ନାହିଁ । ଚୁଁ ନାହିଁ କି ଚାଁ ନାହିଁ । ସମସ୍ତେ ଠିକ୍ କରୁଛନ୍ତି କିମ୍ବା ଭୁଲ୍ କରୁଛନ୍ତି । ସେକଥା କିଏ ଶେଷ ମୀମାଂସା ଦେଇପାରିଛି ନା ପାରିବ ? ତେଣୁ ସବୁ କଥାରେ ଚୁପ୍‌ଚାପ୍ —ଚୁପ୍‌ଚାପ୍ । ହଁ ନାହିଁ କି ଚୁଁ ନାହିଁ । ଆଖିବୁଜି ରାମନାମରେ କି ଶ୍ୟାମ ନାମରେ ମାଳି ଗଡ଼ାଇବା ଭଲ—ଜପ କରିବା ଭଲ । ସେ ଯୋଉ ମାଳି ହେଉ-ହେଉ ରୁଦ୍ରାକ୍ଷ ବା ଭଦ୍ରାକ୍ଷ—ହେଉ ତୁଳସୀ ବା ରକ୍ତଚନ୍ଦନ । ବୈଜ୍ଞାନିକମାନେ କୁଆଡ଼େ ମତ ଦେଲେଣି—ମାଳି ଗଡ଼େଇଲେ ରକ୍ତଚାପ କମେ । ହୃଦ୍‌ରୋଗର ପ୍ରତାପ କମିଯାଏ । ରଘୁବାବୁ ସେ କଥାରେ ବି ହସନ୍ତି—ଚୁପ୍‌ଚାପ୍ ହସନ୍ତି । କମୁରେ ବାବା କଣ କମୁଛି—କେତେ କମୁଛି । କିମ୍ବା ବଢୁରେ ବାବା କେତେ ବଢୁଛି—କଣ ବଢୁଛି । ସବୁ ଆସ୍ତେ ଆସ୍ତେ କମି କମି ଶେଷ ହୋଇଯିବ । ଅଥବା ସବୁ ସେମିତି ଆସ୍ତେ ଆସ୍ତେ ବଢି ବଢି ଶେଷ ହୋଇଯିବ । ତେଣୁ ଶେଷ ହେବାଯାଏ, ଅର୍ଥାତ୍ ସର୍ବଶେଷ ହେବା ଯାଏ, ଯାହା ଯେମିତି ଚାଲିବ ଚାଲୁ—କିଏ ମନା କରୁଛି ?

ସେଦିନ—ରାମକୃଷ୍ଣକଥାମୃତରୁ ଚମତ୍କାର ବିଷୟଟି ଏ ମନଦେଇ ପଢ଼ୁ ପଢ଼ୁ ଫାଟକ ଖୋଲାହେବା ଶବ୍ଦ ଶୁଣି ତେଣିକି ଚାହିଁଲା ମାତ୍ରେ ସେ ଯାହାକୁ

ଦେଖି ଈଷତ୍ ବିରକ୍ତ ହୋଇଉଠିଲେ—ସେ ହେଉଛନ୍ତି ତାଙ୍କ ଗ୍ରାମର ମାୟାଧର ଷଡ଼ଙ୍ଗୀ । ଚଷମାଟି କାଢ଼ି ତା' କାଚ ପୋଛିଦେଇ ପୁଣିଥରେ ଗୁହିଁ ଦେଖିଲେ—ଠିକ୍ ଠିକ୍ ସେଇ । ସେ ମାୟାଧର ଷଡ଼ଙ୍ଗୀ ବୋଲି ଜାଣିବା ମାତ୍ରେ ତାଙ୍କର ବିରକ୍ତି କିଞ୍ଚିତ୍ କମିଗଲା ଅବଶ୍ୟ । କିନ୍ତୁ ଘୃଣ କମିଲା ନାହିଁ । ଅବଶ୍ୟ ମାୟାଧର ତାଙ୍କର ପିଲାଦିନୁଁ ସାଙ୍ଗ । ବୟସରେ ଦୁଇବର୍ଷ ସାନ ବୋଲି ତାଙ୍କୁ ଭାଇନା ବୋଲି ଡାକେ । କିନ୍ତୁ ମାୟାଧର ବିଗ୍ୱର ଜୀବନରେ କିଛି କରିପାରିଲା ନାହିଁ । ଘରେ ଦୁଇଝିଅ, ଦୁଇପୁଅ । ସେମାନେ କିଛି ପାଠଶାଠ ପଢ଼ିଲେ ନାହିଁ । ଶାଗକୁ ହେଲେ ନାହିଁ କି ପାଳକୁ ହେଲେ ନାହିଁ । ମାୟାଧର ମଧ୍ୟ ଗ୍ରଷବାସ ଓ ଗାଁ ବଜାରରେ କିଛି ହୋଟେଲ-ଫୋଟେଲ କାମରେ ମଝିରେ ମାତିଥିଲା । ମାତ୍ର ସବୁଥିରେ ସେ ଫେଲ୍ ମାରିଲା । ଲୋକଟା ଖୁବ୍ ଭଲ—ଏତେ ଭଲ ଯେ ତା' ଦେହାତି କିଛି ହୋଇପାରେ ନାହିଁ—ହେଇପାରିଲା ମଧ୍ୟ ନାହିଁ । ଗ୍ରଷବାସକୁ ବଳ ପାଇଲା ନାହିଁ । ମୂଲିଆମାନେ ଗ୍ରଷ ଭସେଇ ଦେଲେ । ବଜାର ଉପରେ ବିଶୁଦ୍ଧ ହିନ୍ଦୁ ହୋଟେଲଟିଏ କଲା ଯେ ମାସ ତିନିଟା ଚଳିଲା ନାହିଁ । ପ୍ରତି ଦିନ ବହୁ ଗରଖ ଆସିଲେ—ଖାଇଲେ, ପିଇଲେ—ତା'ପରେ ଯେ ଯୁଆଡ଼େ ଛୁଉ । ଇସ୍କୁଲ ପିଲା ଆଉ ନୂତନ ପ୍ରସ୍ତାବିତ କଲେଜ ପିଲାମାନେ ମଧ୍ୟ ଯେ ଯୁଆଡ଼େ ଖାଇପିଇ ଦେଇ ଛୁଉ । ପଇସାଟିଏ ଦେଖାନାହିଁ । ମାୟାଧର ତେଣୁ ନୂତନ ଯୁଗର ଜୀବନ ସଂଗ୍ରାମରେ ପରାସ୍ତ ହୋଇ ବର୍ତ୍ତମାନ କେବଳ ଆପଣା ବାରିରୁ କଇଥ ଓ ନଡ଼ିଆ ବିକି କଷ୍ଟେମଷ୍ଟେ ଚଳେ । ତା' ସ୍ତ୍ରୀ ଅନ୍ୟଆଡୁ ନଡ଼ିଆକତା ସଂଗ୍ରହ କରି ଦଉଡ଼ି ତିଆରି କରି ବିକେ । ପଇତା ତିଆରି କରି ବିକେ । ବାଡ଼ିରେ ଅଗଏ ଜାଗାରେ କିଛି ଅଦା ଚାଷକରି ସେଥିରୁ କିଛି ଆୟ ହୁଏ ଏବଂ ଗୋବର ଘଷି ବିକି କଷ୍ଟେମଷ୍ଟେ ପରିବାରଟିକୁ ଚଳାଏ । କୁଟୁମ୍ବ ପୋଷିବାରେ ନିତାନ୍ତ ଅପାରଗ ଏହି ବୁଦ୍ଧବକ ଭଲ ଲୋକଟାକୁ ଦେଖିଲେ ରଘୁବାବୁଙ୍କୁ ବି ଚିଡ଼ିଲାଗେ । ସତେକି ଜୀବନ-ସଂଗ୍ରାମଜନିତ ବ୍ୟର୍ଥତାର ଆଉ ଗୋଟିଏ ପ୍ରତୀକ ତାଙ୍କରି ଭଳି ଏଇ ମାୟାଧର ଷଡ଼ଙ୍ଗୀ । କିନ୍ତୁ ତଥାପି ବାଲ୍ୟବନ୍ଧୁ ମାୟାଧରକୁ ଦେଖିଲେ ତାକୁ ଛାଡ଼ିହୁଏ ନାହିଁ, ମାୟା ହୁଏ । କାରଣ, ସେ ମଧ୍ୟ ଏ ପୃଥିବୀରେ

କାହାକୁ କୋଉ କଥାରେ ଆକ୍ରୋସ କରେ ନାହିଁ । କାହାକୁ କିଛି ମାଗେ ନାହିଁ । କାହା ଉପରେ କିଛି ଦାବୀ କରେ ନାହିଁ । ଗୁଆଗଛ ପରି ନହକା ଡେଙ୍ଗା ଲୋକଟିଏ । ବୟସ, ଦାରିଦ୍ର୍ୟ, ଅପାରଗତା ଭରରେ ନଇଁପଡ଼ି ବାଟ ଚାଲେ ତଳକୁ ମୁହଁ ପୋତି ପୋତି । ସେ ବି କାହା ସଙ୍ଗେ କିଛି କଥାବାର୍ତ୍ତା ନ କରୁଥିଲା ବେଳେ 'କୃଷ୍ଣ' ନାମ ଜପି ଚାଲିଥାଏ ମନେମନେ । ନିରୀହତାର ପ୍ରତିମୂର୍ତ୍ତିଟିଏ ସତେ କି !

ରଘୁବାବୁ ଚଉକିରୁ ଉଠି ପଡ଼ି ତାକୁ ସମ୍ବର୍ଦ୍ଧନା କରିବାକୁ ଫାଟକ ଆଡ଼କୁ ବାହାରିଲେ । ମାୟାଧର ପିନ୍ଧିଥାଏ ଖଦଡ଼ର ଢାଉଆ ପଞ୍ଜାବୀଟିଏ । ଏଠି ସେଠି ଚିରା । ତା' ସାଙ୍ଗକୁ ଅଧାସଫା ଖଦଡ଼ ଧୋତିଟିଏ । ପିଲାଦିନେ କଂଗ୍ରେସରେ ମିଶି ଗାନ୍ଧୀ ମହାତ୍ମାଙ୍କ ବାଣୀ ଗ୍ରାମରେ ପ୍ରଚାର କରୁଥିଲା । ନିଜେ ଅହିଂସା ଓ ଦେଶପ୍ରେମ ଉପରେ ଗୀତ ଫାନ୍ଦି ବୋଲୁଥିଲା । ଅରଟରେ ସୂତା କାଟୁଥିଲା । ଏବେ ବି ସୂତା କାଟେ । କିନ୍ତୁ ଆଉ କିଛି ପ୍ରଚାର–ପ୍ରଚାର କାମରେ ସେ ଏବେ ନାହିଁ । ଏବେ କେବଳ "ହରିନାମ"ଇ ସାର । ମଠ, ମନ୍ଦିର ସାଙ୍ଗେ କାରବାର । ଭଲ କୀର୍ତ୍ତନ ଭଜନ ମଧ୍ୟ ଗାଏ । ତବଲା, ହାରମନିଅମ୍ ଓ ଖଞ୍ଜଣୀ ବଜାଇ ଜାଣେ । ରଘୁବାବୁଙ୍କର ବର୍ତ୍ତମାନ ଯାହା ମନୋଭବ, ଠିକ୍ ସେଇ ମନୋଭବ ମାୟାଧରର । ତେଣୁ ବାଲ୍ୟବନ୍ଧୁଙ୍କୁ ଦେଖି ରଘୁବାବୁ କ୍ରମଶଃ ଆନନ୍ଦରେ ଗଦ୍‌ଗଦ୍ ହୋଇଉଠିଲେ । ଯେଉଁ ସାମାନ୍ୟ ବିରକ୍ତି ଭବ ଥିଲା ତାହା ମଧ୍ୟ କଟିଗଲା । ଦଶବର୍ଷ ତଳେ ମାୟାଧରର ହଠାତ୍ ମୁହଁର ଫାଳେ ପକ୍ଷାଘାତ ହୋଇଗଲା । ସେତେବେଳେ ରଘୁବାବୁ ବାଲ୍ୟବନ୍ଧୁର ଏ ଅଚାନକ ବିପଦରେ କାତର ହୋଇ ବେଶ୍ ସାହାଯ୍ୟ ଦେଇଥିଲେ । ତାକୁ ସହରକୁ ଆଣି ଡାକ୍ତର ଦେଖାଇ ଥିଲେ । ଔଷଧ, ଇଞ୍ଜେକ୍‌ସନ୍ ନିଜ ହାତରୁ ଖରଚ କରି ଦେଇଥିଲେ । ପକ୍ଷାଘାତ ବହୁପରିମାଣରେ ଭଲ ହୋଇଗଲା । କିନ୍ତୁ ଡାହାଣ ଆଖିର ପତା ଏବେ ବି ପୂରା ପଡ଼ିନାହିଁ । ହସିଲାବେଳେ ବା କିଛି କହିଲାବେଳେ ଡାହାଣ ପଟର ଓଠ ଟିକିଏ ଅଡଙ୍ଗିଆ ଦିଶେ । ଫଳରେ ମାୟାଧରର ମୁଖକୁ ଦେଖିଲେ ହୃଦୟ ସକରୁଣ ବିଷାଦରେ ଭରିଯାଏ । କିନ୍ତୁ ମାୟାଧରର ନିଜର କିଛି ବିଷାଦ ବା ଦୁଃଖ ନଥାଏ । ତାର ଦାରିଦ୍ର୍ୟ ଲାଗି ବା ତାର

ଅପାରଗତା ଲାଗି ବା ତା'ର ରୋଗ ଲାଗି ଭ୍ରୂକ୍ଷେପ ବି ନାହିଁ, ଶୋଚନା ବି ନାହିଁ । ବର୍ତ୍ତମାନର ଗ୍ରାମ୍ୟ ପରିବେଶରେ ମାୟାଧରର ଅସ୍ତିତ୍ୱର କୌଣସି ମୂଲ୍ୟ ମଧ୍ୟ ନାହିଁ । ସେ ସରପଞ୍ଚ ନୁହେଁ—ୱାର୍ଡ ମେମ୍ବର ନୁହଁ—ଚେୟାରମ୍ୟାନ ମଧ୍ୟ ନୁହେଁ ।

ଗାଁରେ ତା'ର ଘର ନାହିଁ—ହୋଟେଲ ନାହିଁ । ପାନଦୋକାନଟିଏ ବି ନାହିଁ । ସେ ଅତ୍ୟନ୍ତ ଅନାମଧେୟ ଜଣେ ଅତି ନଗଣ୍ୟ ଅପାରଗ ଅପଦାର୍ଥ ବ୍ୟକ୍ତିଟିଏ । ସେ ଥିଲେ କେତେ ବା ନଥିଲେ କେତେ ?

କିନ୍ତୁ ରଘୁବାବୁ ଏହି ଅପାରଗ ବାଲ୍ୟବନ୍ଧୁଟିକୁ ଦେଖି ଅମୂଲ୍ୟରତ୍ନଟିଏ ପାଇଲା ଭଳି ଅତ୍ୟନ୍ତ ଉଲ୍ଲାସରେ ତାକୁ କୁଣ୍ଢାଇ ପକାଇଲେ । —"କିରେ ମାୟାଧର କୁଆଡ଼େ ଆସିଲୁ ଏ ସଞ୍ଜବୁଡ଼େ ? କଣ ତୋର ସବୁ ଭଲ ତ ? ଆରେ ଏମିତି କଣ ଏତେ ଶୁଖିଲା ଦିଶୁଛୁ । ପିଲାଛୁଆ ଭଲ ଅଛନ୍ତି ଟି ? ଆ—ଆ । ବହୁଦିନୁ ତୋ ସାଙ୍ଗେ ଦେଖା ହୋଇନାହିଁ ।"

ଦୁଇବନ୍ଧୁ ବାରଣ୍ଡାରେ ମୁହାଁମୁହିଁ ଦୁଇଟି ଚଉକୀରେ ବସିଲେ । ସନ୍ଧ୍ୟା ହୋଇଆସୁଛି । ଶୀତଦିନ—ଆକାଶ ସାମାନ୍ୟ କୁହୁଡ଼ିଆ ଦିଶୁଛି—ଥଣ୍ଡାପବନ ବହୁଥାଏ । ରଘୁବାବୁ ବାରେଣ୍ଡାରୁ ଗୃହିଣୀଙ୍କ ଉଦ୍ଦେଶ୍ୟରେ ଡାକ ଛାଡ଼ିଲେ— "ଆହେ, କଣ କରୁଛ ? ହେଇ ଶୁଣ—ମାୟାଧର ଆସିଛି । ଗଣ୍ଡିଏ ଚୂଡ଼ାଭଜା ଅଦା ସହିତ ପଠାଅ । ଚହା ମଧ୍ୟ ପଠାଅ ।

ତା' ପରେ ମାୟାଧର ତାଙ୍କ ବ୍ୟାଗଟି ଖୋଲି ଗୋଟେ ନଡ଼ିଆ କିଛି ଅଦା ଓ କେତୋଟି କଇଥ ପଦାକୁ କାଢ଼ିଲେ । ସୁଭଦ୍ରା ଦେବୀ ସ୍ୱାମୀଙ୍କର ଏହି ବନ୍ଧୁଟିକୁ ଖୁବ୍ ସମୀହ କରନ୍ତି । ପିଲାମାନେ ମଧ୍ୟ ଏଇ ଦରିଦ୍ର ଭଲମଣିଷ ମଉସାଟିକୁ ଖୁବ୍ ସମ୍ମାନ କରନ୍ତି—ଭଲ ମଧ୍ୟ ପାଆନ୍ତି । ସେମାନେ ସମସ୍ତେ ପଦାକୁ ଆସି ତାଙ୍କୁ ପ୍ରଣାମ କଲେ ଏବଂ ନଡ଼ିଆ, ଅଦା, କଇଥତକ ଘରକୁ ନେଇଗଲେ । ଦୁଇବନ୍ଧୁ ସେମିତି ଚୁପ୍‌ଚାପ୍ ବସିଥାନ୍ତି । ଚହାଜଳଖିଆ ଆସିବା ପୂର୍ବରୁ ରଘୁବାବୁ ହଠାତ୍ ମାୟାଧରଙ୍କୁ ପଚାରିଦେଲେ—"କିରେ ମାୟାଧର ! ତୁ ଏମିତି କାନ୍ଦିଲା ଭଳି ଦିଶୁଛୁ ଯେ ! କାନ୍ଦୁଚୁ କାହିଁକି ? ଆରେ ଏ କଣ ?

ସତରେ ତୁ କାନ୍ଦୁଛୁ ? କଣ ହୋଇଛି ତୋର ? ଆରେ ଶୁଣ୍—ମାନେ ଏ କଣ ? କଣ, କଥା କଣ ?"

ସତକୁ ସତ ମାୟାଧରଙ୍କ ଆଖିରୁ ଧାର ଧାର ହୋଇ ଲୁହ ବହୁଥିଲା । ବନ୍ଧୁଙ୍କ ପ୍ରଶ୍ନରେ ଏଥର ତାଙ୍କର କୋହ ଉଠିଲା । ସେ କୋହ ସମ୍ଭାଳି ନପାରି ଧୋତି ଫେରଟି ଆଖିରେ ଗୁଞ୍ଜି କଇଁ କଇଁ ହୋଇ କାନ୍ଦି ଉଠିଲେ । ରଘୁବାବୁ ନିଜ ଚଉକୀରୁ ଉଠିପଡ଼ି ତାଙ୍କୁ କୁଣ୍ଢାଇ ଧରି କହିଲେ—"ଶୁଣ୍ ଶୁଣ୍, ମୋ ଭଇଟା ପରା—କଥାଟା କଣ କହ—କହ କଣ ହୋଇଛି ? କାନ୍ଦନା—କହ ମତେ—ଆମେ କିଛି ଗୋଟାଏ ଚେଷ୍ଟା କରିବା—ଭଗବାନଙ୍କ କୃପାରୁ ସବୁ ସୁଧୁରିଯିବ । ମାୟାଧର, ଶୁଣ୍ ଭଇ ! କହ, କଣ ହୋଇଛି ତୋର ?"

କିଛି ସମୟ ପରେ ମାୟାଧରଙ୍କ କୋହ ଶାନ୍ତ ହୋଇଆସିଲା । କାନ୍ଦ ମଧ୍ୟ ଥମିଗଲା । ଇତି ମଧ୍ୟରେ ଅଦାଦିଆ ଚୂଡ଼ାଭଜା ଓ ଗୁହା ମଧ୍ୟ ଆସିଗଲା । ଦୁହେଁ ଚୁପ୍‌ଚାପ୍ ସେତେକ ଚୋବେଇ ଚାହା ପିଇଲେ । ତା'ପରେ ମଧ୍ୟ କିଛିସମୟ ଚୁପ୍‌ଚାପରେ କଟିଲା । ଶୀତଦିନର ରାତି କେତେବେଳୁ ହୋଇ ସାରିଥିଲା । ଜହ୍ନ ମଧ୍ୟ କେତେବେଳୁ ଉଇଁ ସାରିଥିଲେ । ବାରେଣ୍ଡାରେ କିଛି ଚନ୍ଦ୍ରାଲୋକ ପଡ଼ିଥିଲା । ଏହି ନୀରବତାକୁ ଭଙ୍ଗକରି ରଘୁବାବୁ ପଚାରିଲେ—"କଣ ମାୟାଧର ? କଣ ହେଲା ତୋର ? ହଠାତ୍ ଏମିତି କାନ୍ଦିଲୁ କାହିଁକି ? କଣ ହୋଇଛି ?

ମାୟାଧର ଗୋଟିଏ ଦୀର୍ଘଶ୍ୱାସ ପକାଇଲେ । ତାପରେ କହିଲେ—ରଘୁବାବୁ ! ତୁମେ ତ କେଇମାସ ହେଲା ଗ୍ରାମକୁ ଯାଇନାହଁ । ରାଧାକାନ୍ତଙ୍କ ମଠକୁ କେବେ ଯାଇଥିଲ ?

ରଘୁବାବୁ କହିଲେ—ପ୍ରାୟ ଦୁଇତିନି ବର୍ଷ ତଳେ ଥରେ ସେଆଡ଼େ ଯାଇଥିଲି । ଦେଖି ଦୁଃଖ ଲଗିଲା । ସେ ମଠ ଆଉ ନାହିଁ । ସେ ଆରବା ଆଉ ନାହିଁ । ସେଇ ସନ୍ନ୍ୟାସୀମାନେ ମଧ୍ୟ ଆଉ କେହି ନାହାନ୍ତି । ସେ କାଳର

ସେଇ ସଦାବ୍ରତ ଅଭ୍ୟାଗତି–ଭଜନ–କୀର୍ତ୍ତନ–ପୂଣ୍ୟପରବ, ଭଗବତ ଚର୍ଚ୍ଚା –ସବୁ କୁଆଡ଼େ ଗଲଣି । ଆମ ପିଲଦିନେ ସେ ଯୋଉ ବଗିଗ୍ଚ ଥିଲ–ବଉଳ ମଧୁମାଳତୀ, ମନ୍ଦାର, ମଲ୍ଲୀ, ଯୁଇ, ହେନା ମାଧବୀ, ସୁଗନ୍ଧରାଜ–ସେ ବଗିଗ୍ଚ ବର୍ତ୍ତମାନ ଛିନ୍ନଛତର୍–ସେଠି ଗୋରୁ, ଛେଳି, ମେଣ୍ଢା ଚରୁଛନ୍ତି । ମଠ ଭିତରକୁ କେହି ଆଉ ଆସୁନାହାନ୍ତି । ଗ୍ଚରିଆଡ଼େ ଲଗିଲ ଖାଁ ଖାଁ ମଶାଣୀଗଦା ଭଳିଆ । ସେଇଦିନୁଁ ଆଉ ସେଠିକି ଯାଇନାହିଁ । ଗାଁକୁ ଯେତେଥର ଯାଇଛି– ସେଣିକି ଯିବାକୁ ଆଉ ମନ ଡ଼ାକେ ନାହିଁ । କିନ୍ତୁ ସେ ଯେଉଁ ରାଧାକୃଷ୍ଣ ଯୁଗଳମୂର୍ତ୍ତି–ଆହାଃ, ତାକୁ ଦେଖିଲେ ମନ ଭରିଯାଏ । କଳା ମୁଗୁନି ପଥରର କୃଷ୍ଣ ତ୍ରିଭଙ୍ଗୀଠାଣିରେ ବଂଶୀଧରି ଠିଆ ହୋଇଥିବେ–ପୀତ ଦୂକୂଳଟି ଓହଳି ପଡ଼ିଥିବ ତଳକୁ । ଶିରରେ ମୟୂର ପୂଚ୍ଛ–ବକ୍ଷରେ ବନମାଳା କଦମ୍ବ ଗଛରୁ ଫୁଲଫୁଟା ଡାହିମାନ ତଳକୁ ଲର୍ମି ଆସିଥିବେ । ଗଛ ଡାଳରେ ଶୁଆଶାରୀ ଆଉ ମୟୁରମାନେ ବସିଥିବେ । ଆଉ, କୃଷ୍ଣଙ୍କ ଆଡ଼କୁ ଆଉଜି କରି ଠିଆ ହୋଇଥିବେ ଚକଚକ ପିତଳର ଶ୍ରୀରାଧା । ଶ୍ରୀମୁଖଟି ଦାଉଦାଉ ହୋଇ ଜଳୁଥିବା, ଓଠରେ ଆନନ୍ଦ ଉଛୁଳି ପଡୁଥିବ । ପିନ୍ଧିଥିବେ ଜରିଦିଆ ନୀଳବର୍ଣ୍ଣର ଶାଢ଼ୀ । ମୁଣ୍ଡରେ ମୁକୁଟ । ଅଣ୍ଟାରେ ଗୋଠ । ସେ ରୂପକୁ ଦେଖିଲେ ମନେ ହେବ, ସତେକି ପୃଥିବୀଯାକର ଆସ୍ଥା, ବିଶ୍ୱାସ, ସମର୍ପଣ ଆଉ ପ୍ରେମ ସେ ମୂର୍ତ୍ତିରେ ଠୁଳ ହୋଇଛି । ଆହା ! ଆଜିକାଲି କିଏ ବା ଆଉ ସେ କଥା ଦେଖୁଛି ? ସେ ଆଡ଼ିକି ନିଘା କରୁଛି ?

ମାୟାଧର ରଘୁବାବୁଙ୍କ ତୁଣ୍ଡରୁ ଏକଥା ଶୁଣି ଚୁପ୍‌ଗ୍ଚପ୍ ବସିଥା'ନ୍ତି । ସେଇଠୁ ଚଉକିଟାକୁ ତାଙ୍କ ଅଡ଼କୁ ଘୁଞ୍ଚାଇ ଆଣି ଖୁବ୍ ଧୀର ଗଳାରେ କହିଲେ– "କଣ କହିବି, ରଘୁବାବୁ ? ଛାତି ଫାଟିଯାଉଛି । ଆଉ ସେଠି ସେ ମୂର୍ତ୍ତି ନାହାନ୍ତି ।"

"ମାନେ କୁଆଡ଼େ ଗଲେ ?" ରଘୁବାବୁ ଚମକିପଡ଼ି ଡେରି ହୋଇ ବସିଲେ ।

"ପଅରିଦିନ ରାତିରୁ ଗ୍ଚେରି ହୋଇଯାଇଛନ୍ତି ।"

"କ'ଣ କହୁଛୁ ତୁ, ମାୟାଧର ?"

"ହଁ ରଘୁବାବୁ ! ଲୋକେ କହୁଛନ୍ତି—ଛୋଟା ବାବାଜୀ ତାକୁ ଗତାଗତି ମୂର୍ତ୍ତିଚୋରବାଲଙ୍କୁ ବିକି ଦେଇଛି । ଆଜିକାଲି ଗାଁ ଗାଁ ବୁଲୁଛନ୍ତି ମୂର୍ତ୍ତିଚୋରିର ଦଲାଲମାନେ । ସେ ମୂର୍ତ୍ତି ମଧ୍ୟ ଆଉ ବର୍ତ୍ତମାନ ଆମ ଦେଶରେ ଥିବେ କି ନାହିଁ ସନ୍ଦେହ । ଆମେରିକା କି ଫ୍ରାନ୍‌ସକୁ ଚାଲାଣ ହୋଇ ଯିବେଣି । ସବୁ ସରିଗଲା ରଘୁବାବୁ, ସବୁ ସରିଗଲା । ଆମ ଗାଁରୁ ଆମେ ଥାଉଁଥାଉଁ ରାଧାକାନ୍ତ ଚାଲିଗଲେ । ଆମ ଜୀବନ ଆଉ ଥିଲେ କେତେ—ଗଲେ କେତେ ?"

ଏତିକି କହି ମାୟାଧର ପୁଣି କାନ୍ଦି ଉଠିଲେ । ରଘୁବାବୁ ଚଉକି ଉପରେ ପଡ଼ିଗଲେ ଚିତ୍ ହୋଇ । ଫଁ ଫଁ କରି ଦୁଇଟା ଦୀର୍ଘଶ୍ୱାସ ଛାଡ଼ିଲେ । ତାଙ୍କୁ ଲାଗିଲା—ତାଙ୍କ ଦେହରୁ ସମସ୍ତ ଶକ୍ତି କୁଆଡ଼େ ଉଡ଼ିଗଲା । କିନ୍ତୁ କିଛି ମୁହୂର୍ତ୍ତପରେ ସେ ପୁଣି ଡେରି ହୋଇବସିଲେ । ମାୟାଧରଙ୍କ ଆଖିରୁ ସେମିତି ଲୁହ ବୋହୁଥାଏ । କିନ୍ତୁ ରଘୁବାବୁ ତାଙ୍କୁ ଏଥର ତୁନି କରାଇଲେ ନାହିଁ । କେବଳ ଦୀର୍ଘ ଶ୍ୱାସଟିଏ ଛାଡ଼ି କହିଲେ—

ବିଚାର ଛୋଟା ବାବାଜୀ ! କ୍ରମେ ମଠରୁ ସବୁ ବାବାଜୀ କିଏ କୁଆଡ଼େ ଛିନ୍ନଛତର ହୋଇ ପଳାଇଗଲେ । ମଠରେ ଗଣ୍ଡିଏ ପେଟପୂର ଖାଇବାକୁ ମଧ୍ୟ ମିଳିଲା ନାହିଁ । କର୍କଟ ରୋଗ ଭୋଗି ମହନ୍ତ ମଧ୍ୟ ମରିଗଲେ । ଏଇ ଛୋଟା ବାବାଜୀ ବିଚାର ଆଜି ପର୍ଯ୍ୟନ୍ତ ରାଧାକାନ୍ତଙ୍କର ଯାହିତାହି ସେବା ପୂଜା କରୁଥିଲା । ମଠର ଜମିବାଡ଼ି ତ ଯେ ଯୁଆଡ଼େ ମାଡ଼ିବସିଲେ । ଠାକୁରଙ୍କ ପାଇଁ ଭୋଗ ଗଣ୍ଡିଏ ଯୋଗାଡ଼ କରିବା ବି ଅସମ୍ଭବ ହୋଇ ପଡ଼ିଲା । ଘରଦ୍ୱାର ଭଙ୍ଗିଭୁଙ୍ଗି ଗଲା । ଗାଁବାଲା ଆଉ ଆଖିରେ ବି ମଠ ଆଡ଼କୁ ଚାହିଁଲେ ନାହିଁ । ଓଲଟି ମଠ ଭିତରୁ ଭଙ୍ଗା ଇଟା ବୋହି ନେଇ ନିଜ ନିଜ ବାରେଣ୍ଡାରେ ପକାଇଲେ । ମଠ ବଗିଚାରୁ ଗଛ କାଟି ଜାଳିଲେ । ଏଇ ଅବସ୍ଥାରେ ସେଇ ଛୋଟା ବାବାଜୀଟି ବିଚାର—ରୋଗା ହୋଇ ଦୁର୍ବଳିଆ ଲଣ୍ଡାମୁଣ୍ଡିଆ ବାବାଜୀଟାଏ । ବେକରେ ସତରପରସ୍ତ ତୁଳସୀ ମାଳ ଗୁଡ଼ିଆ ହୋଇଥାଏ । ସେଥିରୁ ଅଣଓସାରିଆ ପଞ୍ଜରା ହାଡ଼ ଦିଶୁଥିବା ଛାତି ଉପରେ ଲଟକିଥାଏ ଛୋଟିଆ ଝୁଲିଟିଏ । ଫାଳଟାମାରି ପିନ୍ଧିଥାଏ ମଇଳା ଧୋତିଟିଏ । ଏକପରସ୍ତିଆ । ମୁଣ୍ଡରେ ସାନ ଚୁଟିଟିଏ । ଗିନି

ହଲେ ବଜାଇ ଗାଁରେ ଘର ଘର ଛୋଟେଇ ଛୋଟେଇ ବୁଲି ଭିକ୍ଷା ସଂଗ୍ରହ କରେ—ତୁଣ୍ଡରେ ଦୁର୍ବଳ କ୍ଳାନ୍ତ ହତାଶ ସ୍ୱରରେ ଗାଉଥାଏ—ହରେ କ୍ରିଷିନ ହରେ କ୍ରିଷିନ କ୍ରିଷ୍ଣ କ୍ରିଷ୍ଣ ହରେ ହରେ—ହରେରାମ ହରେରାମ ରାମରାମ ହରେ । ସେଇ ବିଗ୍ରହ ଗାଁ ଭିତରେ ଏଇ ନାମଟକ ବଞ୍ଚାଇ ରଖିଥାଏ । ସେଇ ବିଗ୍ରହ ଯେନତେନ ପ୍ରକାରେଣ ଠାକୁରଙ୍କୁ ଧରି ସେଠି ମଠରେ ପଡ଼ିଥିଲା । ତିନିବର୍ଷ ତଳେ ଯେତେବେଳେ ରଘୁବାବୁ ଥରେ ମଠ ଆଡ଼କୁ ବୁଲି ଯାଇଥିଲେ ସେଇ ଜନମାନବଶୂନ୍ୟ ମଠ ଭିତରୁ ଗୋଟିଏ ଗାତରୁ ବାହାରି ପଡ଼ିଲା ପରି ଏହି ଛୋଟା ବାବାଜି ଗୋଟିଏ ଭଙ୍ଗା ମଇଳାଘର ଭିତରୁ ବାହାରି ଆସି ତାଙ୍କ ହାତ ଧରି କରୁଣ କଣ୍ଠରେ କହିଥିଲା—ଆଉ ହବ ନାହିଁ ରଘୁବାବୁ ! ଆଉ ମୁଁ ୟାଙ୍କୁ ସମ୍ଭାଳି ପାରିବି ନାହିଁ । ଆପଣମାନେ ତ କିଛି ବୁଝିଲେ ନାହିଁ । ତିନିଶବାଷଠି ଏକର ଜମି ଠାକୁରଙ୍କର କିଏ କୁଆଡ଼େ ମାଡ଼ିବସି ମାରିଖାଇଲେ । ପାଞ୍ଚଧୂପ ହଉଥିଲା । ଏଣିକି ଗୋଟିଏ ଓଳି ବି ଧୂପ ଚଳାଇବା ଅସମ୍ଭବ ହେଲାଣି । ରାଧାରାଣୀଙ୍କ ମୁଣ୍ଡରେ ଯୋଡ଼ ରୂପାମୁକୁଟଟି ଲାଗିଥିଲା—ଆଉ ଅଣ୍ଟାରେ ଯୋଡ଼ ରୂପା ଗୋଠ ପିନ୍ଧିଥିଲେ—ସେ ଦୁଇଟି କିଏ ଗ୍ରେରେଇ ନେଲେ—ତା'ର ସନ୍ଧାନ କିଏ ନେଲେ ନାହିଁ । ଓଲଟି ଗାଁ ବାଲା ମୋରି ଉପରେ ଦୋଷ ଲଦିଲେ—ମୁଁ କୁଆଡ଼େ ତାଙ୍କୁ ବିକି ଦେଇଛି । ହଉ ହଉ —ଭେକ ତ ନେଇଛି —ନାମ ତ ଧରିଛୁ । ଯେତେ ଯେ ମାନ ଅପମାନ କରିବ କରୁ । ଠାକୁର କିନ୍ତୁ ଯେମିତି ଉପାସ ନ ରହନ୍ତି ! କେତେଥର ରାଧାରାଣୀ ସ୍ୱପ୍ନରେ ଦେଖାଦେଇ ମତେ କହିଲେଣି କାନ୍ଦି କାନ୍ଦି —ଆରେ ଛୋଟା ! ସରଲବଣୀ ଭୁଞ୍ଜାଇ ନନ୍ଦରାଣୀ ଯାହାକୁ ଏଡ଼େ ଗେଲବସରରେ ବଢ଼ାଇଥିଲେ, ତାଙ୍କୁ ଗିନାଏ ଖିରି ଦେବାକୁ ବି ଏ ଗାଁରେ ଦୁଧଟୋପିଏ ନାହିଁ କି ଗ୍ରଉଳ ମୁଠିଏ ନାହିଁ ? ......... ଏତେକ କହି ସେଦିନ ଛୋଟା ବାବାଜୀ ରଘୁବାବୁଙ୍କ ଆଗରେ କଇଁ କଇଁ ହୋଇ କାନ୍ଦିଥିଲା ।......ଅଥଚ ସେଉ ଛୋଟା ବାବାଜୀ ଶେଷରେ ରାଧାକୃଷ୍ଣ ମୂର୍ତ୍ତିକୁ ମୂର୍ତ୍ତିଗ୍ରେର ଦଲାଲଙ୍କ ହାତରେ ବିକିଦେଲା ? ରଘୁବାବୁ ବିରସ କଣ୍ଠରେ ପଗ୍ରରିଲେ— ଆଚ୍ଛା, ଛୋଟା ବାବାଜୀ ଏ ବିଷୟରେ ନିଜେ କଣ କହୁଛି, ମାୟାଧର ?

ଆଖିରୁ ଲୁହ ପୋଛି ମାୟାଧର କହିଲେ—ସେ କଣ ଆଉ ଅଛି କି ? ସେ ନିଜେ ଫେରାର । ପୋଲିସ ଖୋଜୁଛି । କାଲି ତ ପୋଲିସ-କୁକୁର ଆସିବା କଥା ଥିଲା । କଣ ହେଉଛି କେଜାଣି । ମୁଁ କାଲିଠାରୁ ଗାଁ ଛାଡ଼ିଲିଣି । ମୁଁ ସ୍ଥିର କରିଛି—ଆଉ ସେ ପାପୀ ଗାଁକୁ ଫେରିବି ନାହିଁ ।

ରଘୁବାବୁ ଏ କଥାରୁ ଗୋଟିଏ ଆଶ୍ୱସ୍ତିକର ସୂତ୍ର ପାଇଯିବାର ଉଲ୍ଲାସରେ କହିଲେ—ତା'ହେଲେ ଠିକ୍ ଅଛି । ଛୋଟାବାବାଜୀ ମୂର୍ତ୍ତିବିକି ନଥିବ ମୋର ବିଶ୍ୱାସ । ମୂର୍ତ୍ତିଧରି ସେ କୁଆଡ଼େ ବୃନ୍ଦାବନ କି ମଥୁରା ଆଡ଼ିକି ପଳେଇଥିବ ।

ମାୟାଧର ଜୋର୍ ଦେଇ କହିଲେ—ନା, ନା । ସେ ଯୁଗଳମୂର୍ତ୍ତି କେତେ ଓଜନ ହେବ ଜାଣିଛନା ? ଛୋଟାବାବାଜୀ ଆଗ ତାଙ୍କୁ ଟେକିପାରିବ ? ସେ କଥା ନୁହଁ—ମୂର୍ତ୍ତି ବିକିଦେଇ ସେ କୁଆଡ଼େ ଚମ୍ପଟ ଦେଇଛି । ସବୁ ସରିଗଲା, ରଘୁବାବୁ—ଯାପରେ ପରେ ଦେଖିବ ଗାଁରେ ବହୁ ବିଘାତ ଘଟିବ । ତିନିଗ୍ରରି ବର୍ଷ ତଳେ ଯୋଉଥର ରାଧାରାଣୀଙ୍କ ରୁପାମକୁଟ ଆଉ ରୁପାଗୋଠ ଚୋରିଗଲା—ସେବର୍ଷ ସେମିତି ଗାଁରେ ଝାଡ଼ୁଆରୋଗରେ ଅଧେ ଗୋରୁ ମରିଗଲେ । ଏବେ କଣ ହଉଛି ଦେଖ—ସବ୍ରାତ କର । ଗାଁବାଲାଙ୍କର ତଥାଷ୍ଟ ଚେତା ପଶୁ ନାହିଁ । ଛୋଟାବାବାଜୀ ଆମ କଲିଜା ଓଟାରି ନେଇଗଲା ରଘୁବାବୁ !

...ଏହି ସମୟରେ ଘର ଭିତରୁ ରେଡ଼ିଓରେ ଆଞ୍ଚଳିକ ସମ୍ବାଦ ଶୁଣାଗଲା । ରଘୁବାବୁ ରେଡ଼ିଓଟିକୁ ବାରଣ୍ଡାକୁ ଆଣିବା ଲାଗି ଝିଅକୁ ଡାକିଲେ । ଝିଅ ରେଡ଼ିଓଟିକୁ ଆଣୁ ଆଣୁ ତା' ଭିତରୁ ଆସୁଥିବା ଦ୍ୱିତୀୟ ସମ୍ବାଦଟି କାନରେ ପଡ଼ିବା ମାତ୍ରେ ଦୁଇବନ୍ଧୁ ଅତ୍ୟନ୍ତ ଉତ୍ସୁକତା ଓ ଉତ୍ତେଜନାରେ ଚଉକୀରୁ ଉଠି ପଡ଼ି ଠିଆ ହୋଇଗଲେ । ସେମାନେ ଉତ୍କଣ୍ଠ ହୋଇ ତଳକୁ ମୁହଁ ପୋତି ଶୁଣୁଥାନ୍ତି–

...ସମ୍ବାଦ ନେବାରେ ଜଣାଯାଇଛି କି, କଲ୍ୟାଣପୁର ଗ୍ରାମର ରାଧାକାନ୍ତ ମଠରୁ ଯେଉଁ ଯୁଗଳମୂର୍ତ୍ତି ଗତ ବୁଧବାର ରାତିରେ ଚୋରୀ ହୋଇଥିଲା

ବୋଲି ପ୍ରକାଶ ପାଇଥିଲା, ତାହା ପ୍ରକୃତରେ ଚୋରୀ ଯାଇନାହିଁ । ଆଜି ସକାଳେ ସଦର ଏସ୍. ପି. ଓ ଅନ୍ୟାନ୍ୟ ପୋଲିସ ଅଫିସରଙ୍କ ତଦନ୍ତ ବେଳେ ମଠ ପାଖ ପୋଖରୀ ଭିତରୁ ନିଆଁଲିଭଳି ପୋଲିସଦଳ ମୂର୍ତ୍ତି ଦୁଇଟିକୁ ଉଦ୍ଧାର କରିଛନ୍ତି ଏବଂ ତା' ସଙ୍ଗେ ସଙ୍ଗେ ଛୋଟାବାବାଜୀ ନାମକ ଜଣେ ପୂଜକଙ୍କର ଶବକୁ ମଧ୍ୟ ଉଦ୍ଧାର କରଯାଇ ପାରିଛି ।...

ଏତିକି ଶୁଣିବା ମାତ୍ରେ ଦୁଇଟିଯାକ ବନ୍ଧୁ ଦୁହିଁଙ୍କୁ କୁଣ୍ଢାଇ ଧରି ପାଗଳଙ୍କ ଭଳି ଉର୍ଦ୍ଧ୍ୱକୁ ଅନାଇ ଚିତ୍କାର କରିଉଠିଲେ—

ଛୋଟାବାବାଜୀ ଇ ଇ ଇ ଇ...... ।

॥ ॥ ॥

## ହରିହର ମିଳନ ସମ୍ବାଦ

ନାଃ—ଅସହ୍ୟ, ଅସହ୍ୟ ଏହି ବିଷ୍ଣୁମାୟାକ୍ରାନ୍ତ ସଂସାରର ବିଧାନ ! ଏହି ସଂସାରକୁ କୋଉଆଡୁ କେହି ହେଲେ ସଜାଡ଼ି ପାରିବେ ନାହିଁ । କେମିତି ଭଲ କିଏ ସଜାଡ଼ି ପାରିବ ? ସବୁ କଥା କଣ ତୁମ ହାତରେ ଅଛି ? ନା— ତୁମ କଥା ବି କୋଉ ତୁମ ହାତରେ ଅଛି ? ଏଠି କାହାର କାହା ସାଙ୍ଗରେ ମେଳ ନାହିଁ । ଯେଝା ବାଟରେ ଯେ ଧାଇଁଛି । ଧାଇଁଲା ଲୋକ ମଧ୍ୟ ନିଜ ଅକ୍ତିଆର ଭିତରେ ନାହିଁ । କୋଉ ଅଜଣା ଉଚାଟରେ ସେ ଧାଇଁ ଲାଗିଛି । ନିଜେ ଇଚ୍ଛା କରି ମଧ୍ୟ ସେ ଆପଣା ଧାଇଁବାରୁ ବିରତ ହୋଇ ପାରିବ ନାହିଁ । ଏଠି ସମସ୍ତେ ସମସ୍ତଙ୍କର ବିପରୀତ । ଅଥଚ ସମସ୍ତେ ଏଠି ବିଷ୍ଣୁ ମାୟାରେ ମୋହିତ ହୋଇ ଏକତ୍ରିତ ହୋଇଛନ୍ତି । ଏକାଠି ହୋଇ ଆପଣା ଆପଣା ଭିତରେ ଧକ୍‌କା ମଗମରି ହେଉଛନ୍ତି । କାମୁଡ଼ା କାମୁଡ଼ି ହେଉଛନ୍ତି—ଗୋଡ଼ିଆ ଗୋଡ଼ି ହେଉଛନ୍ତି । କାହିଁକି ଭଲା ଏହି ବିପରୀତ ଧର୍ମୀ ପ୍ରାଣୀମାନେ ଏକାଠି ହେଉଛନ୍ତି ? ପୁଣି କାହିଁକି ମଧ୍ୟ ଏପରି ସଂଘର୍ଷରେ ମାତିଛନ୍ତି ? କାହିଁକି ? କୋଉ ଶକ୍ତି ପ୍ରାଣୀମାନଙ୍କୁ ଏପରି ହନ୍ତସନ୍ତ କରୁଛି ? ହନ୍ତସନ୍ତ ହେବା ବ୍ୟତୀତ କ'ଣ ଏଠି ଆଉ କାହାର ଗତ୍ୟନ୍ତର ନାହିଁ । ଏଇ ହନ୍ତସନ୍ତିଆ ଯନ୍ତା ଭିତରୁ ମୁକୁଳିବା କଣ ସମ୍ଭବ ହୋଇ ପାରିବ ନାହିଁ ? ଓଃ ! ବିଷ୍ଣୁର ଏହି ମାୟା ସମୁଦ୍ର ତା' ହେଲେ ଦୁଃସ୍ତାର—ଅନତିକ୍ରମ୍ୟ—ଅନଧିଗମ୍ୟ

ହୋଇ ରହିଥିବ ? ଏଠି ଯୋଗ ବୃଥା-ତପସ୍ୟା ନିଷ୍ଫଳ । ବିଷ୍ଣୁର ଏହି ପାଶରୁ ମୁକ୍ତି ଅସମ୍ଭବ !

ଏହିପରି ଭାବୁ ଭାବୁ ଦେବଦେବ ମହାଦେବ ଯୋଗେଶ୍ୱର ଶିବଭଗବାନ ସ୍ୱର୍ଣ୍ଣାଚଳ ସନ୍ନିକଟ ଏକାମ୍ର କାନନର ଅନତି ଦୂରରେ ଦୟାନଦୀ କୂଳବର୍ତ୍ତୀ ଧଉଳି ଗିରିର ପାଦ ଦେଶରେ ଅବସ୍ଥିତ ଏକ ମହା ଶ୍ମଶାନ କାନ୍ତାରରେ ପଦଚାରଣା କରୁଥିଲେ । ଅଦୂରସ୍ଥ ପାହାଡ଼ର ଗୋଟିଏ ପୁଷ୍ପାଚ୍ଛାଦିତ ଲତା-ବେଷ୍ଟିତ ନାତିବୃହତ୍ କନ୍ଦର ଭିତରେ ମହାଦେବଙ୍କର ଦୁଇ ବିଶ୍ୱସ୍ତ ଚିରାନୁଗତ ଶିଷ୍ୟ ଓ ସେବକ ସ୍ୱନାମଧନ୍ୟ ନନ୍ଦୀ ଓ ଭୃଙ୍ଗୀ ମହାଦେବଙ୍କର ଗ୍ରୀଷ୍ମାପରାହ୍ଣକାଳୀନ ପାନୋପଯୋଗୀ "ବିଜୟା" ନାମରେ ଆଖ୍ୟାତ ଏକ ବିଶେଷ ଧରଣର ପାନୀୟ ପ୍ରସ୍ତୁତ କରିବାରେ ବ୍ୟସ୍ତ ରହିଥିଲେ । ବହୁ ପରିମାଣରେ ଗଞ୍ଜାଇ କଳିକା ସଙ୍ଗେ ବହୁ ପରିମାଣର ଗଞ୍ଜାଇ ପଲ୍ଲବକୁ ଉତ୍ତମ ରୂପେ ମିଶ୍ରଣ କରି, ତତ୍‌ସଙ୍ଗେ ଅନୁରୂପ ଅନୁପାତରେ ଗୋଲମରିଚ, ଗୁଜୁରାତି, ଅଳାଇଚ, ନାଗକେଶର ପୁଷ୍ପର ପାଖୁଡ଼ା ଓ କେସର, ଜାତି ଫଳ ଓ ପୋସ୍ତ ଏବଂ କିଛି ଧୁତୁରା ମଞ୍ଜି ସଂଯୋଗ କରି ଗୋଟିଏ ବୃହତ୍ ମୁଗୁନି ପଥର ଉପରେ ବାଟି ଲାଗିଥିଲେ ଶ୍ରୀମାନ୍ ନନ୍ଦୀ । ଏହି କାର୍ଯ୍ୟଟି ସେ ପ୍ରାୟ ଦିବସର ପ୍ରଥମ ପ୍ରହରରେ ଆରମ୍ଭ କରିଥିଲେ—ମାତ୍ର ଆଦ୍ୟାବଧି ଦୁଇପ୍ରହର ଗତ ହୋଇ ଥିଲେ ହେଁ ତାହା ସମ୍ପନ୍ନ ହୋଇ ପାରି ନାହିଁ । ନିକଟସ୍ଥ ଗ୍ରାମମାନଙ୍କରୁ ଦୁଗ୍ଧ, ପକ୍ୱରମ୍ଭା, ଛେନା, ବାଦାମ ଓ କିଛି କନ୍ଦ ନବାତ ସଂଗ୍ରହ କରି ପାନୀୟଟିକୁ ପ୍ରସ୍ତୁତ କରିବା ଲାଗି ଅପେକ୍ଷା କରି ବସିଥିଲେ ଆୟୁଷ୍ମାନ୍ ଭୃଙ୍ଗୀ । କିୟତ୍ ଦୂରରେ ଶିବଙ୍କର ଅତ୍ୟନ୍ତ ବାଧ୍ୟ ଅତି ପ୍ରିୟ ବାହନ ବୃଷଭ ପ୍ରବର ନିରୁଦ୍‌ବେଗ ଚିତ୍ତରେ ଏବଂ ନିର୍ଭୟରେ ନଦୀ-କୂଳସ୍ଥ ଧାନ ଜମିରେ ପ୍ରବେଶ କରି ସବୁଜ ଛନ ଛନ ହୋଇ ବଢ଼ି ଉଠୁଥିବା ନବୀନ ଡାଳୁଅ ଜାତୀୟ ଧାନ୍ୟ ଚାରାଗୁଡ଼ିକୁ ପରମ ଆଗ୍ରହରେ ଚରଣ କରି ଚାଲିଥିଲେ । ଦକ୍ଷିଣ ଦିଗରୁ ସିନ୍ଧୁ ଶୀକରବାହୀ ଶୀତଳ ମଳୟ ମୃଦୁ ମୃଦୁ ବହୁଥିଲା—କିଞ୍ଚିତ୍ ଦୂରସ୍ଥ ଆମ୍ରକୁଞ୍ଜ ଭିତରୁ କୋକିଳମାନେ କୁହୁ ଧ୍ୱନିରେ ଚତୁର୍ଦ୍ଦିଗ ମୁଖରିତ କରୁଥିଲେ ଏବଂ ନଦୀ ଶଯ୍ୟାରେ ଦୁଇଟି କୁଇ ନିର୍ବିଘ୍ନରେ କଳି ଲାଗିଥିଲେ ।

କିନ୍ତୁ ଯୋଗେଶ୍ୱର ଶିବଙ୍କ ମନରେ ଶାନ୍ତି ନ ଥିଲା । ତାଙ୍କୁ ସବୁ କିଛି ବିରକ୍ତ ଓ ବିଷଣ୍ଣ ଲାଗୁଥିଲା । ସାଧାରଣତଃ ସେ ଏପରି ଅନୁଭବ କରନ୍ତି ନାହିଁ । ଧ୍ୟାନ ଓ ସମାଧିରେ ନିଶ୍ଚଳ ଓ ନିର୍ବିକଳ୍ପ ରହିଥାନ୍ତି, ଅବା ରାମନାମ ଜପ କରୁଥାନ୍ତି । ବେଳେ ବେଳେ ନନ୍ଦୀ ଓ ଭୃଙ୍ଗୀ ଗିନି ଓ ଢୋଲକୀ ଧରି ବସିଲେ, ସେ ନିଜେ ଆପଣା ଡମ୍ବରୁରେ ତାଳ ଧରି ନାମନାମ ଅଥବା ରାମଲୀଳା କୀର୍ତ୍ତନ କରୁଥାନ୍ତି । ବିଜୟା ନାମକ ପାନୀୟଟି ଆକଣ୍ଠ ପାନ କଲା ପରେ ବହୁବାର ତାଙ୍କର ଆତ୍ମବିସ୍ମୃତି ମଧ୍ୟ ଘଟିଥାଏ । ନିଜ ବିଷୟରେ କିମ୍ବା ଏହି ନିରର୍ଥକ ସଂସାରଟା ବିଷୟରେ ଭାବିବା ଲାଗି ତାଙ୍କୁ ଅବସର ନ ଥାଏ—ସରାଗ ବି ନ ଥାଏ । ଭାବିବା ଲାଗି—ସ୍ୱାଧ୍ୟାୟ କରିବା ଲାଗି, କିମ୍ବା ମନେ ମନେ ଆସ୍ୱାଦନ କରିବା ଲାଗି, ଏ ସଂସାର ବା ଏ ଜୀବନ ଏମିତି କିଛି ଗୋଟାଏ ମୂଲ୍ୟବାନ ସ୍ୱାଦିଷ୍ଟ ବିଷୟ ନୁହେଁ । ସେଇଥିଲାଗି ତ ସେ ଏ ସଂସାରକୁ ଏବଂ ତତ୍‌ସଙ୍ଗେ ସଙ୍ଗେ ଆପଣାକୁ ମଧ୍ୟ ପ୍ରାୟଶଃ ଭୁଲି କରି ରହିଥାନ୍ତି । ଏହି ଉଦାସୀନତା ପାଇଁ ତାଙ୍କୁ ବହୁବାର ବ୍ରହ୍ମା, ବିଶେଷତଃ ବିଷ୍ଣୁଙ୍କ ମୁହଁରୁ ଭର୍ତ୍ସନାମୂଳକ ପରିହାସ ଶୁଣିବାକୁ ପଡ଼ିଛି—ଭୋଳାନାଥ ! ଆପଣଙ୍କ ଦେହାତି କିଛି ହୋଇ ପାରେନା ! କେବଳ ସମସ୍ୟାମାନ ସୃଷ୍ଟି କରି ନିଜେ ହଇରାଣ ହୁଅନ୍ତି ଓ ତିନିପୁରକୁ ହଇରାଣରେ ପକାନ୍ତି । ଅବଶ୍ୟ ମହାଦେବଙ୍କୁ ଏ ପରିହାସ କାଟେ ନାହିଁ । ସେ ଜାଣନ୍ତି—ଭସ୍ମାସୁରକୁ "ଯାହା ମୁଣ୍ଡରେ ହାତ ଦେବୁ, ସେ ତତ୍‌କ୍ଷଣାତ୍ ଭସ୍ମ ହୋଇଯିବ" ବୋଲି ବର ଦେବା କଥାକୁ ଖୁଣ୍ଟା ଦେଇ ଏମାନେ ଏମିତି ପରିହାସ କରୁଛନ୍ତି । ମହାଦେବ ଅନ୍ତର ଭିତରେ କଥାଟାକୁ ଉପେକ୍ଷା କରନ୍ତି । ମନେ ମନେ ଭାବନ୍ତି—ସବୁ ନାଟର ଗୋବର୍ଦ୍ଧନ କିଏ ? ବିଷ୍ଣୁ ନୁହନ୍ତି ? ଭସ୍ମାସୁରକୁ ସୃଷ୍ଟି କରିବାରେ ବ୍ରହ୍ମାଙ୍କୁ ପ୍ରେରଣା ଦେଲା କିଏ ? ପୁଣି ଭସ୍ମାସୁର ମନରେ ଏହି ସର୍ବନାଶୀ କାମନା ଜାଗ୍ରତ କରି, ତାକୁ ଶିବଙ୍କ ଉଦ୍ଦେଶ୍ୟରେ ସେଭଳି କଠିନ ତପସ୍ୟା କରିବାକୁ ପ୍ରମତ୍ତ ପ୍ରଣୋଦନା ଦେଲା କିଏ ? ବିଷ୍ଣୁ ନୁହନ୍ତି ? ବିଷ୍ଣୁର ମାୟା ଜାଲରେ ଏ ବ୍ରହ୍ମାଣ୍ଡ ଧୃତ, ବିବ୍ରତ ଆଉ ସନ୍ତପ୍ତ । ବ୍ରହ୍ମା ଅବଶ୍ୟ ନିରୀହ ଜ୍ଞାନୀ ଭଦ୍ରଲୋକ । କିନ୍ତୁ ବିଷ୍ଣୁର ଅତି ଅନୁଗତ । ନିର୍ବିଘ୍ନରେ ବିଷ୍ଣୁ ଇଚ୍ଛାକୁ କ୍ରିୟାଶୀଳ କରିବା ଦ୍ୱାରା କି ମାରାତ୍ମକ ଭୁଲମାନ

ହୁଏ, ତାହା ବ୍ରହ୍ମା ବୁଝି ପାରନ୍ତି ନାହିଁ । ବ୍ରହ୍ମା ଜ୍ଞାନୀ ସତ, ମାତ୍ର ଚତୁର ନୁହନ୍ତି, ସ୍ୱାଧୀନ ନୁହନ୍ତି । ବିଷ୍ଣୁର ମାୟାରେ ନିଜେ ବ୍ରହ୍ମା ବହୁବାର ହନ୍ତସନ୍ତ ହୋଇ ଥିଲେ ବି ସେ କଥା ବୁଝିବାର କ୍ଷମତା ତାଙ୍କର ନାହିଁ । ସେଇଥିଲାଗି ତ ସେ ଥରେ ବ୍ରହ୍ମାଙ୍କ ମସ୍ତକରେ କ୍ରୁଦ୍ଧ ହୋଇ ଚପେଟାଘାତ କରିଥିଲେ । କିନ୍ତୁ ସେଥିଲାଗି ତାଙ୍କୁ ବହୁତ ଅନୁତପ୍ତ ହେବାକୁ ମଧ୍ୟ ପଡ଼ିଥିଲା । ଆଃ ! ! ସେହି ଦୃଶ୍ୟବସ୍ଥା ମନେ ପଡ଼ି ଶିବଙ୍କର ମନ ସନ୍ତପ୍ତ ହୋଇ ଉଠିଲା । ବ୍ରହ୍ମାଙ୍କର ସେହି ନିରୀହ ଛିନ୍ନ କପାଳ ତାଙ୍କର ହାତରେ ଲଗି ରହିଥିଲା ଅନେକ କାଳ ପର୍ଯ୍ୟନ୍ତ ! ଆଃ ! ସେହି ବିଭତ୍ସ ନିଦାରୁଣ ସ୍ମୃତି ! କିନ୍ତୁ ଏ ସବୁ କଥା ପାଇଁ ଦାୟୀ ସେହି କେବଳ ଜଣେ—ସେଇ ବିଷ୍ଣୁ ! ଅଥଚ.................

ଛି-ଛି-ଛି ! ମହାଦେବଙ୍କ ମନ ଭିତରେ ଗୋଟି ଗୋଟି ହୋଇ ବିଷ୍ଣୁଙ୍କର ଅପକର୍ମମାନ ମୂର୍ତ୍ତ ହୋଇ ଉଠିଲେ ଏବଂ ତାଙ୍କର ମନ ବିଷ୍ଣୁଙ୍କ ପ୍ରତି ନିର୍ମମ ହୋଇ ଉଠିଲା । ସେ ବିଚଳିତ ହୋଇ ପଡ଼ିଲେ । ଛି-ଛି-ଛି । କି ଆତ୍ମକୈନ୍ଦ୍ରିକ ଏଇ ବିଷ୍ଣୁ ! ନିଜ ଛଡ଼ା ଆଉ କିଛି ଦେଖି ପାରନ୍ତି ନାହିଁ । ନିଜକୁ ସବୁରି ଭିତରେ ଜବରଦସ୍ତି ପ୍ରବେଶ କରାଇ, ନିଜର ସମସ୍ତ କାମନା, ବାସନା ଓ ଅଭିଳାଷମାନ ଚରିତାର୍ଥ କରାଇ ନିଅନ୍ତି । ପ୍ରାଣୀ ମାତ୍ରେଇ ବିଷ୍ଣୁ ମାୟାରେ ମୋହିତ ହୋଇ କ୍ରିୟାରେ ମାତିଯାଏ । ସମସ୍ତ କ୍ରିୟାର ଶେଷ ଫଳତକ କିନ୍ତୁ ବିଷ୍ଣୁଙ୍କ ହାତରେ । କିନ୍ତୁ ସବୁ କ୍ରିୟାର ଯାବତୀୟ ପ୍ରତିକ୍ରିୟାରେ ଘାରି ହୋଇ, ହନ୍ତସନ୍ତ ହୋଇ, ମରୁଥାଏ ଏଣେ ପ୍ରାଣୀଟି ବିଚରା । ସବୁ ବିଷୟର ସ୍ରଷ୍ଟା ସେହି—ଦ୍ରଷ୍ଟା ସେହି—ପ୍ରଣୋଦକ ସେହି—ଅନୁମନ୍ତା ସେହି—କର୍ତ୍ତା ସେହି—ଭୋକ୍ତା ମଧ୍ୟ ସେହି । ସମଗ୍ର ବ୍ରହ୍ମାଣ୍ଡକୁ ବହୁ ବିପରୀତଧର୍ମୀ ବିଷୟର ସଂଯୋଗ ବିଯୋଗରେ ଆକ୍ରାନ୍ତ କରି, ସେ ନିଜେ କିନ୍ତୁ ସବୁରି ଊର୍ଦ୍ଧ୍ୱରେ ରହି ରସ-ଆସ୍ୱାଦନରେ ମାତି ଥାନ୍ତି । ତାଙ୍କର ଭକ୍ତମାନେ କହନ୍ତି—ସେ କୁଆଡ଼େ ଲୀଳା କରୁଛନ୍ତି । ଇସ୍ ! ଲୀଳା ? ଲୀଳା ନା ମାୟା ? ନିଷ୍ଠୁରତା—ଅତ୍ୟନ୍ତ ନିଷ୍ଠୁରତା— । ପ୍ରାଣୀ ଭିତରେ ସୁଖ ଦୁଃଖବୋଧର ଚେତନା ସୃଷ୍ଟି କରି, ପ୍ରାଣୀକୁ ସ୍ୱତନ୍ତ୍ର ଭାବେ ସୃଷ୍ଟି କରିବାର ଏବଂ ବିକାଶ ଲାଭ କରିବାର ମାୟିକ ପ୍ରବେଗଟିଏ ଦେଇ, ତାର ଚାରିପଟେ ବହୁ ପ୍ରତିକୂଳ ଏବଂ ବିପରୀତ ଶକ୍ତିମାନଙ୍କୁ ସୃଷ୍ଟି କରି, ଏବଂ ସେମାନଙ୍କ

ଭିତରେ ବି ସମାନ ଧରଣର ପ୍ରବେଗ ଦେଇ, ବିଷ୍ଣୁ ସବୁରି ଊର୍ଦ୍ଧ୍ୱରେ ରହି ପ୍ରାଣୀମାନଙ୍କର ମିଳନ ବିଛେଦ, ଜୟ ପରାଜୟ, ଶାନ୍ତି ସଂଗ୍ରାମ ଓ ହାସ୍ୟ ଅଶ୍ରୁ ଆଦି ଦେଖି ନିଜେ ନିଜେ ଖୁସି ହେଉ ନାହାନ୍ତି ତ ? ଏଭଳି ପରପୀଡ଼ନକାମୀ ଆତ୍ମରତିପରାୟଣ ବ୍ୟକ୍ତି ଠାରୁ ଅଧିକ କଣ ଆଉ ଆଶା କରାଯାଇ ପାରେ ? ମୋର ମଧ୍ୟ ଏଇ ଉପସ୍ଥିତ ଦୁର୍ଦ୍ଦଶା ପାଇଁ ଦାୟୀ କିଏ ? କାହିକି ମୁଁ ଆଜି ମୋର ସ୍ତ୍ରୀ ଓ ପୁତ୍ରମାନଙ୍କୁ ମୋର ଶ୍ୱଶୁରାଳୟ କୈଳାସରେ ଛାଡ଼ି, ଏଠି ଏହି ଅପନ୍ତରା ମଶାଣୀ ଭିତରେ ଅର୍ଦ୍ଧକ୍ଷିପ୍ତ ହୋଇ ବୁଲୁଅଛି ? କାହିଁକି ମୋର ଏହି ତୁଷାର-ଧବଳକାନ୍ତିମୟ ଦେହଟି ଦଗ୍ଧ ଶବର ଭସ୍ମ ରାଶିରେ ଧୂଳଆଧୂଷର ? କାହିଁକି ମୋର ଆପାଦମସ୍ତକ ଆଜି ସରିସୃପମାନଙ୍କର କ୍ରୀଡ଼ା କ୍ଷେତ୍ରରେ ପରିଣତ ହୋଇଛି ? କାହିଁକି ମୋର ମସ୍ତକ ଉପରେ ଗଙ୍ଗାସଦୃଶା ଉତ୍‌କୂଳିତା ନଦୀଟାଏ ଜଳପ୍ରପାତ ଭଳି ଅହୋରାତ୍ର ଝପାତ୍ ଝପାତ୍ ହୋଇ ପଡ଼ୁଅଛି ? ମୋର ମସ୍ତକ ଉପରେ ଚନ୍ଦ୍ରକୁ ବସାଇ ଦେଲା କିଏ ? ସବୁ ସେଇ ମାୟାବୀ ଚକ୍ରଧାରୀର ଚକ୍ରାନ୍ତ! ଅନ୍ୟକୁ ହଟହଟା କରି, ହନ୍ତସନ୍ତ କରି, ମଶାଣୀରେ ନ ଘୂରାଇଲେ ତାର ଶାନ୍ତି ନାହିଁ ! ପର ଦୁଃଖ ଦର୍ଶନର ନିଷ୍ଠୁର ଉଲ୍ଲାସକୁ ବିଷ୍ଣୁ ଭକ୍ତମାନେ କେଉଁ ଯୁକ୍ତିରେ ଲୀଳା ବୋଲି ପ୍ରତିପାଦନ କରନ୍ତି ? ଏହାକୁ ହିଁ କୁହାଯାଉଛି ଦିବ୍ୟଲୀଳା ?

ଏହି ସମୟରେ ନଦୀ କୂଳରେ ଏକ ଧେନୁପଲ ଅତର୍କରେ ବିପର୍ଯ୍ୟସ୍ତ ଭାବେ ଏଣେ ତେଣେ ଧାଉଁ ଥିବାର ଦେଖି ମହାଦେବ ଲକ୍ଷ୍ୟ କଲେ ଯେ ତାଙ୍କର ପ୍ରିୟ ବାହନ ଆଜୀବନ ବ୍ରହ୍ମଚାରୀ ଯୋଗ ସାଧକ ବୃଷଭ ଶ୍ରୀମାନ୍ ବାସୁ ସେହି ଧେନୁ ପଲ ଭିତରେ ପ୍ରବେଶ କରି ଗୋଟିଏ ସୁଦର୍ଶନା ସ୍ୱାସ୍ଥ୍ୟବତୀ ମାଥୁରୀ ଜାତୀୟା ରତ୍ନମତୀ ଯୁବତୀ ଗାଭୀ ପଛରେ କାମୋନ୍ମତ ହୋଇ ଶୃଙ୍ଗପରାଭିଳାଷରେ ଅନ୍ଧ ପ୍ରାୟ ଧାଉଁଅଛି ଏବଂ ମଧ୍ୟେ ମଧ୍ୟେ ତାର କାମ-ସ୍ପନ୍ଦିତ ଶରୀରକୁ ଆକର୍ଷଣ କରିବାକୁ ପ୍ରଚଣ୍ଡ ପ୍ରୟାସ କରୁଅଛି । ମହାଦେବ ସ୍ୱୀୟ ବ୍ରହ୍ମଚାରୀ ବାହନଟିର ଏତାଦୃଶ କାମ-ମୂଢ଼ତା ଦେଖି ଅତ୍ୟନ୍ତ ଦୁଃଖିତ ଓ କୋପିତ ହୋଇ ବୃଷଭକୁ ଆହ୍ୱାନ କରିବାକୁ ଘନଘନ ଡମରୁ ନାଦ କଲେ ଏବଂ ପରେ ପରେ ସିଙ୍ଗାବାଦନ କଲେ । ମାତ୍ର ତଥାପି କାମୋନ୍ମତ୍ତ ବୃଷଭ

ସେଥିପ୍ରତି ସାମାନ୍ୟ କର୍ଣ୍ଣପାତ କରୁନାହିଁ ଦେଖି ଭୃଙ୍ଗୀକୁ ଡାକିଲେ ଏବଂ ଯଥାଶୀଘ୍ର ବୃଷଭର କାମଜର୍ଜର ଊର୍ଦ୍ଧ୍ୱମୁଖୀ ନାସିକା ବିବରରେ ଗୋଟିଏ ଦଉଡ଼ି ଲଗାଇ ତାଙ୍କ ନିକଟକୁ ଭିଡ଼ି ଆଣିବାକୁ ଆଦେଶ ଦେଲେ । ଅଳ୍ପ ସମୟ ମଧ୍ୟରେ ଭୃଙ୍ଗୀ ବ୍ୟର୍ଥକାମ ବୃଷଭକୁ ଆଣି ଶିବଙ୍କ ପାଖରେ ଉପସ୍ଥିତ ହେଲେ । ସ୍ୱଭବ-ନିର୍ବିକାର ବୃଷଭ ଆପଣାର ଆଚରଣରେ ସାମାନ୍ୟ ଲଜ୍ଜିତ ହେଲପରି ଅଧୋମୁଖରେ ଦଣ୍ଡାୟମାନ ହୁଅନ୍ତେ—ଆଶୁତୋଷ ଭକ୍ତବତ୍ସଳ ଶିବଙ୍କର ହୃଦୟ କୃପାବିଷ୍ଟ ହୋଇଗଲା । ସେ ସାମାନ୍ୟ ଭର୍ତ୍ସନା କରି କହିଲେ —"ବତ୍ସ ବୃଷଭ ବାପୁ ! ମୁଁ ଜାଣେ ତୁମେ ସ୍ୱେଚ୍ଛାରେ ସେହି ଅପକର୍ମରେ ଲିପ୍ତ ହୋଇ ନ ଥିଲ । ସେହି ମାୟାବୀ ବିଷ୍ଣୁ କିନ୍ତୁ ନିଜେ କାମରୂପରେ ସମସ୍ତ ପ୍ରାଣୀଙ୍କ ଦେହ, ପ୍ରାଣ ଓ ମନରେ ପ୍ରବିଷ୍ଟ ହୋଇ ପ୍ରାଣୀଙ୍କୁ ଉଚାଟ କରୁଛନ୍ତି । ପ୍ରାଣୀମାନେ ଅନାୟତ୍ତରେ ସେହି କାମଜ୍ୱାଳାରେ ହନ୍ତସନ୍ତ ହୋଇ ଯୌନକ୍ରିଡ଼ାରେ ପ୍ରମତ୍ତ ହେଉଛନ୍ତି ଏବଂ ତଦ୍ୱାରା ବିଷ୍ଣୁର ମାୟାଜାଲ ଭିତରେ ପତିତ ହୋଇ କାଳ କବଳିତ ହେଉଛନ୍ତି । ମୁଁ ନିଜେ ମହାକାଳ ହେଲେ ମଧ୍ୟ, ଊର୍ଦ୍ଧ୍ୱରେତା ଯୋଗେଶ୍ୱର ହେଲେ ମଧ୍ୟ ଏବଂ ମୋର ତୃତୀୟ ଚକ୍ଷୁର ବିନିର୍ଗତ ଯୋଗାଗ୍ନିରେ କାମକୁ ଭସ୍ମୀଭୂତ କରିଥିଲେ ମଧ୍ୟ, ସେହି ମାୟାବୀ ବିଷ୍ଣୁ କାମକୁ ବିଦେହରେ ଜୀବନ୍ୟାସ କରି, ବହୁବାର ମୋର କୃପାଳୁ ହୃଦୟର ସୁଯୋଗ ନେଇ ମୋତେ କାମାବିଷ୍ଟ କରି ମୋର ବୁଦ୍ଧି, ବିବେକ, ବୈରାଗ୍ୟ ଓ ଯୋଗଶକ୍ତିକୁ ଧୂଳିସାତ୍ କରି ଲୋକ ସମକ୍ଷରେ ମୋତେ ହାସ୍ୟାସ୍ପଦ କରିଅଛନ୍ତି ।

ପୁତ୍ର ! ତୁମକୁ ବହୁବାର ମୁଁ ସେ ତତ୍ତ୍ୱ କହିଅଛି । ପୁନଶ୍ଚ କହୁଅଛି ଶ୍ରବଣ କର । ସେହି ମାଥୁରୀ ଜାତୀୟା ରୂପବତୀ ଓ ସ୍ୱାସ୍ଥ୍ୟବତୀ ଗାଭୀଟି ଭିତରେ ବିଷ୍ଣୁ ରଜ ରୂପରେ ଲୁଚି ରହି ତାହାକୁ ଋତୁମତୀ କରୁଛନ୍ତି । ଏବଂ ତୁମ୍ଭ ଭିତରେ ବୀର୍ଯ୍ୟ ରୂପରେ ଅବସ୍ଥାନ କରି, ତୁମ ଉଭୟଙ୍କୁ ଏକ ପ୍ରଚଣ୍ଡ ଉତ୍ତେଜନାମୟ ଯନ୍ତ୍ରଣାରେ ଏବଂ ଆକର୍ଷଣରେ ଜର୍ଜରିତ କରୁଛନ୍ତି । ତୁମେ ଦୁହେଁ ଶୃଙ୍ଗାର କ୍ରିୟାରେ ମତ୍ତ ହୋଇ ରତ ହେଲେ ସେହି ଗାଭୀଟି ଗର୍ଭବତୀ ହେବ ଏବଂ ବିଷ୍ଣୁଙ୍କର ଏହି ଯନ୍ତ୍ରଣାଦାୟକ ସୃଷ୍ଟି-ପରଂପରାଟି ଅବ୍ୟାହତ ରହିବ, ଏତିକି ମାତ୍ର ହେଲା ବିଷ୍ଣୁଙ୍କର ମୂଳ ଉଦ୍ଦେଶ୍ୟ ।

ବିଷ୍ଣୁଙ୍କର ଏହି ଘୋର ଦୁଃଖଦାୟକ ମାୟାପାଶଧୃତ ସଂସାରକୁ ଅବ୍ୟାହତ ରଖି, ତାଙ୍କର ଖିଆଲ ଖୁସିକୁ ଚରିତାର୍ଥ କରିବା ଲାଗି ତୁମେ କି ସକାଶେ ସେଥିରେ ଯନ୍ତ୍ର ରୂପେ ବା ସମିଧ ରୂପେ ବ୍ୟବହୃତ ହେବ ? ତୁମେ ଜାଣ ? ଶୃଙ୍ଗାର ହିଁ ମୃତ୍ୟୁ ? ରତି ମାତ୍ରେଇ ଆତ୍ମହତ୍ୟା ? ମୋର ଆଶା, ତୁମେ ଏଣିକି ଏହି ଗୁହ୍ୟତତ୍ତ୍ୱକୁ ସ୍ମରଣ ରଖି ବିଷ୍ଣୁମାୟାର ପ୍ରାଣଘାତିନୀ ସେହି ଅଗ୍ନି କୁଣ୍ଡ ଭିତରକୁ ଡେଇଁ ପଡ଼ିବାର ଆକର୍ଷଣକୁ ସଂହତ କରିବ । ଏଣିକି ସେହି ସବୁ ଋତୁମତୀ ଶୃଙ୍ଗାରକାମୀ ଗାଭୀମାନଙ୍କ ଠାରୁ ବହୁ ଦୂରରେ ରହି ଚରବୁଲ କରିବ । ସାବଧାନ ! ସାଧୁ ସାବଧାନ !

ଶିବଙ୍କର ଆଶୁତୋଷ ରୂପ ଦେଖି ବୃଷଭ ଆଶ୍ୱସ୍ତ ହେଲେ ଏବଂ ଅଧୋମୁଖ ହୋଇ ସେଇ ସ୍ଥାନରୁ ଧୀରେ ଧୀରେ ନିଷ୍କ୍ରାନ୍ତ ହୋଇଗଲେ । ତା' ପରେ ଶିବ, ଭୃଙ୍ଗୀଙ୍କୁ ପାଖକୁ ଡାକି ଧୀର ସ୍ୱରରେ ସାବଧାନ କରି କହିଲେ —ବାବୁ ଭୃଙ୍ଗୀ ! ଅଧୁନା ସନ୍ନିକଟ ଜନପଦମାନଙ୍କରେ ଅର୍ଥଲାଭ ଆଶାରେ ଗୋପାଳନ ଆବ୍ରାହ୍ମଣ ଚଣ୍ଡାଳଙ୍କର ଏକ ନିଶାରେ ପରିଣତ ହେଲାଣି । ମୁଁ ଲକ୍ଷ୍ୟ କରୁଛି—ସତ୍ୟ, ତ୍ରେତା ଓ ଦ୍ୱାପର ଯୁଗ ଅପେକ୍ଷା ଏହି କଳିଯୁଗରେ ଗାଈମାନଙ୍କ ସଂଖ୍ୟା ଜମ୍ବୁଦ୍ୱୀପରେ ଖୁବ୍ ଅଧିକ ହୋଇଗଲାଣି । ମାତ୍ର ଉତ୍ତମ ବୃଷଭଙ୍କ ସଂଖ୍ୟା କ୍ରମଶଃ କମି ଯାଉଥିବାରୁ ଏବଂ ଉତ୍କୃଷ୍ଟ ବୃଷଭଟିଏ ସୁଲଭ ନ ହେବାରୁ ଗୋପାଳକମାନେ ଆମ୍ଭର ଦିବ୍ୟ ବୃଷଭଟିକୁ ଅତ୍ୟନ୍ତ ହୃଷ୍ଟପୁଷ୍ଟ, ସୌନ୍ଦର୍ଯ୍ୟବାନ୍, ଅଫୁରନ୍ତ ବୀର୍ଯ୍ୟବନ୍ତ ଓ ରମଣପାରଙ୍ଗମ ଦେଖି ସେମାନଙ୍କର ଋତୁମତୀ ଗାଭୀମାନଙ୍କୁ ଆଣି ତା' ନିକଟରେ ଚରଇବେ ଓ ତାକୁ ଶୃଙ୍ଗାର ପାଇଁ ପ୍ରଲୁବ୍ଧ କରି ତାର ବ୍ରହ୍ମଚର୍ଯ୍ୟ ବ୍ରତକୁ ନସ୍ୟାତ୍ କରିଦେବେ । ତୁମେ ବୃଷଭ ଉପରେ ଖୁବ୍ ସଚେତନ ରହି ତୀକ୍ଷ୍ଣ ଦୃଷ୍ଟି ରଖିଥାଅ । ଏବେ ଯାଅ—ଏବଂ ନନ୍ଦୀ ସହିତ ମୋର ଗ୍ରୀଷ୍ମାପରାହ୍ଣକାଳୀନ ପାନୀୟ ଧରି ପୁନଶ୍ଚ ଏଠାକୁ ଆସ । ନାନାଦି କାରଣରୁ ମୋର ମନ ଭଲ ନାହିଁ—ମୁଁ ଗତ କେତେ ଦିନ ହେଲା ବହୁତ ମାନସିକ ବିପର୍ଯ୍ୟୟ ଭୋଗୁଅଛି । ମୋର ମନ ଖୁବ୍ ଚଞ୍ଚଳ ହେଉଅଛି । ମୁଁ ଧ୍ୟାନ ବା ସମାଧିରେ ବସି ପାରୁନାହିଁ ଓ ମୋର ଗତ ଏକମାସ ରାତ୍ରରେ ସୁନିଦ୍ରା ହେଉ ନାହିଁ । ତୁମେ ଦି' ଜଣ ଦିବାରାତ୍ର ଭଙ୍ଗ ଖାଇ ଭୋଳ ହୋଇ ଘୁମନ୍ତ

ଅବସ୍ଥାରେ ଥିବା ହେତୁ ମୋର ଦୁର୍ଦ୍ଦଶା ଜାଣି ପାରୁନାହିଁ । ଯାଅ—ଯାହା କହିଲି, ତାହା କର ଓ ମୋତେ ଏକୁଟିଆ ରହିବାକୁ ଦିଅ ।

ଭୃଙ୍ଗୀ ଚାଲିଯିବା ପରେ ଶିବ ପୁନଶ୍ଚ ନିଜ ଭବନାରେ ବିଚଳିତ ହେବାକୁ ଲାଗିଲେ । ଆଃ ! ସବୁ ଅନର୍ଥର ମୂଳ ସେହି ବିଷ୍ଣୁ । ମୋତେ ଶ୍ମଶାନବାସୀ ଭିକ୍ଷୁକ କରି ସୁଦ୍ଧା ତାଙ୍କର ମନ ଶାନ୍ତି ହୋଇ ନାହିଁ । ମୋର ଏହି ଶିଶୁ ବୁଦ୍ଧି ଆଜନ୍ମ ବ୍ରହ୍ମଚାରୀ ଅନୁଗତ ବୃଷଭଟିକୁ ମଧ୍ୟ ତାଙ୍କର ମାୟା କୂପରେ ଅଧଃ ପତିତ କରିବା ଲାଗି ଚକ୍ରାନ୍ତ କରୁଛନ୍ତି ? ଧିକ୍ ଧିକ୍ ! ଓଃ ! ବିଷ୍ଣୁଙ୍କର କି ନାରକୀୟ ଚକ୍ରାନ୍ତ ! କି ଦୁଷ୍ଟ ବୁଦ୍ଧି ! କି ହୀନ ଚିନ୍ତା ! ମୋତେ ନ ଜଣାଇ ଅସୁର ଓ ଦେବତାମାନଙ୍କୁ ଏକତ୍ର କରି ସମୁଦ୍ର ମନ୍ଥନ କଲେ । ସମୁଦ୍ର ମନ୍ଥନରୁ କି କି ସୁନ୍ଦର ଜିନିଷ ସବୁ ନ ବାହାରି ଥିଲା ? ଅମୃତ, ଚନ୍ଦ୍ର, ଐରାବତ ହସ୍ତୀ, ଉଚ୍ଚୈଃଶ୍ରବା ଘୋଟକ, କୌସ୍ତୁଭ ମଣି, ପାରିଜାତ ପୁଷ୍ପ, ପାଞ୍ଚଜନ୍ୟ ଶଂଖ ଆଉ ରମ୍ଭା ମେନକାଦି ରୂପବତୀ ଅପ୍ସରମାନଙ୍କ ସହ ତ୍ରିଭୁବନ ମୋହିନୀ ଅପରୂପ ସୌନ୍ଦର୍ଯ୍ୟମୟୀ, ଅଶେଷ ଗୁଣବତୀ, ପରମ ଐଶ୍ୱର୍ଯ୍ୟ ଆଉ ମାଧୁର୍ଯ୍ୟ ବିମଣ୍ଡିତା ମହାଲକ୍ଷ୍ମୀ । ପୁଣି ତାଙ୍କ ସାଙ୍ଗକୁ ଆହୁରି କେତେ ଚମତ୍କାର ଦ୍ରବ୍ୟରାଜି । ଦେବତାମାନେ ଯେ ଯାହା ପାରିଲେ ଆପଣା ଲାଗି ବାଛି ନେଲେ । ପ୍ରଥମ କରି ବିଷ୍ଣୁ ନିଜ ପାଇଁ ସର୍ବଶ୍ରେଷ୍ଠ ଜିନିଷଗୁଡ଼ିକ ବାଛି ନେଇ ଗଲେ । କୌସ୍ତୁଭ ମଣି, ପାଞ୍ଚଜନ୍ୟ ଶଂଖ—ଆଉ ଶେଷରେ ମହାଲକ୍ଷ୍ମୀଙ୍କୁ ବାଛି ନେଇ ନିଜର ଭାର୍ଯ୍ୟା କରି ନେଲେ । ପରିଶେଷରେ ଅମୃତ ଭେଜି କରି ସମସ୍ତେ ମିଳିମିଶି ଖାଇ ହେଉଡ଼ି ମାରିଲେ । ମୋତେ ତ ଏତେ କଥା ଏଣେ ହେଲାଣି ବୋଲି ଜଣା ନାହିଁ ! ମହାମୁନି ନାରଦ ବିଚରା ଖୁବ୍ ଭଲ ଲୋକ । ବିଷ୍ଣୁଙ୍କର ଏକାନ୍ତ ଭକ୍ତ ହେଲେ ବି ମୋ ପ୍ରତି ମଧ୍ୟ ତାଙ୍କର ବିଶେଷ ସ୍ନେହ ଭକ୍ତି ଥାଏ । ତାଙ୍କରି ଠାରୁ ଖବର ପାଇ ଯାଇ ପହଞ୍ଚିଲି ସମୁଦ୍ର କୂଳରେ । ସେମାନେ ସମସ୍ତେ ଅମୃତ ଭେଜି ଖାଇ ସାରି ଦୁଗ୍ଧ ସମୁଦ୍ରରେ ହସ୍ତ ମୁଖ ପ୍ରକ୍ଷାଳନ କରୁଥିଲେ । ଆଉ କିୟତ୍ ଦୂରରେ ବିଷ୍ଣୁ କୌସ୍ତୁଭ ମଣିର ହାର ପରିଧାନ କରି ଗର୍ବିତ ଭାବେ ଲକ୍ଷ୍ମୀଙ୍କୁ କୋଳରେ ଧରି ଖଣ୍ଡିଏ ପ୍ରସ୍ତରାସନ ଉପରେ ବସି ତାମ୍ବୁଳ ସେବନ କରି ସମସ୍ତଙ୍କ ଉପରେ ମୋହନ ଦୃଷ୍ଟି

ନିକ୍ଷେପ କରି ସମସ୍ତଙ୍କୁ ବଶୀଭୂତ କରୁଥିଲେ । ତାଙ୍କ ପାଖରେ ବ୍ରହ୍ମା ଆଉ ଖଣ୍ଡିଏ ଶିଳାସନରେ ବସି ନିକଟରେ ଦଣ୍ଡାୟମାନ ବିଶ୍ୱକର୍ମାଙ୍କୁ ଖଣ୍ଡିଏ ନକ୍‌ସା ଦେଖାଇ କଣ ସବୁ କଥାବାର୍ତ୍ତା କରୁଥିଲେ । ଯମଦେବ ନାଗ ରଜ ବାସୁକୀଙ୍କ କନ୍ୟାମାନଙ୍କ ସଙ୍ଗେ ରଙ୍ଗରସରେ ମାତି ଥିଲେ । ବରୁଣଦେବ ଗନ୍ଧର୍ବ କନ୍ୟାମାନଙ୍କ ଠାରୁ ସଙ୍ଗୀତ ଶୁଣୁଥିଲେ ଏବଂ ଇନ୍ଦ୍ର ସେହିସବୁ ରୂପବତୀ ଛଇଳା ଅପ୍‌ସରୀମାନଙ୍କ ସଙ୍ଗେ ଅକ୍ଷକ୍ରୀଡ଼ାରେ ରତ ଥିଲେ । ମୁଁ ସେଠାରେ ପହଞ୍ଚିବା ମାତ୍ରେ କେହି ମୋ ଆଡ଼କୁ ଭ୍ରୂକ୍ଷେପ ମଧ୍ୟ କଲେ ନାହିଁ । ବ୍ରହ୍ମା କିନ୍ତୁ ଖୁବ୍ ଭଦ୍ରଲୋକ । ମୋ ଉପରେ ଆଖି ପଡ଼ିଲା ମାତ୍ରେ ଆସନରୁ ଉଠି ଆସି ମତେ ପାଛୋଟି ନେଲେ ଏବଂ ବିଷ୍ଣୁଙ୍କ ପାଖ ଆସନଟି ଦେଖାଇ ମୋତେ ବସିବାକୁ କହିଲେ ; ମାତ୍ର ମୁଁ ସେଠାରେ ନ ବସି ଠିଆ ହୋଇ ରହିଲି । ତା' ପରେ ବିଷ୍ଣୁ ମୋତେ କଟାକ୍ଷରେ ଚାହିଁ ସାମାନ୍ୟ ହସି ମୋ ଉଦ୍ଦେଶ୍ୟରେ ଶ୍ଳେଷାତ୍ମକ ବାକ୍ୟଟିଏ ପ୍ରୟୋଗ କଲେ—"ଭୋଳାନାଥ ! ଆପଣ ଏତେ ବେଳଯାଏ କୁଆଡ଼େ ଥିଲେ ? କୁଆଡ଼େ ଯାଇଥିଲେ ?"

ଏ ପ୍ରଶ୍ନରେ ମୁଁ ଖୁବ୍ ଚଟିଗଲି । ମୋ ପାଟିରୁ ବାହାରି ଆସୁଥିଲା—ତୁମ ବାପାର ଶ୍ରାଦ୍ଧ ଦେବାକୁ ଯାଇଥିଲି । ମାତ୍ର ଏତେ ଦେବଦେବୀଙ୍କ ଆଗରେ କ୍ରୋଧ ସମ୍ବରଣ କରି କହିଲି—ବଡ଼ ଦୁଃଖର କଥା । ମୋତେ ଖବର ପର୍ଯ୍ୟନ୍ତ ଦିଆଗଲା ନାହିଁ ? ବିଷ୍ଣୁ ମୋର ହାତ ଧରି ତାଙ୍କ ପାଖ ଆସନରେ ବସାଇ ଦେଲେ । କହିଲେ—ପଶୁପତି ! କ୍ଷମା କରିବେ । ଏ ସବୁ ମୋତେ ହଠାତ୍ ସିଦ୍ଧାନ୍ତ ଓ ଆୟୋଜନ କରିବାକୁ ପଡ଼ିଲା । ବ୍ରହ୍ମା ମଧ୍ୟ ଶେଷ ପର୍ଯ୍ୟନ୍ତ ଜାଣି ନ ଥିଲେ । ଆପଣ ମଧ୍ୟ କୈଳାସରେ ନିର୍ବିକଳ୍ପ ସମାଧିରେ ନିମଜ୍ଜିତ ଥିଲେ ବୋଲି ନାରଦଙ୍କ ଠାରୁ ଶୁଣିଲୁ । ଆପଣଙ୍କର ସମାଧି ଭଙ୍ଗିବାକୁ ଉଚିତ ମନେ କଲି ନାହିଁ । କିଛି ଶୋଚନା କରନ୍ତୁ ନାହିଁ । ଆପଣଙ୍କ ପାଇଁ ଆଉ ଥରେ ସମୁଦ୍ର ମନ୍ଥନ ହେବ । ବାସୁକୀର ଶରୀର ବହୁ ଜାଗାରେ ଛିଡ଼ି ଯିବାରୁ ଏବଂ ଦେବତାମାନେ କ୍ଳାନ୍ତ ହୋଇ ପଡ଼ିଲାରୁ ଆମ୍ଭେମାନେ ଆଉ ଅଧିକ ସମୁଦ୍ର ମନ୍ଥି ପାରିଲୁ ନାହିଁ । ଏବେ ସମସ୍ତଙ୍କର ଯଥେଷ୍ଟ ବିଶ୍ରାମ ହୋଇ ଗଲଣି । ଅମୃତ ପାନ କରି ସମସ୍ତେ ଖୁବ୍ ସତେଜ

ହୋଇ ଉଠିଲେଣି । ଆଉ ଥରେ ସମୁଦ୍ର ମନ୍ଥନ କରିବା—ଅନ୍ତତଃ ଆପଣଙ୍କ ସମ୍ମାନ ଲାଗି !

ସେହି ମାୟାବୀ କପଟୀ ବିଷ୍ଣୁଙ୍କ ଆଦେଶରେ ଆଉ ଥରେ ସମୁଦ୍ର ମନ୍ଥନ ହେଲା । ବହୁ ସମୟ ମନ୍ଥନ ପରେ ହଠାତ୍ ଏକ ଉଜ୍ଜ୍ୱଳ ସବୁଜାଭ ତରଳ ପଦାର୍ଥ ଉପରକୁ ଉଠିବା ଦେଖି ସମସ୍ତେ ଚିତ୍କାର କରି ଉଠିଲେ । ଖୁଆ ଦଉଡ଼ି ଛାଡ଼ି ଦେଇ ସମସ୍ତେ ସେହି ପଦାର୍ଥଟିକୁ ଧରିବାକୁ ହାତ ବଢ଼ାଇ ଦେଲେ ଏବଂ ସଙ୍ଗେ ସଙ୍ଗେ ଯନ୍ତ୍ରଣାସୂଚକ ଆର୍ତ୍ତନାଦ କରି ତୀରଭୂମିକୁ ଉଠି ଆସିଲେ । କ୍ରମେ ସେହି ଉଜ୍ଜ୍ୱଳ ସବୁଜାଭ ତରଳ ପଦାର୍ଥଟି ଜଳ ଭିତରୁ ତୀର ଭୂମିକୁ ପ୍ରସରି ଆସିଲା ଏବଂ ଅଗ୍ନିବର୍ଣ୍ଣ ଧାରଣ କରି ଚରାଚର ମାଡ଼ିଗଲା । ଦେବଦାନବ, ବୃକ୍ଷଲତା, ଜୀବଜନ୍ତୁ ସମସ୍ତେ ତାର ଜ୍ୱାଳାମୟୀ ପ୍ରଭାବରେ ଅସ୍ଥିର ହୋଇ ବିଷ୍ଣୁଙ୍କ ପାଖକୁ ଧାଇଁ ଆସିଲେ । ବିଷ୍ଣୁ ତାହା ଦେଖି କହିଲେ—ଦେବଦାନବଗଣ ! ସ୍ଥିର ହୁଅ । ଏହି ଉଜ୍ଜ୍ୱଳ ପଦାର୍ଥଟି କାଳକୂଟ ବିଷ । ଏହା ଜୀବନଘାତୀ ଏବଂ ଚରାଚରକୁ ଅଚିରେ ପୋଡ଼ି ଭସ୍ମ କରିଦେବ । ତୁମ୍ଭେମାନେ ସମସ୍ତେ ଅଶେଷ ବିଭୂତିବାନ୍ ଦେବଦେବ ମହାଦେବଙ୍କୁ ପ୍ରାର୍ଥନା କର । ସେହି କେବଳ ଏହି କାଳକୂଟକୁ ଗର୍ଭସ୍ଥ କରି ହଜମ କରି ପାରନ୍ତି ।

ତାହାହିଁ ହେଲା । ଅବଶେଷରେ ତାହାହିଁ ହେଲା । ଦେବଦାନବ ଓ ଅନ୍ୟାନ୍ୟ ପ୍ରାଣୀଙ୍କର ତ୍ରାହିତ୍ରାହି ଆର୍ତ୍ତରବ ଶୁଣି ମୋର ହୃଦୟ କରୁଣାରେ ବିଦୀର୍ଣ୍ଣ ହୋଇଗଲା । ମୁଁ ନିମିଷକେ ଗୋଟିଏ ଶଙ୍ଖରେ ସେହି ଜୀବନଘାତୀ କାଳକୂଟକୁ ପୂରାଇ ଏକାଢୋକରେ ପିଇଦେଲି । ଆଃ—ସେହି ବାସୁକୀମୁଖ ନିଃସୃତ ଅବ୍ୟର୍ଥ ନାଶକାରୀ ତରଳ ଅଗ୍ନି ସଦୃଶ ବିଷ ମୋର ଗର୍ଭସ୍ଥ ହେବା ପୂର୍ବରୁ ମୋର କଣ୍ଠଦେଶକୁ ପୋଡ଼ି ଜାଳି ଦେଲା । ମୋର ଗ୍ରୀବାଦେଶ ହଠାତ୍ ନୀଳବର୍ଣ୍ଣ ହୋଇଗଲା ଏବଂ ମୋର ସମସ୍ତ ଶରୀର ସମେତ ମସ୍ତିଷ୍କରେ ଘୋର ଦୁଃସହ ଦାହ ଆରମ୍ଭ ହୋଇଗଲା । ମୁଁ ଯନ୍ତ୍ରଣାରେ ଛଟପଟ ହୋଇଉଠିଲି । ମୋର ଏହି ଦୁର୍ଦ୍ଦଶାରେ ଦେବତାମାନେ, ଏପରିକି ରାକ୍ଷସଗଣ ମଧ୍ୟ ହାହାକାର କରି ଉଠିଲେ । ମାତ୍ର ଓଃ !! ବିଷ୍ଣୁ କି ନିଷ୍ଠୁର, ହୃଦୟହୀନ ! ସ୍ମିତହାସ୍ୟ କରି ସେ ସମସ୍ତଙ୍କ ଉଦ୍ଦେଶ୍ୟରେ କହିଲେ—

ଦେବ ଦାନବ ଆଉ ମାନବଗଣ ! ଶିବ ସ୍ୱୟଂ ମୃତ୍ୟୁଞ୍ଜୟ । ଏହି ଛାର ବିଷ ତାଙ୍କୁ ମାରି ପାରିବ ନାହିଁ । କିନ୍ତୁ ଅନନ୍ତ କାଳ ପର୍ଯ୍ୟନ୍ତ ସେ ଏହି ବିଷଜ୍ୱାଳାରେ ଦଗ୍‌ଧିଭୂତ ହେଉ଼ଥିବେ । ମାତ୍ର ତୁମ୍ଭମାନଙ୍କୁ ମୋର ଆଦେଶ ହେଲା– ତୁମ୍ଭେମାନେ ଆଜିଠାରୁ ତାଙ୍କର ବିଗ୍ରହର ଲହୁଣୀ, ନବାତ, ଦୁଗ୍‌ଧ, ପକ୍ୱରମ୍ଭା ପଇଡ଼ଜଳ ଇତ୍ୟାଦି ସର୍ବଦା ଘର୍ଷଣ କରି ତାଙ୍କର ଶରୀରକୁ ଏହି ବିଷର ଦାହ ଜ୍ୱାଳାରୁ ରକ୍ଷା କରିବ । ଏବଂ ନାଗମାନେ ଶୀତଳରକ୍ତ ବିଶିଷ୍ଟ ପ୍ରାଣୀ ହୋଇଥିବାରୁ, ସେମାନେ ସର୍ବଦା ତାଙ୍କର ଦେହରେ ଅବସ୍ଥାନ କରି ତାଙ୍କ ଶରୀରକୁ ସୁଶୀତଳ ରଖିବେ ।...ବିଷ୍ଣୁ ସେମାନଙ୍କ ଉଦ୍ଦେଶ୍ୟରେ ଏତେକ କହି, ମତେ କହିଲେ–ଆଶୁତୋଷ ! ଆପଣଙ୍କୁ ମୋର ଅନୁରୋଧ, ଆପଣ ଆଉ କୈଳାସ ପର୍ବତ ତ୍ୟାଗକରି କୁଆଡ଼େ ଯିବେନାହିଁ । କୈଳାସ ଆପଣଙ୍କର ଶଶୁରଘର । ସେଠାରେ ସର୍ବଦା ଶୀତଋତୁ ବିଦ୍ୟମାନ ଥାଏ । ଏବଂ ନିତ୍ୟ ତୁଷାରପାତ ହେଉଥାଏ । ସେହି ସ୍ଥାନ ଆପଣଙ୍କ ପାଇଁ ଖୁବ୍ ଆରାମପ୍ରଦ ହେବ ।

ବିଷ୍ଣୁଙ୍କ ମୁଖରୁ ଏତେକ ଶୁଣି ମୁଁ ନୀରବରେ ଠିଆ ହୋଇ ରହିଲି । କିଛି ଆପତ୍ତି ଅଭିଯୋଗ କଲି ନାହିଁ । ଏକ ବିଚିତ୍ର ଅଭିମାନ ମୋତେ ଖୁବ୍ ଦମ୍ଭ, ସାହସ, ଓ ସହନଶୀଳତାରେ ଦୃଢ଼ କରି ଧରି ରଖିଲା । ମୁଁ ସାମାନ୍ୟ ହସି କହିଲି–ବାଃ, ସୁନ୍ଦର ଆୟୋଜନ ! ସୁନ୍ଦର ବ୍ୟବସ୍ଥା ! ସୁନ୍ଦର ବିଧାନ ! କାହାକୁ କିଛି ନକହି ମୁଁ ଗମ୍ଭୀରଭାବେ ସେ ସ୍ଥାନ ପରିତ୍ୟାଗ କରି କୈଳାସ ଅଭିମୁଖରେ ବାହାରି ଆସିଲି । ସେହିଦିନୁଁ ମୋର ମସ୍ତିଷ୍କ ସମେତ ସମସ୍ତ ଶରୀର ନିତ୍ୟ ବିଷ ଜ୍ୱାଳାରେ ଦଗ୍‌ଧୀଭୂତ ହେଉଅଛି । ସୁଧାମୟ ଶୀତଳ ଚନ୍ଦ୍ର, ହିମତରଳ ଗଙ୍ଗାବାରୀ, ସୁଶୀତଳ ଦ୍ରବ୍ୟର ପ୍ରଲେପନ, ଅସଂଖ୍ୟ ନାଗଙ୍କର ଶୀତଳ ଦେହର ସ୍ପର୍ଶ, କିଛି ମତେ ସେହି ଦୁଃସହ ବିଷ ଜ୍ୱାଳାରୁ ରକ୍ଷାକରି ପାରୁନାହାନ୍ତି । କିନ୍ତୁ ସେଥିଲାଗି ମୁଁ ଆଉ କାତର ନୁହଁ–ବିବ୍ରତ ନୁହଁ–। ମୁଁ ଜାଣେ–ତାହାହିଁ ମୋର ପ୍ରାପ୍ୟ । ତାହାହିଁ ମୋର ସମସ୍ତ ଯୋଗସାଧନାର ସିଦ୍ଧି । ବିଷ୍ଣୁକୃତ ଏହି ମାୟାପ୍ରପଞ୍ଚର ସମସ୍ତ ବିଷ ମତେହିଁ ଗ୍ରହଣ କରିବାକୁ ପଡ଼ିବ । ପ୍ରାଣୀମାନେ ସେହି ବିଷର ଜ୍ୱାଳାକୁ ସହ୍ୟ କରି ପାରିବେ ନାହିଁ । ତେଣୁ ମୁଁ ସେ ବିଷକୁ ସ୍ୱେଚ୍ଛାରେ ପାନ କରିଛି । ସ୍ୱେଚ୍ଛାରେ

ମୁଁ ନୀଳକଣ୍ଠ ହୋଇଛି । ନିଜର ଚକ୍ରାନ୍ତ ସଫଳ ହେଲା ବୋଲି ମାୟାବୀ ବିଷ୍ଣୁ ମନେ ମନେ ଆତ୍ମପ୍ରସାଦ ଲାଭ କରୁଥାନ୍ତି । ମାତ୍ର ମୁଁ ଜାଣେ, ଏହି ପ୍ରପଞ୍ଚର ଏହି ସମଗ୍ର ପ୍ରାଣଘାତୀ ବିଷକୁ ସ୍ୱୟଂ ବିଷ୍ଣୁ ମଧ୍ୟ ପାନକରି ଜୀର୍ଣ୍ଣ କରି ପାରି ନଥାନ୍ତେ । ଶିବ ହିଁ ବିଷ ପାନକାରୀ । ଶିବ ହିଁ ନିଖିଳ ଜଗତର ବିଷ ଜ୍ୱାଳା ସହିଷ୍ଣୁ ମୃତ୍ୟୁଞ୍ଜୟୀ ଯୋଗେଶ୍ୱର । ଶିବ ନିଷ୍ପାପ, ନିଷ୍କାମ, ନିରଭିଳାଷ, ନିର୍ଲିପ୍ତ, କୃପାଳୁ, ଋଜୁଗତି ଆଉ ନିର୍ମଳଚିତ୍ତ । ଶିବ ନିର୍ଭୟ, ନିର୍ଲଜ, ନିର୍ଘୃଣ, ନିର୍ବାସ ଆଉ ନିରଙ୍କୁଶ । ଶିବ ଅଟଳ, ଅଚଳ, ଅନପେକ୍ଷ, ଆଉ ଆଶୁତୋଷ ଭୋଳାନାଥ । ଶିବ ନିଜେ ଅଛଳ । ତେଣୁ ବିଷ୍ଣୁଙ୍କର କୌଣସି ଛଳନା ତାଙ୍କୁ ଆକ୍ରାନ୍ତ କରିପାରେନାହିଁ । ଶିବ ନିଜେ ଐଶ୍ୱର୍ଯ୍ୟ ବର୍ଜିତ, ତେଣୁ ମହେଶ୍ୱର ଶିବ ନିଜେ ଅନଭିଯୋଗୀ, ଅନାକ୍ରାନ୍ତ, ଆଉ ଉପେକ୍ଷା ଓ ତିତିକ୍ଷାର ମୂର୍ତ୍ତିମନ୍ତ ବିଗ୍ରହ । ଆତ୍ମମ୍ଭରୀ ଆତ୍ମାରାମ ଲୀଳା-ସ୍ୱାଦନଲାଳସୀ ଚକ୍ରଧାରୀ ବିଷ୍ଣୁର ଉଚପ୍ଳୁତ ମାୟାପାଶ ଆତ୍ମଭୋଳା ତ୍ରିଶୂଳଧାରୀ ଭଲଗ୍ନ ଶିବର ନଖାଗ୍ର ସୁଦ୍ଧା ସ୍ପର୍ଶକରି ପାରେନା । ଶିବ ବିଷ୍ଣୁର ଏହି ସୃଷ୍ଟିର ବିଧାନକୁ ସ୍ୱୀକାର କରେନା । କିନ୍ତୁ ଯନ୍ତ୍ରଣା ଜର୍ଜର ଏହି ସୃଷ୍ଟି-ପ୍ରପଞ୍ଚର ସାମାନ୍ୟତମ ଆର୍ତ୍ତଚିତ୍କାରରେ ଶିବର ଶିଳାହୃଦୟ ବିଗଳିତ ହୋଇଯାଏ । ଶିବ ବିଷ୍ଣୁପରି ନିଷ୍ଠୁର ନୁହେଁ—ପ୍ରବଞ୍ଚକ ନୁହେଁ—ପରପୀଡ଼ନରେ ଆହ୍ଲାଦକ ନୁହେଁ । ଶିବ ଶିବ । ଆଉ, ବିଷ୍ଣୁ ବିଷ୍ଣୁ ।

ଦେବାଧିଦେବ ଶିବ ଏହିପରି ଆପଣା ଭିତରେ ବିଷ୍ଣୁଙ୍କ ଅପକର୍ମମାନ ସ୍ମରଣ କରି ସନ୍ତୁଳିତ ହେଉଛନ୍ତି—ଏହି ସମୟରେ ନନ୍ଦୀ ଓ ଭୃଙ୍ଗୀ ଦୁଇଟି ବିଶାଳ ମୃତ୍ତିକା କଳସୀରେ ପୂର୍ଣ୍ଣକୁମ୍ଭ ଗ୍ରୀଷ୍ମତାପାପନୋଦକ ଭଙ୍ଗ ଧରି ତାଙ୍କ ସମୀପରେ ଉପସ୍ଥିତ ହେଲେ । ଶିବ ସେଥିରୁ ଗୋଟିଏ କୁମ୍ଭ ସଙ୍ଗେ ସଙ୍ଗେ ପାନକରି କିଛି ମୁହୂର୍ତ୍ତ ସ୍ଥାଣୁ ହୋଇ ବସିଲେ । ଚା'ପରେ ନନ୍ଦୀ ଉଦ୍ଦେଶ୍ୟରେ କହିଲେ—ବତ୍ସ ନନ୍ଦୀ ! ଆଜି ପାନୀୟଟି ଖୁବ୍ ସୁସ୍ୱାଦୁ ହୋଇଅଛି । ଏହା ପାନକଲା ମାତ୍ରେ ମୋର ଦେହ ମନର ଦାହ କିଞ୍ଚିତ ଦୂର ହେଲା ଭଳି ବୋଧହେଉଛି । ଅନ୍ୟ କଳସୀଟି ତୁମ୍ଭେ ଦୁହେଁ ସମାନ ଭାଗ କରି ପାନକର । ଦେଖ ; ନିଜ ଭିତରେ ଅଯଥା କଳହ କରନାହିଁ । ମୁଁ ଜାଣେ ତମେ ଦୁହେଁ ମୋ ସଙ୍ଗେ ଏଠାରେ ଏପରି ରହି ବହୁ କଷ୍ଟ ଭୋଗ କଲଣି । କୈଳାସରେ ଥିବାବେଳେ

ପାର୍ବତୀ ତୁମ ଦୁହିଁଙ୍କୁ ଗଣେଶ କାର୍ତ୍ତିକଙ୍କ ସହିତ ସମାନ ପୁତ୍ର ଭାବେ ପାଳନ କରୁଥିଲେ । ତୁମ୍ଭେମାନେ ଅତ୍ୟନ୍ତ ସୁସ୍ୱାଦୁ ଓ ପୁଷ୍ଟିକର ଖାଦ୍ୟ ଭୋଜନ କରୁଥିଲ । ମୋ ସଙ୍ଗେ ଏହି ଅପନ୍ତରରେ ରହିବା ଫଳରେ ତୁମ୍ଭେମାନେ ସେଥିରୁ ବଞ୍ଚିତ ହୋଇଅଛ ।

ଶିବଙ୍କ ଉକ୍ତି ଶୁଣି ନନ୍ଦୀ କହିଲେ—ପ୍ରଭୁ ! କାହିଁକି ଆପଣ ଏଠାରେ ରହି ନିଜକୁ ଏତେ କଷ୍ଟ ଦେଉଛନ୍ତି ! ଚାଲନ୍ତୁ—ଆଜି କୈଳାସ ଫେରିଯିବା ।

ଶିବ କହିଲେ—ନା—ନା ; ସେକଥା ଆଉ ମୁହଁରେ ଧରନାହିଁ । କୈଳାସକୁ ଫେରି ମୁଁ ଯେ ଆଉ ଥରେ ସେହି ସଂସାର ଝଞ୍ଜାଳରେ ପତିତ ହୋଇ ଅହୋରାତ୍ର ବିଷ୍ଣୁମାୟାରେ ସନ୍ତୁଳିତ ହେବି—ସେକଥା ଆଉ ହୋଇ ପାରିବ ନାହିଁ । ତୁମ୍ଭେମାନେ ନିଶ୍ଚୟ ଜାଣ ଯେ ବିଷ୍ଣୁଙ୍କର ସମସ୍ତ ଚକ୍ରାନ୍ତକୁ ମୁଁ ବୁଝିଥିଲେ ମଧ୍ୟ ସ୍ୱେଚ୍ଛାରେ ମୁଁ ତାଙ୍କର ଜାଲ ଭିତରକୁ ଡେଇଁ ପଡ଼ିଥିଲି । ଯାହାଫଳରେ କି ମୋତେ ଦ୍ୱିତୀୟ ଦାରପରିଗ୍ରହ କରିବାକୁ ପଡ଼ିଲା । ଏବଂ ଏହି ଦ୍ୱିତୀୟଥର ହିମାଳୟକନ୍ୟା ପାର୍ବତୀଙ୍କୁ ବିବାହ କରିବା ପରେ ହିଁ ମୋର ଯୋଗ ତପସ୍ୟାରେ ସବୁକିଛି ବାଧାବିଘ୍ନ ପହୁଞ୍ଚି ଗଲା । ସେଥିରେ ବ୍ୟତିବ୍ୟସ୍ତ ହୋଇ, ପାର୍ବତୀଙ୍କ ସହ ପୁତ୍ର ଦୁହିଁଙ୍କୁ ସେଠାରେ ପରିତ୍ୟାଗ କରି, ଏଠି ଏହି ଅପନ୍ତର ମାଳଭୂମିରେ ଏକାକୀ ଆପଣାର ଅଭିମାନ ମାତ୍ରାକୁ ସମ୍ବଳ କରି ଦୀନଭାବେ ଶ୍ମଶାନରେ ବାସ କରୁଅଛି । ତୁମେ ଦୁହେଁ ମୋର ଅତିପ୍ରିୟ—ଅତିବାଧ୍ୟ । ମୋର ପୁତ୍ରଙ୍କ ଅପେକ୍ଷା ଅଧିକ ମୁଗ୍ଧସେବକ । ତୁମେମାନେ ଅତି ସୁକୁମାର । କାହିଁକି କୈଳାସରେ ସ୍ୱର୍ଗସୁଖ ଭୋଗ ନକରି ମୋ ସଙ୍ଗେ ବାତୁଳ ପ୍ରାଏ ଦୁଃଖ କଷ୍ଟ ଭୋଗ କରି ସନ୍ତପ୍ତ ହେଉଛ ? ମୋତେ ତୁମମାନଙ୍କୁ ଦେଖି ଅତ୍ୟନ୍ତ କଷ୍ଟ ଲାଗୁଛି । ମୋର ଇଚ୍ଛା' ତୁମେ ଦୁହେଁ କାଲି ସକାଳୁ କୈଳାସ ଚାଲିଯାଅ । ବୃଷଭ ତୁମ ଦୁହିଁଙ୍କୁ ପୃଷ୍ଠରେ ବହନ କରି ଅଳ୍ପସମୟ ଭିତରେ ସେଠାରେ ଛାଡ଼ି ଚାଲି ଆସିବ । ତୁମେମାନେ ଯାଅ—ଏବଂ ମୋତେ ଏକାକୀ ମୋର ଭାଗ୍ୟ ଭୋଗ କରିବାକୁ ଛାଡ଼ିଦିଅ ।

ଶିବଙ୍କ ମୁଖରୁ ଅକସ୍ମାତ ଏହି ଅଭାବିତ କଥା ଶ୍ରବଣ କରି ନନ୍ଦୀ ଓ ଭୃଙ୍ଗୀ ଦୁହେଁ ଏକାବେଳକେ କାନ୍ଦ ଉଠିଲେ । ଏବଂ ଶିବଙ୍କ ପାଦତଳେ

ପଡ଼ିଗଲେ । ଶିବ ସେମାନଙ୍କୁ ତଳୁ ଉଠାଇ ଅଗାଧ ସ୍ନେହରେ ଆଲିଙ୍ଗନ କଲେ । ତାଙ୍କର ତିନୋଟିଯାକ ଚକ୍ଷୁ ଏହି ଆବାଲ୍ୟ ପିତୃମାତୃହୀନ ସରଳ ନିର୍ବୋଧ ଶିବଗତପ୍ରାଣ ଅର୍ଷିତ ଚେଲା ଦୁଇଟିଙ୍କର ଅକୃତ୍ରିମ ପ୍ରୀତି ଦେଖି ସଜଳ ହୋଇଉଠିଲେ । ତାହା ଦେଖି ନନ୍ଦୀ ଶୋକୋଚ୍ଛ୍ୱାସରେ କହିଲେ—

ପ୍ରଭୁ ! ଆମ୍ଭମାନଙ୍କୁ ତଡ଼ିଦିଅନ୍ତୁ ନାହିଁ । ଆପଣଙ୍କ ପାଖେ ପାଖେ ରହି ଆପଣଙ୍କର ସେବାକରି ଆପଣଙ୍କ ଭାବରେ ବିହ୍ୱଳ ହୋଇ ଆମ୍ଭେମାନେ କାଳକୁ ମଧ୍ୟ ପାଶୋରି ଦେଇଅଛୁ । ପିତା ! ଆମକୁ ଛାଡ଼ିଦେଲେ ଆପଣ ବହୁ ଅସୁବିଧାରେ ପଡ଼ିବେ । ବିଶେଷତଃ ଦେବ, ଦାନବ ଓ ମାନବାଦି ପ୍ରାଣୀମାନେ ଆପଣଙ୍କୁ ଗୋଟିଏ ମୁହୂର୍ତ୍ତ ବି ଶାନ୍ତିରେ ରଖାଇ ଦେବେ ନାହିଁ । ନାନାଦି ତପସ୍ୟା କରି, କେତେକ ମଧ୍ୟ ଆଦୌ ଯାଗଯଜ୍ଞ ନକରି, ସାମାନ୍ୟ ମିଷ୍ଟବାକ୍ୟରେ ଆପଣଙ୍କୁ ଭୁଲାଇ ଦେଇ ନାନା ପ୍ରକାର ଅସାଧ୍ୟ ବରମାନ ମଞ୍ଜୁର କରିନେବେ । ଏବଂ କେହି କେହି ଆପଣଙ୍କୁ ଧମକ ଚମକ ଦେଇ ମଧ୍ୟ ଆପଣଙ୍କଠାରୁ ଅଦ୍‌ଭୁତ ସବୁ ବର ଆଦାୟ କରିନେବେ । ଏବଂ ଆପଣ ଶେଷରେ ମହାହଇରଣରେ ପଡ଼ି ଜଟା ଛିଡ଼ାଇ ନାଚିବେ । ସେକଥା ମନରେ ଧରନ୍ତୁ ନାହିଁ । ଆମେ ଦୁହେଁ ମଧ୍ୟ ଆପଣଙ୍କୁ ଛାଡ଼ି ମୁହୂର୍ତ୍ତେ ରହିପାରିବୁ ନାହିଁ । ଆପଣଙ୍କୁ ଧାରଣ କରି ଏହି ଅପନ୍ତରା ମାଳଭୂମିର ଶ୍ମଶାନ ମଧ୍ୟ ଶିବମୟ ହୋଇଯାଇଛି । ନାନାଦି କାରଣରୁ ବ୍ରାତ୍ୟଦେଶରୂପେ ଅପଖ୍ୟାତ ଏହି କଳିଙ୍ଗଭୂମି ମଧ୍ୟ ପବିତ୍ର ହୋଇଯାଇଛି ।

ନନ୍ଦୀ ଆଉସବୁ କ'ଣ କହିଥାନ୍ତେ—ମାତ୍ର ଭୃଙ୍ଗୀ ଶିବଙ୍କୁ କୁଣ୍ଢାଇ ଧରି କାନ୍ଦିକାନ୍ଦି କହିଲେ—ପ୍ରଭୁ ! ଆପଣଙ୍କୁ ଦେଖି ଓ ଆପଣଙ୍କ କଥା ଶୁଣି ମୋର ସନ୍ଦେହ ହେଉଛି ଯେ ଆପଣ ନିଶ୍ଚୟ କିଛି ଗୋଟାଏ କଠିଣ ଅନିର୍ବଚନିୟ ମନସ୍ତାପରେ ଅହୋରାତ୍ର ଦଗ୍‌ଧ ହେଉଅଛନ୍ତି । ଆପଣ ନିତ୍ୟତୁଷ୍ଟ ଯୋଗେଶ୍ୱର ପରମପ୍ରଶାନ୍ତି ଦେବାଧିଦେବ ମହେଶ୍ୱର । ଆପଣଙ୍କ ମନରେ ବ୍ୟଥା ଦେଲାଭଳି ଏହି ତ୍ରିପୁରରେ କିଏ ଅଛି ? କ'ଣ ବା ଅଛି ? ଆମପ୍ରତି କୃପାପରବଶ ହୋଇ ଆପଣ ଆମ ଆଗରେ ସେହି ଗୋପନ ମନୋବ୍ୟଥାଟି ପ୍ରକାଶ କରନ୍ତୁ । କୈଳାସ ଛାଡ଼ି ଆସିଲା ବେଳେ, ଆପଣ ମା' ପାର୍ବତୀଙ୍କୁ

କଥା ଦେଇଥିଲେ ଯେ ଏକାମ୍ରକାନନରେ କିଛିକାଳ ଭ୍ରମଣ କରି ଖୁବ୍ ଶୀଘ୍ର କୈଳାସ ଫେରିଯିବେ । ମୋର ଅନୁମାନ ହେଉଛି ଯେ ଆମର କୈଳାସ ଛାଡ଼ି ଏଠାକୁ ଆସିବା ମାନବ ଗଣନାରେ ଏକଶତ ବର୍ଷକୁ ଆଉ ଓଳିଏ ମାତ୍ର ବାକି ଅଛି । ଆମେ ଆସିଲାବେଳେ, ମା' ପାର୍ବତୀ ଆମକୁ ବାରମ୍ବାର ତାଗିଦ୍ କରି କହିଥିଲେ—ଦେଖ୍ ନନ୍ଦୀ ! ଦେଖ୍ ଭୃଙ୍ଗୀ ! ମୋର ସୁନାପୁଅମାନେ ! ତୁମର ପ୍ରଭୁଙ୍କ ପ୍ରକୃତି ତ ତୁମେ ଦୁହେଁ ଭଲଭାବେ ଅବଗତ ଅଛ । ମୋତେ ଛାଡ଼ି ସେ ଦଣ୍ଡେ ବି କୁଆଡ଼େ ଯା'ନ୍ତି ନାହିଁ । ମୁହୂର୍ତ୍ତକେ ବି କୋଉଠି ରହି ପାରନ୍ତି ନାହିଁ । ଏଥର ତାଙ୍କ ମୁଣ୍ଡକୁ କ'ଣ ଜୁଟିଛି କେଜାଣି—ସବୁବେଳେ ତ ଚିଡ଼ିଚିଡ଼ି ହେଉଛନ୍ତି—କହୁଛନ୍ତି ଏକୁଟିଆ ଏକାମ୍ରକାନନ ପର୍ଯ୍ୟନ୍ତ ଯିବେ । ବାବୁମାନେ ! ମୁଁ ସେ ସ୍ଥାନ ଦେଖିନାହିଁ । ତେବେ ଶୁଣୁଛି—ତାହା କୁଆଡ଼େ ଉତ୍ତ୍ରକଳିଙ୍ଗମାନଙ୍କ ଦେଶ । ସେମାନେ ବଡ଼ ଦୁଃସାହସୀ—ଯୁଦ୍ଧ ଓ କଳହପ୍ରବଣ । ସର୍ବଦା ନିଜ ନିଜ ମଧ୍ୟରେ ହଣାକଟାରେ ଲାଗିଥାନ୍ତି । ଅତର୍କିତରେ ପରସ୍ପରର ଗୋଛିକାଟୁଥାନ୍ତି । ଓ ତ୍ରିକାଳଦର୍ଶୀ ଦେବର୍ଷି ନାରଦ କହୁଥିଲେ ଯେ ସେହି ଉତ୍ତ୍ରକଳିଙ୍ଗାମାନେ ଘୋର ନାସ୍ତିକ ଓ ବହୁଭଗ ଗ୍ରବାକପନ୍ଥୀ । ସେମାନେ ନିଜନିଜର ଭାର୍ଯ୍ୟା-ମାନଙ୍କୁ ପୋଷ୍ୟପ୍ରାଣୀ ବା ଦାସୀ ରୂପେ ବ୍ୟବହାର କରନ୍ତି । ସେମାନେ ହରି ହର ବ୍ରହ୍ମା କାହାର ନାମ ସୁଦ୍ଧା ଶ୍ରବଣ କରି ନାହାନ୍ତି । ସନକମୁନି କହୁଥିଲେ ଯେ, କଳିଙ୍ଗ ପତିତମାନଙ୍କ ବାସଭୂମି । ସେଠାର ଲୋକେ କେବଳ ଭୋଜନ, ଶୟନ ଓ ରମଣାଦି କାର୍ଯ୍ୟରେ ଧୁରନ୍ଧର । ସେମାନେ ଅଧ୍ୟୟନ ବିମୁଖ ଓ ତପସ୍ୟାହୀନ । ସେମାନେ ବେଦବିରୋଧୀ । କିନ୍ତୁ ନାନାଦି ଗୁଣୀ ଗାରେଡ଼ୀ ବିଦ୍ୟାରେ ପ୍ରବୀଣ । ଏବଂ ବେଦବିମୁଖ ଏହି ଉତ୍ତ୍ରକଳିଙ୍ଗାମାନେ ପାଷୁବେଦ ନାମକ ଏକ କିମ୍ଭୂତ ଲୌକିକ ଉଦ୍ଭଟ ବିଷୟକୁ ନେଇ ମାତିଥାନ୍ତି । ସେମାନେ ଆପଣାର ବିଧବା ଭ୍ରାତୃଜାୟାକୁ ହରଣ କରନ୍ତି ଓ ଭ୍ରାତୃସମ୍ପତ୍ତି ଅପହରଣ କରି ପୁତୁରା-ଝିଆରୀମାନଙ୍କୁ ଅନାଥ କରି ତଡ଼ି ଦିଅନ୍ତି । ଦେଖ ନନ୍ଦୀ ! ଦେଖ ଭୃଙ୍ଗୀ ! ତୁମର ଏହି ଭୋଳାନାଥ ପ୍ରଭୁଟିକୁ ଗୋଡ଼େ ଗୋଡ଼େ ଲାଗିଥିବ । ନଦୀକୂଳ ଦେଖି ରହିବ । ପ୍ରଚୁର ସର୍ପଥିବା ସ୍ଥାନରେ ପ୍ରଭୁଙ୍କୁ ଶୟନ କରାଇବ । ପ୍ରଚୁର ଥଣ୍ଡା ଓ ମିଠା ଖାଦ୍ୟପେୟ ସଂଗ୍ରହ କରି ପ୍ରଭୁଙ୍କୁ ଭୁଞ୍ଜାଉଥିବ । ତାଙ୍କୁ ଏକୁଟିଆ କୁଆଡ଼େ ଛାଡ଼ିବ ନାହିଁ । ତାଙ୍କ ପାଖକୁ

ଏକୁଟିଆ କାହାଁକୁ କୁଆଡ଼େ ଛାଡ଼ିବ ନାହିଁ । ଉତ୍ତରକଳିଙ୍ଗମାନେ ବଡ଼ ଅବିଶ୍ୱାସୀ —ଏବଂ ସେମାନେ ବିନା ଯାଗଯଜ୍ଞରେ, ବିନା ସାଧନ ଭଜନରେ, ବିନା ଦାନ-ଦାକ୍ଷିଣ୍ୟରେ, ବିନା ଯୋଗତପସ୍ୟାରେ, ବିନା ଜ୍ଞାନ ଭକ୍ତିରେ, ଅଦ୍ଭୁତ ବରମାନ ପାଇବା ଲାଗି ଉଚ୍ଚାକାଂକ୍ଷା ପୋଷଣ କରନ୍ତି ଓ ନାନାଦି ହୀନ ଛଳକୌଶଳ ପ୍ରୟୋଗ କରନ୍ତି । ମୁଁ ତୁମ ଦୁହିଁଙ୍କୁ ବାରମ୍ବାର ସାବଧାନ କରି କହୁଛି—ତୁମେମାନେ ତାଙ୍କୁ ଛାଇପରି ସବୁଆଡୁ ଜଗିରହିଥିବ । ...ପ୍ରଭୁ ! ମା' ପାର୍ବତୀଙ୍କ ମୁଖରୁ ଏତେକ ଶୁଣିଲା ପରେ ଆମେ ଆଉ ଆପଣଙ୍କୁ ଦଣ୍ଡେ ଛାଡ଼ି ରହି ପାରିବୁ ? ଆପଣ ଆମକୁ ତ୍ରିଶୂଳାଘାତ କଲେ ସୁଦ୍ଧା ଆମେ ଆପଣଙ୍କୁ ପରିତ୍ୟାଗ କରି କୁଆଡ଼େ ଯିବୁ ନାହିଁ । ବରଂ ଆପଣଙ୍କ ମନ ଯଦି ଏଠାରେ ଏମିତି ଏତେ ଖରାପ ହେଉଛି, ତେବେ ଚାଲନ୍ତୁ ଆମେ କାଲି ସକାଳେ କୈଳାସକୁ ଫେରିଯିବା । ଏବଂ ସେଠାରେ ଆମେ ଆପଣଙ୍କୁ ମା' ପାର୍ବତୀଙ୍କ ପାଖରେ ଫେରାଇ ଦେଇ ନିଶ୍ଚିନ୍ତ ହେବୁ ।

ଭୃଙ୍ଗୀଙ୍କ ମୁହଁରୁ କଥା ଛଡ଼ାଇ ନେଇ ଶିବ ଖୁବ୍ ବିରକ୍ତିସୂଚକ କଣ୍ଠରେ କହିଲେ—ଆରେ ଯାଃ ! ମା' ପାର୍ବତୀ !! ତୁମେ ଶିଶୁବୁଦ୍ଧି ଅପୋଗଣ୍ଡମାନେ କ'ଣ କିଛି ବୁଝ ନା ଜାଣ ? ତୁମର ସେଇ ମା' ପାର୍ବତୀଙ୍କ ତୋଡ଼ ମୁଁ ବହୁତ ସହ୍ୟ କଲିଣି । ଆଉ କିନ୍ତୁ ନୁହେଁ । ଓହୋ ! ବିଷ୍ଣୁଙ୍କର ମୋ ଉପରେ କି ଅହଙ୍କା ! ଆରେ ନନ୍ଦୀ ! ଆରେ ଭୃଙ୍ଗୀ ! ତୁମେମାନେ ମୋ ଜୀବନର ଦୁଃଖପୂର୍ଣ୍ଣ ଇତିହାସକୁ ହୃଦୟ ଦେଇ କଳନା କରିନାହଁ ! ତେବେ ଆଜି ଶୁଣ—ମନଦେଇ ଶୁଣ । ତୁମେମାନେ ଜାଣ—ମୁଁ ଥିଲି ସ୍ୱୟମ୍ଭୁ ବ୍ରହ୍ମଚାରୀ । କିନ୍ତୁ ସେହି ବିଷ୍ଣୁଙ୍କ କଥାରେ ପଡ଼ି ମତେ ଦିନେ ଦକ୍ଷପ୍ରଜାପତିଙ୍କ କନ୍ୟା ସତୀଙ୍କୁ ଗୋଟିଏ ଦାୟରେ ପଡ଼ି ବିବାହ କରିବାକୁ ପଡ଼ିଲା । ହେଲାତ, ଯାହା ହେବାର ହେଲା । ମୁଁ ସେଥିରେ କିଛି ଅଭିଯୋଗ କରିନାହିଁ । ତୁମେମାନେ ତ ସେତେବେଳେ ଖୁବ୍ ପିଲା । ସତୀଙ୍କ ମୁଖକମଳ ତୁମର. ମନେ ପଡ଼ୁଛି ତ? ସେଭଳି ସୁନ୍ଦର ମୁଖ ବ୍ରହ୍ମା ଏଯାବତ୍ ସୃଷ୍ଟି କରିପାରି ନାହାନ୍ତି । ତାଙ୍କପରି ସତୀସାଧ୍ୱୀ ସହନଶୀଳା ଦେବୀ ମୁଁ କୁତ୍ରାପି ଦେଖିନାହିଁ । ତାଙ୍କ ସାଙ୍ଗରେ ସେହି କେତେଦିନର ଘରକରଣା ଜାଣ ମୋର ଦେବଜୀବନର ସବୁଠାରୁ ସୁଖତମ ଦିନ । ଆମ୍ଭେ ଦୁହେଁ ବିବାହ କରିଥିଲେ ବି ସମ୍ପୂର୍ଣ୍ଣଭାବେ

ବ୍ରହ୍ମଚର୍ଯ୍ୟ ପାଳନ କରୁଥିଲୁ ଓ ଦୁହେଁଯାକ ତପସ୍ୟାରେ ନିରତ ଥିଲୁ । କିନ୍ତୁ ବିଷ୍ଣୁ ସେତିକି ସୌଭଗ୍ୟ ମୋର ସହ୍ୟ କରିପାରିଲେ ନାହିଁ । ମୋ ଜୀବନକୁ ପୋଡ଼ି ଛାରଖାର କରିଦେ ାକୁ ତାଙ୍କର ଚକ୍ରାନ୍ତ ଚାଲିଲା । ସେସବୁ ଲୋମହର୍ଷକ ହୃଦୟବିଦାରକ କାହାଣୀ ମୁଁ ତୁମମାନଙ୍କ ଆଗରେ ବହୁବାର ବୟାନ କରିଛି । ସେଦିନର ସେହି ଦକ୍ଷପ୍ରଜାପତିଙ୍କ ମହାଯଜ୍ଞ କଥା ତୁମର ମନେ ଅଛିତ ? ଦକ୍ଷପ୍ରଜାପତି ମୋର ଶ୍ୱଶୁର ହୋଇସୁଦ୍ଧା ତାଙ୍କର ଯଜ୍ଞକୁ ସବୁ ଦେବଦେବୀଙ୍କୁ ନିମନ୍ତ୍ରଣ କଲେ । କିନ୍ତୁ ମୋତେ ବା ସତୀ କାହାକୁ ନିମନ୍ତ୍ରଣ କଲେ ନାହିଁ । କାହା ଶିକ୍ଷାରେ ? ସେହି ବିଷ୍ଣୁଙ୍କ ମନ୍ତ୍ରଣାରେ ନୁହେଁ କି ? ତା'ପରେ–ତା'ପରେ ସେହି ହୃଦୟ ବିଦାରକ ସ୍ମୃତି ସବୁ ମୋର ମନେ ପଡ଼ିଲେ ଏବେବି ମୋର ଛାତି ଫାଟିଗଲା ଭଳି ଲାଗେ । ପିତୃଗୃହରେ ଏତେ ବଡ଼ ଯଜ୍ଞାନୁଷ୍ଠାନ ଦେଖିବାକୁ ସତୀଙ୍କର ସେହି କରୁଣ ଅନୁଯୋଗ, ବିନା ନିମନ୍ତ୍ରଣରେ ନଯିବା ଲାଗି ମୋର ବାରମ୍ବାର ନିଷେଧବାଣୀ, ତାପରେ ଦିନେ ମୋର ନିଷେଧକୁ ଅବଜ୍ଞା କରି ମୋର ଅଜାଣତରେ ସତୀ ଏକାକିନୀ ଚାଲିଯା'ନ୍ତି ପିତ୍ରାଳୟକୁ । ସେଠି ବହୁ ବିଶିଷ୍ଟ ନରନାରୀ ଦେବଦେବୀ, ଯକ୍ଷରକ୍ଷ, ଗନ୍ଧର୍ବ, କିନ୍ନର ଓ ମୁନି ଋଷିଙ୍କ ସମ୍ମୁଖରେ ସତୀଙ୍କୁ ଦରିଦ୍ର ସ୍ୱାମୀର ପତ୍ନୀରୂପେ ଦକ୍ଷପ୍ରଜାପତିଙ୍କର ନିଦାରୁଣ ଅପମାନ, ଏବଂ ମୋର ନିନ୍ଦାଗାନ ସହ ଅବମାନନା–ସ୍ୱାମୀନିନ୍ଦା ସହ୍ୟ କରି ନପାରି ସେହି ସ୍ୱାମୀଗତପ୍ରାଣା ସାଧ୍ୱୀ ସତୀଙ୍କର ସେହି ପ୍ରଜ୍ୱଳନ୍ତ ଅଗ୍ନିକୁଣ୍ଡରେ ଶୋଚନୀୟ ଆତ୍ମ ବିସର୍ଜନ ...ତାପରେ, ତାପରେ ନନ୍ଦୀ ! ଓଃ ! ସେକଥା ମନେ ପଡ଼ିଲେ ମୋର ସମଗ୍ର ଶରୀର କମ୍ପିତ ହେଉଛି ଓଃ !!.....ଯେତେବେଳେ ଗଣମାନଙ୍କ ମୁଖରୁ ସେହି ନିଦାରୁଣ ବୃତ୍ତାନ୍ତ ଶ୍ରବଣ କଲି, ବିଶ୍ୱର ସମସ୍ତ ବେଦନା ମୋ ଭିତରେ କ୍ରୋଧରେ ରୂପାନ୍ତରିତ ହୋଇଗଲା । ମୋର ସମସ୍ତ ଶରୀର ସ୍ଫିତ ହୋଇ ଘନ ଘନ କମ୍ପମାନ ହେଲା । ମୋର ଆବଦ୍ଧ ଜଟାବାଳ ବିକ୍ଷିପ୍ତ ହୋଇ ପଡ଼ିଲେ । ମୋର ତିନୋଟିଯାକ ନୟନରୁ ଧପ୍‌ଧପ୍ ହୋଇ ଅଗ୍ନି ହୁଳାମାନ ବହିର୍ଗତ ହୋଇ ଆକାଶକୁ ବହ୍ନିମୟ କରିଦେଲା । ମୋର ନାସିକାରୁ ପ୍ରଳୟ ପବନ ଘନଘନ ବହିବାରୁ ସମଗ୍ର ବିଶ୍ୱ ବିକ୍ଷୁବ୍‌ଧ ହୋଇ ଉଠିଲା । ଏକ ମହାପ୍ରଳୟର ରୁଦ୍ରଝଙ୍କାରରେ, ଧ୍ୱଂସର ତାଳେ ତାଳେ ମୁଁ କ୍ରୋଧୋନ୍ମତ୍ତ ହୋଇ ବିଶ୍ୱ ଉପରେ ନାଚିଉଠିଲି । ପ୍ରଳୟର ତାଣ୍ଡବରେ ସାଗ

ବ୍ରହ୍ମାଣ୍ଡ ତ୍ରାସିତ ହୋଇ ଉଠିଲା । ତ୍ରାହି ତ୍ରାହି ରବରେ ଆକାଶ ପୃଥିବୀ ବିଦୀର୍ଣ୍ଣ ହୋଇଗଲା । ମୋର ରୁଦ୍ରଗଣମାନଙ୍କ ସହିତ ମୁଁ ସେହି ଗର୍ବମତ୍ତ ଦକ୍ଷ ପ୍ରଜାପତିର ଯଜ୍ଞକୁ ଧ୍ୱଂସ କରି ବସିଲି ଏବଂ ପ୍ରିୟତମା ସତୀଙ୍କର ସେହି ଅର୍ଦ୍ଧଦଗ୍ଧ ଶରୀରକୁ ସ୍କନ୍ଧରେ ବହନ କରି ମହାକ୍ରୋଧ ଓ ମହା-ସନ୍ତାପରେ ପୃଥିବୀ ଉପରେ ଉତ୍‌କ୍ଷିପ୍ତ ହୋଇ ତାଣ୍ଡବ ନୃତ୍ୟ ଆରମ୍ଭ କରିଦେଲି । ତାପରେ......ତାପରେ......ତାପରର ସବୁ ଘଟଣା ତୁମମାନଙ୍କର ମନେ ଅଛି ତ ?

ମହାଦେବ କଥାବେଗ ସଂହତ କରି ଶିଷ୍ୟଦୁହିଁଙ୍କ ଆଡ଼େ ଗ୍ରହିଁଲେ । ସେ ଦେଖିଲେ ଯେ ଭୃଙ୍ଗୀ କେତେବେଳୁ ଏହି ଗଳ୍ପ ଶୁଣୁଶୁଣୁ ସେହି ବସିବା ସ୍ଥାନରେ ଢୁଳାଇ ପଡ଼ିଲାଣି । ତାର ନାସିକା ନିଃସୃତ ଘୁଂଘୁଡ଼ି ଧ୍ୱନିରେ ଚତୁର୍ଦ୍ଦିଗ ନିନାଦିତ ହେଉଅଛି । ମାତ୍ର ନନ୍ଦୀ ତାଙ୍କ ଆଡ଼କୁ ନିବିଷ୍ଟଭାବେ ଗ୍ରହିଁ ସେହି ହୃଦୟ ବିଦାରକ କାହାଣୀ ଶୁଣୁଥାଏ । ଭୃଙ୍ଗୀକୁ ଘୁଂଘୁଡ଼ିମାରି ଶୋଇବା ଦେଖି ନନ୍ଦୀ ଖୁବ୍ ରାଗିଯାଇ ତାର ନାକଟାକୁ ଜୋରରେ ଚିପି ଧରିଲା ଏବଂ ସେଥିରେ ଭୃଙ୍ଗୀ ଅଣନିଶ୍ୱାସୀ ହୋଇ ଚଟାପଟ ଉଠି ପଡ଼ିଲା ଓ ପ୍ରଥମେ ନନ୍ଦୀ ଗାଲରେ କଷିକରି ଗୋଟାଏ ଚଟକଣୀ ମାରି କହିଲା—କେଡ଼େ ଅବିବେକୀ ସଇତାନଟାରେ ତୁ ? ପ୍ରଭୁଙ୍କ କଥା ଶୁଣୁଶୁଣୁ ମୋର କୁଳକୁଣ୍ଡଳିନୀ ଶକ୍ତି ହଠାତ୍ ଜାଗ୍ରତ ହୋଇ ଉଠିଲା । ତାପରେ ବିଦ୍ୟୁତ୍‌ବେଗରେ ମୋର ନାଭି, ହୃଦ, କଣ୍ଠ, ଲଲାଟାଦି ଚକ୍ର ପାରି ହୋଇ ମୋର ସହସ୍ରାରେ ପ୍ରବେଶ କରିଗଲା ତେଣୁ ମୁଁ ନିର୍ବିକଳ୍ପ ସମାଧିରେ ଅଭିଭୂତ ହୋଇ ଯୋଗ ନିଦ୍ରାରେ ମଗ୍ନ ଥିଲାବେଳେ, ତୁ ମୋର ନାକଟାକୁ ଚିପିଧରି ମୋତେ ଅଣନିଃଶ୍ୱାସୀ କରିଦେଇ ମୋର ସମାଧି ଭଙ୍ଗିଦେଲୁ ? ଆଚ୍ଛା ଏ ଅବସ୍ଥାରେ ଯଦି ମୋର ହୃତ୍‌ଯନ୍ତ୍ରକ୍ରିୟା ବନ୍ଦ ହୋଇ ଯାଇଥାନ୍ତା ? ଯଦି ମୋର ମସ୍ତିସ୍କ ତରଳି ଯାଇ ମୋର ନାସିକା ଦ୍ୱାରରେ ବାହାରି ଆସିଥାନ୍ତା ? ମୂର୍ଖ ! ସାଙ୍ଗେ ସାଙ୍ଗେ ମୋର ଜୀବନଟା ଗ୍ଲଲି ଯାଇଥାନ୍ତା ନା ନାହିଁ ? ଭାଙ୍ଗରେ ନାଗଗରଳ ମିଶାଇ ପାନ କରିବା ଫଳରେ ତୋର ଏମିତି ବାରମ୍ବାର ବୁଦ୍ଧିଭ୍ରଂଶ ଘଟୁଛି —ତାହା ତୁ ଜାଣିପାରୁ ନାହୁଁ ?

ଭୃଙ୍ଗୀର ଭର୍ତ୍ସନା ଶୁଣିବା ମାତ୍ରେ ନନ୍ଦୀ ଆଉ ସମ୍ଭାଳି ପାରିଲେ ନାହିଁ । ସେ କହିଲେ—ଆରେ ଭୃଙ୍ଗୀ ତୁ ଗୋଟାଏ ଗର୍ଦ୍ଦଭ ! ତୋର କୂଳକୁଣ୍ଡଳିନୀ ବୋଲି କିଛି ଅଛି ନା ଆଗ ? କହିବି ତୋର ଅପକର୍ମ ସବୁ ? ଆଚ୍ଛା, ତୁ ମଳତ୍ୟାଗ କରି ସାରି ବାମହସ୍ତରେ ମୃତ୍ତିକା ମାର୍ଜ୍ଜନ କରୁ ? ସତ କହ ! ଏବେ ସୁଦ୍ଧା ଶୟନକାଳରେ ତୋର ଶଯ୍ୟାରେ ମୂତ୍ରତ୍ୟାଗ କରିବାର ବଦଭ୍ୟାସ ଅଛି ନା ନାହିଁ କହିଲୁ ?

ଏମାନଙ୍କର ଏହି ବାଳସୁଲଭକଳହ ଦେଖି ଶିବ ସେମାନଙ୍କ ଆଡ଼କୁ କିଞ୍ଚିତ୍ ବିରକ୍ତି ସୂଚକ ଦୃଷ୍ଟି ନିକ୍ଷେପ କଲେ ଏବଂ ନିଜକୁ ଆହୁରି ନିଃସଙ୍ଗ ବୋଧ କରି କହିଲେ—ଆରେ ନିର୍ବୋଧମାନେ ! ଶୀଘ୍ର ମୋପାଖରୁ ବାହାରି ଯାଅ ଏବଂ ଦୂରରେ ନଦୀ ବାଲିରେ ବସି ଯେତେ ପାରୁଛ କଳି କଜିଆ କରୁଥାଅ—କିମ୍ବା ଧଗଧରି ଗଡ଼ାଗଡ଼ି ହେଉଥାଅ । ଭବିଥିଲି— ଏକା ଏକା କେବଳ ବୃଷଭକୁ ଧରି ଏଠିକି ଚାଲି ଆସିବି । ବିଷ୍ଣୁର ଏ ସଂସାରକୁ ପରିତ୍ୟାଗ କରି ପତ୍ନୀ ପୁତ୍ରଙ୍କଠାରୁ ଦୂରେଇ ଆସିଲି । ମାତ୍ର ତୁମେ ହତଭଗା ଅପୋଗଣ୍ଡ ଦି'ଜଣ ମୋ ପିଛା ଧରିଲ—ଏବଂ ଏଠି ମଧ୍ୟ ମତେ ଏ ଶ୍ମଶାନରେ ଶାନ୍ତିରେ ରଖାଇ ଦେଉନାହଁ—କି ନିରେଳାରେ ନିଜକଥା ଟିକିଏ ଭବିବାକୁ ଦେଉନାହଁ ! ଦୁର୍ଭାଗ୍ୟ ଆଉ କାହାକୁ କହନ୍ତି ? ଯାଅ-ପଳାଅ ଏଠୁ ! ବୁଦ୍ଧିହୀନ ଅପଦାର୍ଥ ଦୁଇଟା ମୋ କପାଳକୁ ଯାହା ଜୁଟିଛ । ଗଣେଶ କାର୍ତ୍ତିକଙ୍କ ଭଳି ପୁଅଙ୍କୁ ଛାଡ଼ିଲି-ମାତ୍ର ତୁମଭଳି ଦୁଇଟା ହତଭାଗ୍ୟ ମୋତେ କି ମାୟାପାଶରେ ବାନ୍ଧି ରଖିଛ ଯେ ତୁମ ହାତରୁ ନିଷ୍କୃତି ପାଉନାହିଁ ! ଯାଅ-ବାହାରି ଯାଅ ଏଠୁ ।

ନନ୍ଦୀ ଚୁପ୍ ହୋଇ ତଳକୁ ମୁହଁପୋତି ବସି ରହିଲେ । ମାତ୍ର ଭୃଙ୍ଗୀ ଉତ୍ତ୍ୟକ୍ତ ଚିତ୍କାର କରି କହିଲେ—ପ୍ରଭୁ ! ମୁଁ ଏହି ମୂର୍ଖ କଳିଆଟା ସଙ୍ଗେ ଆଉ ଦଣ୍ଡେ ବି ରହି ପାରିବି ନାହିଁ ।

ମହାଦେବ ନିର୍ବିକାର ଭବେ ଉତ୍ତର ଦେଲେ-ବେଶ୍ ତ ! ମୁଁ ତ ସେହି କଥା କହୁଛି ! ତୁ ନନ୍ଦୀକୁ ଛାଡ଼ି ଚାଲି ଯା'—ଏବଂ ନନ୍ଦୀ ମଧ୍ୟ ତୋତେଛାଡ଼ି ଚାଲିଯାଉ ।

ଏବଂ ଏହି ଭବେ ତୁମେ ଦୁହେଁ ମୋତେ ଛାଡ଼ି ଗ୍ଲଲିଗଲେ, ମୁଁ ଏକୁଟିଆ ବୃଷଭଙ୍କୁ ଧରି ଶାନ୍ତି ଓ ଆନନ୍ଦରେ ନିରେଛା ଜୀବନ କାଟିପାରିବି ।

ଏହି ସମୟରେ ନନ୍ଦୀ ହଠାତ୍ ଉଠିଗଲେ ଓ ଗୁମ୍ଫା ଭିତରୁ ଗୋଟିଏ ମାଟି ପାତ୍ରରେ ରକ୍ଷିତ କିଛି ଲହୁଣୀ ଧରି ଆସି ପହୁଞ୍ଚିଲେ ଏବଂ ଶିବଙ୍କ ମସ୍ତକରେ ଛାଆଁକୁଛାଆଁ ମୃଦମୃଦୁ ଘର୍ଷଣ କଲେ । ଲହୁଣୀ ଘର୍ଷଣ ହୁଅନ୍ତେ ଶିବଙ୍କୁ ଖୁବ୍ ଆରାମ ଲଗିଲା ଏବଂ ସେ ସାମାନ୍ୟ ଭବେ ଯୋଗନିଦ୍ରାରେ ଢୁଲଇ ପଡ଼ିଲେ । ଇତି ମଧ୍ୟରେ ଭୃଙ୍ଗୀ ଗୋଟିଏ ଚିଲମରେ ସୁଦଳିତ ଗଞ୍ଜାଇ କଳି ସଜାଇ ସେଥିରେ ଅଗ୍ନି ସଯୋଗ ଲଗି ଉଦ୍ୟମ କରୁଥିଲେ । ଏହି ଅବସରରେ କିଛି ମୂହୁର୍ତ୍ତପରେ ଶିବ ଯୋଗତନ୍ଦ୍ରାରୁ ଜାଗ୍ରତ ହୋଇ ପୂର୍ବ ପରିସ୍ଥିତି ଭୁଲିଯାଇ ପୁନଶ୍ଚ ବାତ୍ସଲ୍ୟ ସ୍ନିଗ୍ଧ ଗଳାରେ ଆରମ୍ଭ କଲେ—

ବୁଝିଲ ବତ୍ସମାନେ ! ସତୀଙ୍କ ଦେହତ୍ୟାଗ ପରେ ସ୍ଥିରକରିଥିଲି-ଆଉ ଦ୍ୱିତୀୟ ଦାର ପରିଗ୍ରହ କରିବ ନାହିଁ । ହିମାଳୟରେ ବସି ଅହୋରାତ୍ର ନିର୍ବିକଳ୍ପ ସମାଧିରେ ମଗ୍ନ ରହିବି । ତାହାହିଁ କଲି । ଯୁଗଯୁଗ କଳ୍ପ କଳ୍ପ ବିତିଗଲ ସେହିପରି ନିର୍ବିକଳ୍ପ ସମାଧିରେ । ମୁଁ ହୋଇଗଲି ସ୍ଥାଣୁ । ଏଣେ ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ କଣସବୁ ଘଟୁଥିଲ ସେ କଥାରେ ମୋର ବିନ୍ଦୁମାତ୍ର ଆଗ୍ରହ ନଥିଲ । କିନ୍ତୁ ବିଷ୍ଣୁଙ୍କର ମାୟା ଅପ୍ରତିରୋଧ୍ୟ-ଅପ୍ରତିହତ । ଆଛା, ତୁମ୍ଭେମାନେ କୁହଦେଖି ! ତାରକାସୁର ସଙ୍ଗେ ଯୁଦ୍ଧ କରିବାରେ ମୋର ବା କଣ ସ୍ୱାର୍ଥ ଥିଲ ? ତିନି ପୁରକୁ ଆପଣା ପ୍ରତାପରେ ଥରହର କଲ ତାରକା । ଇନ୍ଦ୍ର ବାରମ୍ବାର ସ୍ୱର୍ଗଚ୍ୟୁତ ହେଲେ । ବିଷ୍ଣୁଙ୍କ ପରାମର୍ଶରେ ଦେବଗଣ ସ୍ଥିରକଲେ- ହିମାଦ୍ରି ଦୁହିତା ପାର୍ବତୀଙ୍କ ସହିତ ମୋତେ ଦ୍ୱିତୀୟବାର ବିବାହ କରାଇ ଦେବେ । ମୋର ପୁତ୍ର ଜନ୍ମହେଲେ ସେହି ବଧ କରିବ ତ୍ରିପୁରାସୁରକୁ । ଏଣେ ପାର୍ବତୀ ମଧ୍ୟ ମୋତେ ପତିରୂପେ ପାଇବାଲଗି କଠିନ ତପସ୍ୟାରେ ରତ ରହିଲେ । ବିଷ୍ଣୁ ତାଙ୍କୁ ସେ ବର ଆନନ୍ଦରେ ପ୍ରଦାନ କଲେ । ମୋତେ ବିଚଳିତ କରି ମୋର ସମାଧି ଭଗ୍ନ ଲଗି କାମଦେବ ପୁଷ୍ପଧନୁରେ ପାଞ୍ଚଟି ପୁଷ୍ପଶର ଯୋଖି ଏକା ବେଳକେ ମୋ ଶରୀରରେ ବିଦ୍ଧକଲେ ଏବଂ କନ୍ଦର୍ପରମଣୀ ରତି ମୋ ସମ୍ମୁଖରେ ନାନାଦି କାମୋଦ୍ଦୀପକ ଅବଲୟ

ପ୍ରଦର୍ଶନ କଲେ । ମୁଁ କ୍ରୁଦ୍ଧ ହୋଇ ଦିନେ ମୋର ଲଲାଟସମ୍ଭୂତ ତୃତୀୟ ଚକ୍ଷୁର ଅଗ୍ନିରେ କାମଦେବକୁ ଭସ୍ମକରି ଦେଲି । କିନ୍ତୁ ନାଃ ! ମୋତେ ହିଁ ଶେଷରେ ପରାଜୟ ସ୍ୱୀକାର କରିବାକୁ ପଡ଼ିଲା । ବିଷ୍ଣୁଙ୍କର ପ୍ରରୋଚନାରେ ଦେବତାମାନେ କାତର କଣ୍ଠରେ ମୋତେ ପ୍ରାର୍ଥନା କଲେ—ଆଶୁତୋଷ ! ଆପଣ ହିମାଳୟ ଦୁହିତା ଅପର୍ଣ୍ଣାଙ୍କୁ ଗ୍ରହଣ କରନ୍ତୁ । ଏବଂ ଦେବତାମାନଙ୍କ ସହିତ ସମସ୍ତ ବ୍ରହ୍ମାଣ୍ଡକୁ ସେହି ଦୁଷ୍ଟ ତାରକାସୁରର ପ୍ରକୋପରୁ ରକ୍ଷାକରନ୍ତୁ । ନତୁବା, ଆପଣଙ୍କ ସମ୍ମୁଖରେ ଆମ୍ଭେମାନେ ସମସ୍ତେ ପାନଭୋଜନ ପରିତ୍ୟାଗ କରି ଅଚିରେ ଦେବଲୀଳା ସମ୍ବରଣ କରିବୁ । ଆରେ ବତ୍ସମାନେ ! ଏକଥା ଶୁଣି ମୋର ହୃଦୟ ତରଳିତ ହୋଇଗଲା । ଏଣେ ପାର୍ବତୀଙ୍କର କଠୋର ତପସ୍ୟାରେ ମୋର ସମସ୍ତ ଧୈର୍ଯ୍ୟ ଲୋପ ପାଇ ଆସୁଥିଲା । ମୁଁ ସମ୍ମତ ହୋଇଗଲି । ବିବାହ ହେଲା । ମାତ୍ର ଦ୍ୱିତୀୟ ବିବାହ ପରଠାରୁ ମୋର ଦୁର୍ଭାଗ୍ୟ ଓ ଅଶାନ୍ତି ଆହୁରି ବଢ଼ିଗଲା ! କିଛି ଦିନ ଭିତରେ ଗଣେଶ ଓ କାର୍ତ୍ତିକ ଜନ୍ମ ହୋଇଗଲେ । ମୁଁ ସଂସାର ଜଞ୍ଜାଳ ଭିତରେ ଘାଣ୍ଟି ହୋଇ-ଗଲି ! ଆଉ ଏଣେ ମଧ୍ୟ ତୁମର ମାଆ ପାର୍ବତୀ, ବିବାହ ପୂର୍ବରୁ ଓ ବିବାହର କିଛି ବର୍ଷ ପର ପର୍ଯ୍ୟନ୍ତ ଯେପରି ସରଳ, ନିରୀହ ଆଉ କୋମଳ ମଧୁର ହୃଦୟବତ୍ତା ପ୍ରଦର୍ଶନ କରୁଥିଲେ, କ୍ରମଶଃ ତାଙ୍କର ସେ ପ୍ରକୃତି ବଦଳିଗଲା—ସେ କ୍ରମଶଃ ଚଣ୍ଡୀ ହୋଇ ଉଠିଲେ । ମୁଁ ତ ଯୋଗୀଲୋକ । ଧ୍ୟାନ ସମାଧିରେ ରତ ଥାଏ । କିନ୍ତୁ ପାର୍ବତୀ ଚାହିଁଲେ ମୋତେ ସଂସାର ଜଞ୍ଜାଳରେ ନାକ ପର୍ଯ୍ୟନ୍ତ ବୁଡ଼ାଇ ରଖିବେ । ମାତ୍ର ମୋ ଦ୍ୱାରା ତ ତାହା ହୋଇ ପାରେନା ! ଫଳରେ ଦୁହିଁଙ୍କ ଭିତରେ ସର୍ବଦା କଳିକଜିଆ ବକାବକି ଚାଲିଥାଏ । ଏଣେ ପାର୍ବତୀ ମଧ୍ୟ କ୍ରମେ ଏତେ ଚଣ୍ଡୀ ଆଉ ଉଦଣ୍ଡୀ ହୋଇ ଉଠିଲେ ଯେ ମୋ ପକ୍ଷରେ ଆଉ ତାଙ୍କର ବାକ୍ୟବାଣ ସହ୍ୟ କରିବା ସମ୍ଭବ ହେଲା ନାହିଁ । ଛାଡ଼-ଛାଡ଼, କଣ ବୋଲି କଣ ମୁଁ ତୁମମାନଙ୍କ ଆଗରେ ବକି ଯାଉଛି ! ମୋର ହୋସ୍ ରହୁନାହିଁ—ସୁର୍ ରହୁନାହିଁ । ପାର୍ବତୀଙ୍କୁ ମିଛରେ ଦୋଷ ଦେଇ ଲାଭ ନାହିଁ । ତାଙ୍କର ଯାହା ପ୍ରକୃତି ସେ ତାହା କରୁଛନ୍ତି ।

କିନ୍ତୁ ଏସବୁ ନାଟର ଅସଲ ଗୋବର୍ଦ୍ଧନ ହେଲେ ସେହି ବିଷ୍ଣୁ । ତା'ନହେଲେ ମୁଁ କଣ ଏମିତି ଗୋଟେ ସଂସାର ଭିତରେ ପଶି, ହନ୍ତସନ୍ତ ହେଉଥାନ୍ତି ?

ଦ୍ୱିତୀୟ ପକ୍ଷ ସ୍ତ୍ରୀ ହାତରେ ଏତେ ନିର୍ଯ୍ୟାତନା ଭୋଗ କରୁଥାନ୍ତି ? ଏମିତି ଗୋଟେ ବିପରୀତମୁଖୀ ଗୋଳମାଳିଆ ପରିବାର ମୋ ପାଇଁ ବିଷ୍ଣୁ ଖୋଜି ଦେଲେ ଯେ, ତାକୁ ଛାଡ଼ି ଆସି ଗୋଟେ ଅପନ୍ତରା ମଶାଣୀରେ ଅକର୍ମାଙ୍କ ଭଳି ଘୁରିବୁଲୁଛି ! ସେଠି ସବୁବେଳେ ଚାଲିଛି ଘର ଭିତରେ କେଁ କଟର, ଗୋଡ଼ିଆଗୋଡ଼ି; ଛକାଛକି, ନାଚକୁଦ, ଝମ୍ପାଝଂପି, ରମ୍ପାରମ୍ପି, କାମୁଡ଼ାକାମୁଡ଼ି । ତୁମ ମାଆ ପାର୍ବତୀଙ୍କ କଥା ତ ତୁମେ ଜାଣ—ତାଙ୍କ ମୁଣ୍ଡ ଘଡ଼ିକେ ଥଣ୍ଡା ଓ ଘଡ଼ିକେ ଗରମ । କେତେବେଳେ ଯଦି ମୁଣ୍ଡକୁ ପଉ ଉଠିଗଲା, ତାହେଲେ ଲଙ୍ଗଳା ମୁକୁଳା ହୋଇ କେଶ ମୁକୁଳାଇ, ହାତେ ଲମ୍ବର ଜିଭ କାଢ଼ି, ଟହଟହ ହସି, ମଣିଷ ମୁଣ୍ଡର ମାଳ ଲମ୍ବାଇ, ଖଡ୍‌ଗଖର୍ପର ଧରି ପରସ୍ତେ ନାଚିଯିବେ ଆଉ ସମସ୍ତଙ୍କୁ ଝାଡ଼ିଦେବେ । ମୋ ବାହାନ ବୃଷଭକୁ ତେଣେ ସେ ବି ବାହାନଟିଏ ବାଛି ବାଛି କରିଛନ୍ତି ସିଂହ । ସେ ହିଂସ୍ରକ ସିଂହ ପୁଣି ସର୍ବଦା ମୋ ବୃଷଭର ତଣ୍ଟି କଣାକରି ତା' ରକ୍ତ ପିଇବ ବୋଲି ତା' ପଛରେ ସର୍ବଦା ଧାଇଁଥିବ । ଘର ଭିତରେ ଲାଗିଥିବ ଅଷ୍ଟପ୍ରହରୀ ସିଂହ ବୃଷଭଙ୍କ ଲଢ଼େଇ । ଷଣ୍ଢ ଗର୍ଜନକୁ ସିଂହ ହେଣ୍ଟାଳ । ଘଡ଼ିଏ ସ୍ଥିର ମନରେ ଧ୍ୟାନ ସମାଧି କରିବାକୁ ଯାଗା ନାହିଁ । ଏଣେ ବଡ଼ପୁଅ ଗଣେଶର ବାହାନ ମୂଷା ମୋ ଜଟାଭିତରେ ପଶି କୁଟୁରୁ କୁଟୁରୁ କରି କାଟି ଲାଗିଥିବ । ସେ ମୂଷାକୁ ପୁଣି ଗିଳିବେ ବୋଲି, ମୋ ଦେହରୁ ନାଗମାନେ ତାକୁ ଗୋଡ଼େଇଥିବେ । ମୂଷା କିଲିକିଲି ହୋଇ ଦଉଡ଼ୁ ଥିବ । ତେଣେ ସାନପୁଅ କାର୍ତ୍ତିକର ପ୍ରିୟ ବାହାନ ହେଲା ମୟୂର । ସେ ହରଘଡ଼ି ମୋ ଚାରିପଟେ ଆସି ଫଡ଼ଫଡ଼ ହେଉଥିବ—କେମିତି ମୋ ଦେହରୁ ଗୋଟିଏ ନାଗଟିଏ ଖୁମ୍ପି ନେଇ ଜଳଖିଆ କରିବ, ଏହି ହେଲା ତାର ଲକ୍ଷ୍ୟ । ଗଣେଶ ଆଉ କାର୍ତ୍ତିକଙ୍କ କଥା ବା କଣ କହିବି ? ସେମାନେ ଘଇକି ଭଗାରୀ କେଜାଣି ? ଥିବ ଥିବ, ଫାଇଁ କିନା ନିଆଁ ଜଳି ଉଠିଲା ପରି ଦୁହିଁଙ୍କ ଭିତରେ କଜିଆ ଲାଗିଯିବ । କାର୍ତ୍ତିକଟାର କଣ କମ୍ ଢମ ? ସେ ଗଣେଶକୁ ଚିଗୁଲଉ ଥିବ—ହାତୀମୁଣ୍ଡିଆ, ଲମ୍ବାନାକା, ଥନ୍ତଲପେଟିଆ, ନାଦୁଲୁପାଦୁଲୁ ଚାଲିଲା । ଗଣେଶ ମଧ୍ୟ କାର୍ତ୍ତିକକୁ ଗାଳି ଦେଉଥିବ—ମୂର୍ଖ, ନିର୍ବୁଦ୍ଧିଆ ଦେଖାସୁନ୍ଦର ଅପଦାର୍ଥ......। ଛିଃ ଛିଃ ଛିଃ—ଏ ପରିସ୍ଥିତିରେ କେହି ଏ ସଂସାରକୁ ଧରି ରହିପାରେ ? ଯାକୁଇ କହନ୍ତି ସଂସାର ?

ଶିବ ସହାନୁଭୂତି ଆଶାରେ ପୁଣିଥରେ ନନ୍ଦୀ ଭୃଙ୍ଗୀଙ୍କ ଆଡ଼େ ଚାହିଁଲେ । ଭୃଙ୍ଗୀ ପୁଣିଥରେ ଘୁମାଇ ପଡ଼ିଥିଲେ ଓ ତାଙ୍କର ମୁକ୍ତ ପାଟି ଭିତରୁ ହୃଦୟବିଦାରକ ଘୁଙ୍ଗୁଡ଼ି ଶବ୍ଦ ବାହାରୁଥିଲା । ନନ୍ଦୀ ତାଙ୍କୁ ଗୋଟିଏ ଧକ୍କା ମାରି ଆଉ ଗୋଟିଏ ଧକ୍କା ମାରିବାକୁ ହାତ ଉଠାଉଛନ୍ତି—ଏମନ୍ତ ସମୟରେ ଆକାଶର ଅନତି ଉଚ୍ଚସ୍ତରରୁ ଶୁଣାଗଲା ଗଭୀର ମଧୁର ସ୍ୱରରେ "ନାରାୟଣ, ନାରାୟଣ ! ହରି ଓଁ ତତ୍‌ସତ୍ । ଜୟ ପ୍ରଭୁ ପାର୍ବତୀପତି ହରହର ମହାଦେବ !

ଶିବ ବୁଝିଲେ ଯେ ତ୍ରିପୁରାରୀ ଦେବର୍ଷି ନାରଦ ନିଶ୍ଚୟ ତାଙ୍କୁ ସନ୍ଧାନିବାକୁ ଆସୁଛନ୍ତି । ତାଙ୍କୁ ସ୍ୱାଗତ କରିବା ଲାଗି ଶିବ ପ୍ରସ୍ତୁତ ହୋଇଗଲେ । ଇଙ୍ଗିତ ପାଇବାମାତ୍ରେ ନନ୍ଦୀ ଓ ଭୃଙ୍ଗୀ ଗୋଟିଏ ସମତଳ ପ୍ରସ୍ତର ଟେକି ଆଣି ତାଙ୍କ ସନ୍ନିକଟରେ ରଖିଲେ । ନାରଦଙ୍କୁ ଦେଖିବା ମାତ୍ରେ ଶିବ ତାଙ୍କୁ ଆଲିଙ୍ଗନ କରି ପାଛୋଟି ଆଣି ସେହି ପ୍ରସ୍ତର ଉପରେ ବସାଇଦେଲେ । ନାରଦ ମହାଦେବଙ୍କ ଲାଗି କିଛି ପକ୍ୱବେଲ, କିଛି ବେଲପତ୍ର ଓ ପଞ୍ଚପାଖୁଡ଼ା ବିଶିଷ୍ଟ ନୀଳବର୍ଣ୍ଣର ଦୁଦୁରାଫୁଲର ତୋଡ଼ାଟିଏ ଆଣିଥିଲେ ଏବଂ ବିନ୍ଧ୍ୟାଚଳରୁ କିଛି ସବୁଜ ସତେଜ ଗଞ୍ଜାଇ କଳିକା ମଧ୍ୟ ଆଣିଥିଲେ । ଶିବ ଦୁଦୁରାଫୁଲର ତୋଡ଼ାଟି ବାରମ୍ବାର ଆନନ୍ଦରେ ଆଘ୍ରାଣ କଲେ ଏବଂ ସେଇଟିକୁ ଜଟାଭିତରେ ଖୋଷିଦେଲେ । ଆଉ ଦୁଇଟି ଦୁଦୁରାଫୁଲ ନିଜର ବିଶାଳ କର୍ଣ୍ଣସନ୍ଧିରେ ଖୋଷି ଦେଲେ । ଅବଶିଷ୍ଟ ଉପହାର ଦ୍ରବ୍ୟତକ ନନ୍ଦୀ ଓ ଭୃଙ୍ଗୀ ଗୁମ୍ଫା ଭିତରକୁ ନେଇଗଲେ । ନନ୍ଦୀ ଭୃଙ୍ଗୀ ସେଠାରୁ ନିଷ୍କ୍ରାନ୍ତ ହୋଇଯିବା ପରେ ନାରଦ ଅତ୍ୟନ୍ତ ଶ୍ରଦ୍ଧା ଭକ୍ତିରେ ବେଲପତ୍ରତକ ଶିବଙ୍କ ପାଦ ଉପରେ ରଖି ଶିବଙ୍କର ଗୋଟିଏ ସଂକ୍ଷିପ୍ତ ସ୍ତୁତିଗାନ କରି ସ୍ଥିର ହୋଇ ବସନ୍ତେ—ମହାଦେବ ତାଙ୍କ କାନ୍ଧ ଉପରେ ଖୁବ୍ ସ୍ନେହରେ ହାତରଖି ଅତ୍ୟନ୍ତ ମମତାପୂର୍ଣ୍ଣ ବାକ୍ୟ କହିଲେ—ନାରଦ ! ମୋର ଦୂରବସ୍ଥା ଦେଖୁଛ ତ ? ଶେଷରେ କୈଳାସରେ ପରିବାରବର୍ଗଙ୍କୁ ପରିତ୍ୟାଗ କରି ମତେ ଏହି ବ୍ରାତ୍ୟଦେଶର ଅପନ୍ତରା ମଶାଣୀରେ ନିରାଶ ହୋଇ ବୁଲିବାକୁ ପଡ଼ିଲା ।

ନାରଦ ଦୁଇଥର ନାରାୟଣ ଶବ୍ଦ ଉଚ୍ଚାରଣ କରିସାରି କହିଲେ—ନୀଳକଣ୍ଠ ! ଆପଣ ଯାହା କହନ୍ତୁ ପଛେ, ଆପଣଙ୍କୁ ଦେଖିଲେ ମନେ ହେଉଛି, ଆପଣ

ଖୁବ୍ ସୁଖ ଶାନ୍ତିରେ ଅଛନ୍ତି । ବୈକୁଣ୍ଠରେ ଦେଖି ଆସିଲି–ବିଷ୍ଣୁଦେବ ମହାହନ୍ତସନ୍ତରେ କାଳାତିପାତ କରୁଛନ୍ତି । ମୋର ବିଶ୍ୱାସ, ଖୁବ୍‌ଶୀଘ୍ର ସେଠାରେ କ୍ଷୀରସମୁଦ୍ରକୁ ଫେରିଯାଇ ସେଠି ଅନନ୍ତ ଶୟନରେ ଯୋଗନିଦ୍ରା ଯିବେ ନତୁବା ପୃଥିବୀକୁ ଫେରିଯାଇ କିଛି ଗୋଟାଏ ଅବତାର ଫବତାର ସାଜି କିଛିକାଳ ମାନବଲୀଳାରେ ମାତିବେ ଓ କିଛି ଗୋଟାଏ କାମ ଚଳିଗଲା –ଭଳିଆ ଧର୍ମଫର୍ମ–ସଂସ୍ଥାପନ କରି, ତାଙ୍କୁ ଅମାନ୍ୟ କରୁଥିବା ବଳଶାଳୀ କରିତ୍‌କର୍ମାଗୁଡ଼ାଙ୍କୁ ବିନାଶକରି ଏବଂ ତାଙ୍କୁ ତୋଷାମଦ କରୁଥିବା ନିଷ୍କର୍ମା ପରଗଂପୁଷ୍ଟ ସାଧୁମାନଙ୍କୁ ଢେର ଦିନଯାଏ କ୍ଷୀରିପୁରୀ, ଗବିଡ଼ି ଛେନାପୋଡ଼ାଦି ଖୁଆଇବେ । ଏବଂ ଶେଷ ପର୍ଯ୍ୟନ୍ତ "ପୃଥିବୀ ଯାହାଥିଲା, ସେଇଆ ଅଛି" ଦେଖି ବିରକ୍ତ ବିଷର୍ଣ୍ଣ ହୋଇ, ଆପଣାର ସ୍ୱୟଂବର୍ଦ୍ଧିତ ଦର୍ପିତ ନରବଂଶକୁ ଗୋଟି ଗୋଟି କରି ନିପାତ କରିସାରି, କେହିଜଣେ ଶବରଫବର ବାଣରେ ଆହତ ହୋଇ କୋଉ ଅପନ୍ତରା ଗଛ ମୂଳେ ଦେହତ୍ୟାଗ କରି ପୁଣିଥରେ ବୈକୁଣ୍ଠକୁ ଫେରିବେ ଏବଂ ପୁନଶ୍ଚ ପୂର୍ବପରି ହନ୍ତସନ୍ତ ହେବେ ।

ମହାଦେବ ଏତଦ୍‌ଶ୍ରବଣେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ–କେମନ୍ତ ? କଣ ତୁମେ କହୁଛ ନାରଦ ? କଣ ସେ ଖବର ଆମକୁ ଟିକେ ବିସ୍ତାର କରି କୁହ । ଆମେତ ବରଂ ଭାବୁଛୁ–ବିଷ୍ଣୁ ମହାକରିତ୍‌କର୍ମା ଇଚ୍ଛାମୟ ପୁରୁଷ । ସେ ଯେତେବେଳେ ଯାହା ଇଚ୍ଛାକରିବେ–ତା ହେବ । ନିଶ୍ଚେତ ସେଥିପାଇଁ ସବୁତକ ଭଲଭଲ ଦ୍ରବ୍ୟ ସେ ନିଜ ପାଇଁ ବାଛି ନେଇଛନ୍ତି । ସେତ ଆଉ ଆମ ତୁମ ଭଳି ଯୋଗୀ ଭିକାରୀ ନୁହନ୍ତି ? ତାଙ୍କ ଉପରେ କିଏ ଅଛି ଯେ, ତାଙ୍କ ଇଚ୍ଛା ବିରୋଧରେ ତାଙ୍କ ଉପରେ କିଛି ଲଦି ଦେବ ? ନିଜ ଇଚ୍ଛାରେ ସବୁ କିଛି ନିଜଲାଗି ବାଛି ନେଇ ପାରିବାର କ୍ଷମତା ଯାହାର ଅଛି, ତାର ପୁଣି ଦୁଃଖ କଣ ? ବିଷ୍ଣୁ ଆମ ତୁମ ଭଳି ହନ୍ତସନ୍ତ ହେବେ କାହିଁକି ?

ନାରଦ କହିଲେ–ପ୍ରଭୁ ଭୋଳାନାଥ ! ସେ କଥା କଣ କହିବି ? ବିଷ୍ଣୁଙ୍କର ହନ୍ତସନ୍ତ ଅବସ୍ଥା ବର୍ଣ୍ଣନା କଲେ ପାଷାଣ ମଧ୍ୟ ତରଳିଯିବ । ଆଜ୍ଞା ! ପ୍ରଥମେ ତାଙ୍କ ପରିବାର କଥା ପଡ଼ିଯାଉ । ଲକ୍ଷ୍ମୀ ବୋଲି ତାଙ୍କର ଯୋଉ ପତ୍ନୀ ଖଣ୍ଡକ ଅଛନ୍ତି, ସମୁଦ୍ର ମନ୍ଥନରୁ ବହିର୍ଗତ ହୋଇଥିଲେ, ବିଷ୍ଣୁ

ସ୍ୱେଚ୍ଛାରେ ତାଙ୍କୁ ପତ୍ନୀରୂପେ ବରଣ କରିଥିଲେ–ବର୍ତ୍ତମାନ ପ୍ରଭୁ ତା'ଭାବ ପାଉଛନ୍ତି !

ମହାଦେବଙ୍କ ମନରେ ଯୁଗପତ୍ କୌତୁକ ଓ କୌତୂହଳ ଭାବ ଜାଗି ଉଠିଲା । ସେ ହସି ହସି ଆପଣା ପେଟ ଉପରୁ ବାରମ୍ବାର ହୁଗୁଳି ଖସି ପଡ଼ୁଥିବା ବ୍ୟାଘ୍ରଛାଲଟିକୁ ତାଙ୍କର ଗଭୀର ନାଭି ଉପରକୁ ଉଠାଇ ନେଇ ହାତରେ ଜାବୁଡ଼ି ଧରି ପଚାରିଲେ–କେମନ୍ତ ? କଣ ସେ ଭାବ ? ନାରଦ ! ଶୀଘ୍ର ମୋ ଆଗରେ ପ୍ରକାଶ କର ।

ନାରଦ କହିଲେ–ହେ ପାର୍ବତୀପତି ! କଣ ସେ କଥା କହିବି ? ସେ ପୁଣି ହେଲେ ସ୍ୱୟଂ ଜଗନ୍ମାତା କମଳିନୀ । ଆଜ୍ଞା ! ଦଣ୍ଡେ ଭଲ ସେ ବିଷ୍ଣୁଙ୍କ ପାଖରେ ରହନ୍ତି ? ବାରବୁଲୀ ସ୍ୱଭାବ । ଆଜି ଯା ଘରେ ତ କାଲି ତା'ଘରେ । ଆଜି ଯା ସାଙ୍ଗେ ଘୋଡାରେ ବସି ଚାଲିଲେ ତ, କାଲି ତା' ସଙ୍ଗେ ହାତୀରେ ବସି କୁଆଡ଼େ ବାହାରି ଗଲେ । ଆଜି ବ୍ରାହ୍ମଣ ଘରେ ବସି କ୍ଷୀରି ଖେଚେଡ଼ୀ ଖାଉଛନ୍ତି ତ, କାଲି ଚଣ୍ଡାଳ ଘରେ ବସି ମାଟି ପାତ୍ରରେ ଜାଉ ପଇତି ହାପୁଡ଼ୁଥିବେ । ଆଜି ରଜାଘରେ ତ କାଲି ମୂଲିଆ ଘରେ । ସକାଳେ ଠାଏ ତ ସଞ୍ଜରେ ଠାଏ । କିଛି ଠିକ୍ ଠିକଣା ନଥାଏ । ଅତି ଚଞ୍ଚଳ ଖରଖରୀ ପ୍ରକୃତି । ଏପରି ନିରବଧି-ସ୍ୱଭାବ–ଗତିବିଧି ଦେଖି ବିଷ୍ଣୁ ଥରେ ତାଙ୍କୁ "ଚଞ୍ଚଳା ଚପଳା" ବୋଲି ସାମାନ୍ୟ ମୃଦୁ ଭର୍ତ୍ସନା କରିଦେଲେ । ବାସ୍ ସେତିକିରେ ମନ ବିଗିଡ଼ିଗଲା । ସେଇ ଦିନଠୁ ବୈକୁଣ୍ଠ ଛାଡ଼ି କାହାକୁ କିଛି ନକହି କୁଆଡ଼େ ପଳାଇଲେ ଯେ–ଆଜ୍ଞା ; ତିନିତିନିଟା କଳ୍ପ ବିତିଗଲା– ଏଣେ ପ୍ରଭୁ ସେତେଦିନ କାଳ ଲକ୍ଷ୍ମୀଛଡ଼ା ହୋଇ ମହା କଦର୍ଥନା ଭୋଗିଲେ । ହେଲେ, ତାଙ୍କର ଆଉ ଦେଖାଦର୍ଶନ ମିଳିଲା ନାହିଁ ।

ମହାଦେବଙ୍କ କାନରୁ ନୀଳ ଦୁଦୁରା ଫୁଲଟି ଖସି ପଡ଼ନ୍ତେ ସେ ତାହାକୁ ତଳୁ ଗୋଟାଇ ପୁଣିଥରେ କାନରେ ଖୋଷିଦେଲେ । ତା'ପରେ ବିସ୍ମିତ ଗଳାରେ କହିଲେ–ହଇଓ ନାରଦ ! ତୁମକଥା ବଡ଼ ବିଚିତ୍ର ଶୁଭୁଛି । ତୁମେ ଏପରି କହୁଛ–ଅଥଚ, ଆମେତ ପୁଣି ଦୋକାନ ବଜାର, ମନ୍ଦିର, ଧର୍ମଶାଳା ଚାରିଆଡ଼େ ଯୋଉସବୁ ଛବି ମର ଯାଇଛି, ସେଥିରେ ଦେଖୁଛୁ ଯେ ବିଷ୍ଣୁ

ମହାଆଗମରେ ରତ୍ନ ପଲଙ୍କରେ ଶୋଇ ଘୁଙ୍ଗୁଡ଼ି ମାରୁଛନ୍ତି, ଓ ଲକ୍ଷ୍ମୀଦେବୀ ରାତିସାରା ତାଙ୍କ ପାଦ ମଞ୍ଜାଳୁଛନ୍ତି ! ସତକଥା କହୁଛି ନାରଦ ! ଘରକଥା ପଦାରେ ପକାଇବା ଉଚିତ ନୁହେଁ । ତେବେ ଦ୍ୱିତୀୟ ବାର ବିଷ୍ଣୁଙ୍କ କଥାରେ ପଡ଼ି ପାର୍ବତୀଙ୍କୁ ବାହାହେଲା ଦିନୁଁ, ହିମାଳୟ ନନ୍ଦିନୀ କେବେ ବି ଥରେ ହେଲେ ସୁଦ୍ଧା ମୋ ପାଦରେ ହାତ ମାରିଥିବା କଥା ମୋର ମନେ ପଡ଼ୁନାହିଁ ।

ନାରଦ ହସି ହସି କହିଲେ—ଆଶୁତୋଷ ! ଆପଣତ ସବୁବେଳେ ଶଶୁରଘରେ ଘରଜୋଇଁଆ ହୋଇ ରହିଲେ । ଝିଅମାନେ ଏ ଅବସ୍ଥାରେ ବାପଘରେ, ଟିକିଏ ଉପରମୁହାଁ ହୋଇଥାନ୍ତି । ତା'ଛଡ଼ା, ବିଷ୍ଣୁଙ୍କର ପାଦପଦ୍ମକୁ ଲକ୍ଷ୍ମୀ-ଦେବୀ ଅନବରତ ମଞ୍ଜାଳୁଥିବାର ଯୋଉ ଛବି ଆପଣ ଚାରିଆଡ଼େ ବିଜ୍ଞାପିତ ହେଉଥିବାର ଦେଖୁଛନ୍ତି—ସେସବୁ ହେଲା ବୈକୁଣ୍ଠପୁର ଲୋକସମ୍ପର୍କ ପ୍ରଚାର ବିଭାଗର ଅଫିସରମାନଙ୍କର ଗୋଟିଏ ଅତିରିକ୍ତ ପ୍ରଚାର । ସେଭଳି ଘଟଣା ମାତ୍ର ଥରେ ହିଁ ଘଟିଥିଲା ଏବଂ ପ୍ରଚାର ବିଭାଗବାଲା ସେହି ଗୋଟିଏ ଛବିକୁ ସାନବଡ଼ କରି, ନାନାଦି ରଙ୍ଗବେରଙ୍ଗ କରି, ସର୍ବଦା ଚାରିଆଡ଼େ ବଣ୍ଟନ କରୁଛନ୍ତି ଓ ତଦ୍ୱାରା ଲକ୍ଷ୍ମୀଦେବୀଙ୍କ ଅନୁଗ୍ରହ ଲାଭ କରୁଛନ୍ତି । ବିଷ୍ଣୁଙ୍କ ସଦୃଶ ଲକ୍ଷ୍ମୀ ମଧ୍ୟ ଖୁବ୍ ପ୍ରଚାରଭିମୁଖିନୀ, କଥାଟା ଯେତେ ପ୍ରଚାର ହେଉଛି ସେତେଦୂର କିନ୍ତୁ ସତ ନୁହେଁ । ଶୋଇବା କଥା, ପାଦ ମଞ୍ଜାଳିବା କଥା, ଅବା କାହିଁକି ପଡ଼ିଛି ; ମୁଁ ବହୁବାର ଦେଖିଲିଣି ଯେ ବିଷ୍ଣୁଙ୍କର ସକାଳର ବାଲ୍ୟଧୂପ ମଧ୍ୟ ଦିନେଦିନେ ରାତି ଗୋଟାଏ ଦୁଇଟାରେ ହେଉଛି—ଅଥବା ନ ହେଉଛି ।

ମହାଦେବ ଉତ୍ସୁକ ହୋଇ ପଚାରିଦେଲେ—କାହିଁକି ? କଣ କାରଣ ?

ନାରଦ କହିଲେ—ତାର କାରଣ ହେଲା, ଲକ୍ଷ୍ମୀ ତା' ପୂର୍ବ ରାତିରୁ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଥିବେ ଓ ତତ୍‌ପରଦିନ ଆସି ରାତି ବାରଟା ଗୋଟାକରେ ଘରକୁ ଫେରି ସ୍ନାନ ଶୌଚାଦି ସାରି ଶୋଇ ପଡ଼ିଥିବେ ।

ମହାଦେବ ନାରଦଙ୍କ ମୁହଁରୁ ଏତେକ ଶୁଣି ଗୋଟିଏ ଦୀର୍ଘନିଃଶ୍ୱାସ ଛାଡ଼ିଲେ । ତା' ପରେ ପଚାରିଲେ—ଆଚ୍ଛା ହେଉ ! ଲକ୍ଷ୍ମୀ ନ ହେଲେ ଅବା ଏମିତି ଚଞ୍ଚଳା

ହେଲେ । ସରସ୍ୱତୀଙ୍କ କଥା ଏବେ କଣ ? ଆମର ସିନା ଭାର୍ଯ୍ୟା ଗୋଟିଏ । ମାତ୍ର ତାଙ୍କର ତ ଯୁଗଳଭାର୍ଯ୍ୟା । ପୁଣି ବାଛିବାଛି ସ୍ୱୟଂ ବରଣ କରିଛନ୍ତି !!

ନାରଦ କିଂଚିତ୍ ବିମର୍ଷ ଗଳାରେ କହିଲେ—ଛାଡ଼ନ୍ତୁ ପ୍ରଭୁ ! ତାଙ୍କ କଥା ମଧ୍ୟଆଉ ପକାନ୍ତୁ ନାହିଁ । ଲକ୍ଷ୍ମୀ ଚଂଚଳା ବାରବୁଲୀ ହେଲେ, ସରସ୍ୱତୀ ହେଉଛନ୍ତି ମହା ମୁଖର ଆଉ କର୍ମକୁଣ୍ଠିତା । ନାଟମଣ୍ଡପରେ ଖାଲି ଦିନରାତି ଗାନବାଜଣା, ନାଟତାମସା, ସାହିତ୍ୟସଭା, କବିତାପାଠୋତ୍ସବ ଇତ୍ୟାଦି ଚାଲିଥିବ । ସ୍ୱାମୀ ସ୍ନାନ କଲେ କି ନାହିଁ ; ଭୋଜନ କଲେ କି ନାହିଁ, ଶୟନ କଲେ କି ନାହିଁ, ସେକଥାକୁ ଖିଆଲ ଥାଏ କି ? ଆଉ, ଯଦିବା କେବେ ବିଷ୍ଣୁ କାଳେ ଅକାଳେ ତାଙ୍କର ଗାନତାନ ଚାଲିଥିଲାବେଳେ, ଟିକିଏ ଡାକିଦେଲେ—ସେ ଯେତେ କଅଁଳେଇ କରି ଡାକନ୍ତୁ ପଛେ, ଓଃ ! ବାପରେ ବାପ୍—ନାରାୟଣ ! ନାରାୟଣ ! ହରି ଓଁ ତତ୍‌ସତ୍ । ବୁଝିଲେ ଉମାପତି ସରସ୍ୱତୀଙ୍କ କଣ୍ଠସ୍ୱର ସାରିଗାମାପାଧାନି ସ୍ୱରସପ୍ତକକୁ ଗୋଟିଏ ମୁହୂର୍ତ୍ତରେ ଡେଇଁ ଚାଲିଯାଏ—ଓଃ ! ନାରାୟଣ ! ନାରାୟଣ ! ସେ ଯୋଉ ପାଟି ଆଜ୍ଞା, ପ୍ରଭୁଙ୍କ ପ୍ରତି ଯୋଉ ବ୍ୟଙ୍ଗ ବିଦ୍ରୁପଭରା ଶ୍ଳେଷାତ୍ମକ ଧ୍ୱନିପୂର୍ଣ୍ଣ ବାକ୍ୟବାଣ ! ଆପଣ ହୋଇଥିଲେ, ଦଣ୍ଡେ ବି ସହ୍ୟକରି ପାରନ୍ତେ ନାହିଁ । ଜଟା ଛିଡ଼ାଇ ପକାନ୍ତେ ! ନଇଲେ, ତାଣ୍ଡବନୃତ୍ୟ ଆରମ୍ଭ କରିଦିଅନ୍ତେ ! ବିଷ୍ଣୁଙ୍କର ଭାଗ୍ୟକୁ ଜଟାଫଟା ନାହିଁ—କି ତାଙ୍କୁ ନାଚୁନଚି ମଧ୍ୟ ଆସେ ନାହିଁ । ରକ୍ଷା !

ମହାଦେବ ତାଚ୍ଛଲ୍ୟକରି କହିଲେ—ବିଷ୍ଣୁ ନିଜେ ଜଟା କାହିଁକି ରଖିବେ ? ସେତ ଅନ୍ୟର ଜଟା ଛିଣ୍ଡାଇବାକୁ ଓର ଉଣ୍ଡୁଥିବେ ! ସେବା ନିଜେ ନାଚିବେ କାହିଁକି ? ବ୍ରହ୍ମାଣ୍ଡଯାକର ଭଦ୍ରଲୋକଙ୍କୁ ନିର୍ଲଜପଣରେ ପରସ୍ତେ ନ ନଚାଇଲେ ତାଙ୍କର ପରା ମନ ଶାନ୍ତି ହୁଏ ନାହିଁ ?

ନାରଦ କହିଲେ—ନାଇଁ ଆଜ୍ଞା, ଆପଣ ବିଷ୍ଣୁଙ୍କ ପରିସ୍ଥିତିରେ କେବେ ପଡ଼ିନାହାନ୍ତି । ସରସ୍ୱତୀଙ୍କ ବାକ୍ୟବାଣ କେଡ଼େ ତୀକ୍ଷ୍‌ଣ ଆଉ ମର୍ମଭେଦୀ, ସେ ବ୍ୟଥା ଆପଣ କିପରି ଅନୁଭବ କରିପାରିବେ ?

ମହାଦେବ ନାରଦଙ୍କ ପାଖକୁ ଆଉ ଟିକିଏ ଲଗଆସି, ତାଙ୍କ କାନ୍ଧରେ ହାତ ପକାଇ ପରମ ବିଶ୍ୱାସରେ କହିଲେ—ବାକ୍ୟବାଣ ? ହଇଏ ନାରଦ ! ଆମ ଘର ମଣିଷଟିକୁ ଦେଖଛ ଟିକି ? ତାଙ୍କ ଶ୍ରୀମୁଖ—ନିଃସୃତ କିଳିକିଳାନାଦ ଶୁଣିଛଟିକି ? ଚଣ୍ଡୀ-ଚଣ୍ଡୀ—କାଳୀ କରାଳୀ ନୃମୁଣ୍ଡମାଳୀ ମହାଉଦଣ୍ଡୀ ଉନ୍ମାଦିନୀ ଘର୍ଘା ! ବୁଝିଲ ନାରଦ ! ରାଗିଲେ ଲଙ୍ଗଳା ମୁକୁଳା ହୋଇ ହାତେ ଲମ୍ବର ଜିଭ କାଢି, ସ୍ୱାମୀ ବକ୍ଷ ଉପରେ ଠିଆହୋଇ ଯିବେ । ତୁମେ ତ ଫେର୍ ଥରେ ଅଧେ ସେ ଦୃଶ୍ୟଦୃଶ୍ୟାନ୍ତ ଆପଣା ଆଖିରେ ଦେଖିଥିବ ? ତାଙ୍କର ସେତେବେଳେ ନା ଥାଏ ଲଜ୍ୟା, ନା ଥାଏ ଭୟ ?

ଏହି ସମୟରେ ମହାଦେବଙ୍କ ଶରୀରରେ ବୁଲବୁଲି କରୁଥିବା ଗୋଟିଏ କୃଷ୍ଣନାଗ ହଠାତ୍ ନାରଦଙ୍କ ଝୁଲମୁଣିରେ ପ୍ରବେଶ କରିବାକୁ ଉପକ୍ରମ କରୁଥିବା ଦେଖି ନାରଦ ସାମାନ୍ୟ ବିଚଳିତ ହୋଇ ଉଠି ଠିଆହୋଇ ପଡ଼ିଲେ ଏବଂ ଶିବଙ୍କ ଉଦ୍ଦେଶ୍ୟରେ କହିଲେ—ନାଗଭୂଷଣ ! ସେ ଆଜ୍ଞା, ମୋ ବିଗ୍ରହରେ ବରଂ କୋଟିଗୁଣେ ଭଲ ବୋଲି ଜାଣିବେ । ମା' ପାର୍ବତୀଙ୍କୁ ମୁଁ ଜାଣିନି ? ମଧ୍ୟେ ମଧ୍ୟେ ସେମିତି କେତେ କେତେବେଳେ କାହାମୁଣ୍ଡକୁ ଭଲ ପିତ୍ତ ଉଠି ନଯାଏ ? ଆପଣଙ୍କ ମୁଣ୍ଡକୁ କଣ ସେମିତି ଥରେ ଅଧେ ପିତ୍ତ ଉଠିଯାଏନା ? ସେତେବେଳେ ତ ତ୍ରିଭୁବନରେ ପ୍ରଳୟକାଣ୍ଡ ଘଟିଯାଏ ! ମା, ପାର୍ବତୀ ହେଲେ ତୁଷାରକିରୀଟ ନଗାଧିରାଜ ହିମାଳୟଙ୍କ କନ୍ୟା । ଶୀତଦେଶରେ ଜନ୍ମ । ବେଶୀ ଗ୍ରୀଷ୍ମ ସହ୍ୟକରି ପାରନ୍ତି ନାହିଁ । ଆପଣ ଯେତେବେଳେ ମଧ୍ୟେ ମଧ୍ୟେ ବିନ୍ଧ୍ୟାଚଳ ତଳକୁ ଦାକ୍ଷିଣାତ୍ୟ ଆଡ଼କୁ ଭ୍ରମଣରେ ଯାନ୍ତି—ସେତେବେଳେ ସେସବୁ ଯୋଉ ଗରମ ଜାଗା—ବିଶେଷତଃ ଖରଦିନେ—ଆପଣଙ୍କ ସାଙ୍ଗରେ ତ ସବୁବେଳେ ହଜାରେ କିଚିରିମିଚିରି ଚେଲା ଗମ୍‌ଗମ୍ ଥିବେ । ସେହି ପ୍ରଚଣ୍ଡ ଗରମରେ ଏତେ ଲୋକଙ୍କ ପାଇଁ ଗୋଷ୍ଠେଇବାସ କଲାବେଳେ, ମା' ପାର୍ବତୀଙ୍କ ମଥା ନିଷ୍ଠେ ବେଳେବେଳେ ଗରମ ହୋଇ ଯାଉଥିବ । ସେ ବେଳ କଥା ଅଲଗା । ତା' ନହେଲେ ତ ଆମେ ବରବର ଦେଖିଛୁ—ମା' ଗୌରୀ ଆପଣଙ୍କ ଦେହରେ ସଦାସର୍ବଦା ପ୍ରେମପ୍ରଣୟରେ ଦେହର ଅଙ୍ଗ ଭଳି ଲାଗି ରହିଥିବେ । ମୁହୂର୍ତ୍ତେ ବି ଛାଡ଼ବାଡ଼ ଆମେ କଦବା ଲକ୍ଷ୍ୟକରି ନାହୁଁ । ଆମେ ମୁନିଋଷିମାନେ ସେଇଥି ଲାଗି

ଆପଣଙ୍କୁ ଅର୍ଦ୍ଧନାରୀଶ୍ୱର ବୋଲି କହିଥାଉସିନା ! ଲୋକମୁଖରେ ବି ଆପଣ ଶୁଣିଥିବେ,–ହରଗୌରୀ,ହରପାର୍ବତୀ, ଉମାମହେଶ୍ୱର, ଶବପାର୍ବତୀ । ମା’ ଗୌରୀଙ୍କୁ ଅଲଗା କରି କେହିକେବେ ଆପଣଙ୍କୁ ଡାକନ୍ତି କି ? କିନ୍ତୁ କେବେଭଲ ଶୁଣିଛନ୍ତି–ଲକ୍ଷ୍ମୀବିଷ୍ଣୁ–ବିଷ୍ଣୁକମଳା–ବିଷ୍ଣୁସରସ୍ୱତୀ–ବାଣୀବିଷ୍ଣୁ–ବିଷ୍ଣୁଭାରତୀ–ଏମିତି ଲଗେଇକରି କେହି କେବେ ବିଷ୍ଣୁଙ୍କୁ ଡାକିବାର ଆପଣ ଶୁଣିଛନ୍ତି ଭଲ କେବେ ?

ମହାଦେବଙ୍କ ମୁଖମଣ୍ଡଳ ଆତ୍ମପ୍ରସାଦ ଓ ପତ୍ନୀପ୍ରଣୟ ରାଗରେ ରଂଜିତ ହୋଇଉଠିଲା । ତାଙ୍କ କଣ୍ଠସ୍ୱର ପରମ ତୃପ୍ତିରେ ଆର୍ଦ୍ର ଓ ବିହ୍ୱଳ ହୋଇ ଉଠିଲା । ସେ ନାରଦଙ୍କ ବାହୁଧରି ଅନୁନୟ କଲା ଭଳି ପ୍ରଶ୍ନ କଲେ–ଆଚ୍ଛା ନାରଦ ! ଲୋକେତ ପୁଣି “ଲକ୍ଷ୍ମୀନାରାୟଣ” କହିବାର କେତେବାର ଶୁଣିଛି ।

ନାରଦ ତାଚ୍ଛଲ୍ୟ କଲାଭଳି କହିଲେ–ଆଜ୍ଞା ! ସେଇଥି ପାଇଁ ତ ଘରେ ଦୁଇ ସପତ୍ନୀଙ୍କ ଭିତରେ ଅଷ୍ଟପ୍ରହର କଳିଆ । ସରସ୍ୱତୀ କହିବେ–ତୁମେ ନାମ ସଂଗେ କେବଳ ଲକ୍ଷ୍ମୀନାମ ଯୋଡ଼ିଲେ, କିମ୍ବା ଏକୁଟିଆ ଲକ୍ଷ୍ମୀଙ୍କ ସଙ୍ଗେ ବସି ଛବି ତୋଳିଲେ–ବୁଝି ଖବରଦାର–ବୈକୁଣ୍ଠରେ ନିଆଁ ଲଗେଇ ଦେବି । କାହିଁକି ? ଲକ୍ଷ୍ମୀ ଏମିତି କ’ଣ କି ? ବାରବୁଲୀ ଅନାଗରୀ ନୋଳିଆ ଘରର ଝିଅ ସେଇ ଏକା କଣ ବିଷ୍ଣୁବଲ୍ଲଭା–ଆଉ ମୁଁ କୁଆଡୁ ପଳେଇ ଆସିଛି କି ? ମୁଁ କଣ ଆଉ ଥୋଇଲି ପୋଇଲି ହୋଇଛି କି ? ଆଜ୍ଞା ! ସେହିଦିନୁଁ ବିଷ୍ଣୁ ଆଉ ନିଜ ନାମ ସାଙ୍ଗରେ ଲକ୍ଷ୍ମୀ କି ସରସ୍ୱତୀ କାହାନାମ ଯୋଡ଼ୁଛନ୍ତି କି ? ଦୁଇଟି ସ୍ତ୍ରୀଙ୍କ ନାମ ସାଙ୍ଗେ ନିଜ ନାମ ଯୋଡ଼ି ସେ କଣ ଆଉ ଲୋକସାଧାରଣରେ ସ୍ୱନାମଧନ୍ୟ ହୋଇପାରନ୍ତେ ? ଲୋକଲଜ୍ଜ୍ୟା ତ ଫେର୍ ଗୋଟାଏ ଅଛି ?

ଶିବ କହିଲେ–ସେ କଥା ସତ ; କିନ୍ତୁ ବହୁ ଛବିରେ ତ ଦେଖିଛି–ବିଷ୍ଣୁ ବହୁବେଳେ ଲକ୍ଷ୍ମୀ ସରସ୍ୱତୀଙ୍କ ସାଙ୍ଗେ ବସି ପଶା ଖେଳୁଥାନ୍ତି ? ସେ ଦୃଶ୍ୟ ଦେଖିଲେ ମୋର ଭାଗ୍ୟକୁ ଧିକ୍କାର କରେ । ବିଷ୍ଣୁଙ୍କ ଭାଗ୍ୟକୁ ଈର୍ଷା ନକରି ରହି ପାରେ ନାହିଁ ।

ନାରଦ କହିଲେ—ଭୋଳାନାଥ ; ସେ ସବୁ କଥାରେ କେବେ ଭୁଲିବେ ନାହିଁ । ବିଷ୍ଣୁଙ୍କର ଅଜବ ମାୟା । ସେଇ ପଶାଖେଳଟି ସବୁବେଳେ ବିଷ୍ଣୁଙ୍କର କାଳ ହାଣିବେ । ପ୍ରଥମତଃ ତିନିଜଣିଆ ଖେଳରେ ବିଷ୍ଣୁ କାହାପଟେ ହେବେ—ଲକ୍ଷ୍ମୀଙ୍କ ପଟେ କି ସରସ୍ୱତୀଙ୍କ ପଟେ—ତାହା ମୀମାଂସା ହୋଇ ପାରେ ନାହିଁ । ଦୁଇ ସଉତୁଣୀଙ୍କ ଟଣା ଓଟରରେ ବିଷ୍ଣୁଙ୍କ ଅବସ୍ଥା ବେଳେବେଳେ ସଙ୍କଟାପନ୍ନ ମଧ୍ୟ ହୋଇପଡ଼େ । ତେବେ, ମୁଁ ଯଦି ଦୈବାତ କେବେ ଜୁଟିଯାଏ, ତେବେ ଖେଳ ହୁଏତ ଆରମ୍ଭ ହୋଇଯାଏ ! ମାତ୍ର ବାଜିଏ ଖେଳ ଗ୍ଲିଥିବ କି ନାହିଁ, ବିଷ୍ଣୁ ଅନ୍ୟମନସ୍କ ହୋଇଯାନ୍ତି । ତାଙ୍କ ଆସନ କମ୍ପେ । ହଠାତ୍ କଅଣ ଭବି ଖେଳରୁ ଉଠି ଗରୁଡ଼ ପିଠିରେ ବସି କୁଆଡ଼େ ଅନ୍ତର୍ଦ୍ଧାନ ।

କାହିଁକି ହେ ? ଶିବ ଆଶ୍ଚର୍ଯ୍ୟ ହୋଇ ପଗ୍ଚରନ୍ତି ।

କାହିଁକି କ'ଣ ଆଜ୍ଞା ? ଚଉଦ ବ୍ରହ୍ମାଣ୍ଡର ମହାଦାୟିତ୍ୱ, ମହାଚିନ୍ତା କୋଉଠି କୁମ୍ଭୀର ମୁହଁରେ ପଡ଼ି ହାତୀଟାଏ 'ବିଷ୍ଣୁ ରକ୍ଷାକର' ବୋଲି ଡାକ ଛାଡ଼ୁଥିବ —କୋଉଠି ହରିଣଟାଏ ବ୍ୟାଧ ହାତରୁ ତ୍ରାହି ପାଇବାକୁ ରଡ଼ି ଛାଡ଼ୁଥିବ—କୋଉଠି ସ୍ତ୍ରୀ ଲୋକଟାଏ ଲଙ୍ଗଳା ମୁକୁଳା ହୋଇ ପାଷାଣ୍ଡ ପୁରୁଷଙ୍କ ଅତ୍ୟାଗ୍ଚରରୁ ରକ୍ଷା ପାଇବାକୁ ଡାକ ଛାଡ଼ୁଥିବ । ବର୍ତ୍ତମାନ ଇନ୍ଦ୍ର ସ୍ମରଣ କଲେଣି ତ, ଆଉ ଘଡ଼ିକୁ ବ୍ରହ୍ମା ସ୍ମରଣ କଲେଣି । ଗୋଟେ ଗୋଟେ ବେଳାରେ ସାପ ଡାକୁଥିବ—ହେ ବିଷ୍ଣୁ ! ଶୀଘ୍ର କୃପାକର—ମୋ ପେଟରେ ତିନିଦିନ ହେଲାଣି, କିଛି ପଡ଼ିନାହିଁ । ମୁଁ କେମିତି ଏଇ ପରିପୁଷ୍ଟ ବେଙ୍ଗଟିକୁ ନିର୍ବିଘ୍ନରେ ଗିଳିଦିଏଁ ! ଠିକ୍ ସେହି ମୁହୂର୍ତ୍ତରେ ବେଙ୍ଗଟା ବି ଅଟଙ୍କରେ ଆର୍ତ୍ତଚିତ୍କାର ଛାଡ଼ି କହୁଥିବ—ହେ ଆରତଭଂଜନ ବିଷ୍ଣୁ ! ମୋତେ ଏହି କାଳ ସର୍ପ ମୁଖରୁ ରକ୍ଷାକର । ମୋର ଛୋଟ ଛୁଆମାନଙ୍କର ଏପର୍ଯ୍ୟନ୍ତ ଲାଞ୍ଜ କଟିନାହିଁ । ସେମାନେ ପାଣିରୁ ପଦାକୁ ବାହାରି ନାହାନ୍ତି । ମୁଁ ସର୍ପ ପେଟକୁ ଗଲେ ସେମାନେ ଅରକ୍ଷ ହୋଇଯିବେ । ବାଳିଆ,ଶେଉଳ ମାଛମାନେ ସେମାନଙ୍କୁ ଗିଳି ପକାଇବେ । ଏମିତି ଏମିତି ପ୍ରତି ମୁହୂର୍ତ୍ତରେ ବିଷ୍ଣୁଙ୍କ ଆଗରେ କୋଟି କୋଟି ସମସ୍ୟା । ବିଷ୍ଣୁଙ୍କ ଅବସ୍ଥା ଅସମ୍ଭାଳ । କେତେ ମୁଁ ଆଉ କହିବି ? ଆପଣା ଘର କଥା କିଛି ବୁଝୁ ନାହାନ୍ତି କି ପତ୍ନୀମାନଙ୍କ ସହିତ ଦଣ୍ଡେ ବି ହସଖୁସୀ ହେଉନାହାନ୍ତି ବୋଲି ଲକ୍ଷ୍ମୀ, ସରସ୍ୱତୀଙ୍କର

ଯୋଉ କଟୁ ଗଂଞ୍ଜଣା । ଆପଣ ଆଜ୍ଞା, ସେସବୁ ଦୃଷ୍ଟିରୁ ଖୁବ୍ ଆରାମ୍‌ରେ ଅଛନ୍ତି । ତା' ଛଡ଼ା, ମଧ୍ୟେ ମଧ୍ୟେ ତାଙ୍କୁ ଯୋଉ ପୃଥିବୀରେ ଯାଇ ଅବତାର ସବତାର ହେବାକୁ ପଡ଼ୁଛି—ସେଥିରେ ବି ପ୍ରଭୁ ବଡ଼ ହନ୍ତସନ୍ତ ହୋଇଯାଉଛନ୍ତି । ଏ ପୃଥିବୀ ଆଜ୍ଞା, ଗୋଟିଏ ଏମିତି ଅଦ୍‌ଭୁତ ଜାଗା ଯେ ସେଠାକୁ ମଧ୍ୟେ ମଧ୍ୟେ ଯାଇ ପ୍ରଭୁ ଯେତେ ସଂଖ୍ୟକ ଦୁଷ୍ଟମାନଙ୍କୁ ବିନାଶ କଲେବି, ତାଙ୍କ ସଂଖ୍ୟା କମିବ କ'ଣ, ଓଲଟି ଦିନକୁ ଦିନ ବର୍ଦ୍ଧି ଚାଲିଛି । ଆଉ ଏ ପୃଥିବୀଟା ଉପରେ ଧର୍ମକୁ ଯେତେ କିଲାସିଲା ବାଡ଼େଇ, ଟାଣକରି ଥାପିଲେବି ପୃଥିବୀ ଯୋଉ ବେଗରେ ଧକଇମକଲ ହୋଇ ଘୂରୁଛି—ସେଥିରେ ଦିନ ଦୁଇଟାରେ ବି ସବୁ କିଲା ହୁଗୁଳି ଯାଇ, ଧର୍ମ ତା'ର ଥାପନା ଥାନରୁ ସବୁବେଳେ ତଳକୁ ଖସି ପଡ଼ୁଛି । ପ୍ରଭୁ ବଡ଼ ଦିକ୍‌ଦାର ହୋଇଗଲେଣି ।

ମୁଁ ଯାଇ କେତେଥର ଦେଖି ଆସିଲିଣି—ବିଷ୍ଣୁ ଆଉ କାହାକୁ କିଛି ନକହି ଶାଳଗ୍ରାମ ପଥର ରୂପରେ ଗଣ୍ଡକୀ ନଦୀର ବାଲି ଶଯ୍ୟାରେ ଚାରିକାତ ଲମ୍ବାଇ ପଡ଼ିଛନ୍ତି । ହଲ୍ ନାହିଁ କି ଚଲ୍ ନାହିଁ । କ'ଣ ବା ଆଉ କରିବେ ? ନିଜେତ ଇଚ୍ଛାମୟ ! କିନ୍ତୁ ସେହି ଗୁଣଟି ତାଙ୍କୁ ବେଶୀ ହଇରଣ କରୁଛି । ଯେତେବେଳେ ଯାହା ସ୍ୱୟଂ ଇଚ୍ଛା ହୋଇ ଯାଉଛି' ସାଙ୍ଗେ ସଙ୍ଗେ ସେଇଟି ଫଳି ଯାଉଛି । ନିଆଁ ହେବି ବୋଲି ଭାବିବା ମାତ୍ରେ ନିଆଁ ଜଳିଲା । ଅଥଚ ପୁଣି ସେଇ ଏକା ସମୟରେ ବି ପାଣି ହେବି ବୋଲି ଭାବି ହୋଇ ଯାଉଛି । ଏଣେ ନିଆଁକୁ ପାଣି ବିପରୀତ ଘଟୁଛି ! ପ୍ରଭୁ ନିଜ ଆୟତ୍ତରେ ନଥାଇ ଭଳୁଆ ପ୍ରାଏ ହେଉଛନ୍ତି ।......ଆପଣ ବରଂ ମହା ଖୁସୀରେ ଅଛନ୍ତି ଭୋଳାନାଥ । ପରିସ୍ଥିତି ସେମିତି କିଛି ଆପଣଙ୍କର ଜଟୀଳ ବା ଗୁରୁତର ନୁହେଁ—ଏବଂ ଆପଣତ ପୁଣି ସହଜେ ହେଲେ ଆଶୁତୋଷ ।

ସବୁକଥା ଶୁଣିଲା ପରେ ଶିବଙ୍କ ମନ ପ୍ରକୃତରେ ନିଜ ବିଷୟରେ ଖୁବ୍ ପ୍ରସନ୍ନ ହୋଇ ଉଠିଲା । ବିଷ୍ଣୁଙ୍କ ତୁଳନାରେ ସେ ନିଜେ ପ୍ରକୃତରେ କେଡ଼େ ନିଶ୍ଚିନ୍ତ ଆରାମରେ ଅଛନ୍ତି, ସେ କଥା ଭାବି ଶିବ ବଡ଼ ଆତ୍ମପ୍ରସାଦ ଅନୁଭବ କଲେ । କିନ୍ତୁ ତାଙ୍କ ମନରେ ଆପଣାର ସେହି ପାରିବାରିକ ଅଶାନ୍ତିଟିର— ମୋଟ ଉପରେ ଦ୍ୱିତୀୟ ପତ୍ନୀ ପାର୍ବତୀଙ୍କର ତାଙ୍କ ଉପରେ ଅଦଉତି କଥା ମନେ

ପଡ଼ି ତାଙ୍କୁ ପୁଣି ସାମାନ୍ୟ ବିରକ୍ତ ଲାଗିଲା । ସେ କହିଲେ—ସବୁ ମୁଁ ବୁଝୁଛି ନାରଦ—ବିଷ୍ଣୁ ମୋ ଠାରୁ ନିଶ୍ଚୟ କୋଟି ଗୁଣେ ଦୁଃଖୀ ! କିନ୍ତୁ ସତୀ ଭଳି ପତ୍ନୀର ମୃତ୍ୟୁପରେ ବିଷ୍ଣୁଙ୍କର ଚକ୍ରାନ୍ତରେ ପଡ଼ି ମୋର ଆଉ ଥରେ ପାର୍ବତୀଙ୍କୁ ବିବାହ କରିବା ଠିକ୍ ହେଲା ନାହିଁ । ମୋର ଅଶାନ୍ତିର ମୂଳ କାରଣ ସେହି ।

ନାରଦ ହସି ହସି କହିଲେ ହେ ମୃତ୍ୟୁଞ୍ଜୟ ! ଆପଣ ତ୍ରିକାଳଦର୍ଶୀ ହୋଇ ମଧ୍ୟ ମହାଭ୍ରମରେ ପଡ଼ିବା ଦେଖି ମୋତେ ବିସ୍ମୟ ଲାଗୁଛି । ଆପଣ କଣ ଜାଣନ୍ତି ନାହିଁ ଯେ ଆପଣଙ୍କର ଆଦ୍ୟାଶକ୍ତି ସତୀ ଦେବୀ ପୁନର୍ବାର ହିମାଳୟ ଔରସରେ ସ୍ୱ ପତ୍ନୀ ମେନାଙ୍କର ଗର୍ଭରୁ ପାର୍ବତୀ ରୂପେ ଜନ୍ମଗ୍ରହଣ କରିଛନ୍ତି ? ଯେ ଦକ୍ଷପ୍ରଜାପତିଙ୍କ କନ୍ୟା ସତୀ, ସେହି ହେଉଛନ୍ତି ବର୍ତ୍ତମାନ ଗଣେଶ କାର୍ତ୍ତିକଙ୍କ ଜନନୀ ଉମା ।

ନାରଦଙ୍କ ମୁଖରୁ ଏହା ଶୁଣିବା ମାତ୍ରେ ଅତ୍ୟନ୍ତ ବିସ୍ମୟ ଓ ଆନନ୍ଦରେ ଶିବ କମ୍ପି ଉଠିଲେ । ସେ ହସିହସି କହିଲେ—ହେଲା, ହେଲା ! ନାରଦ ! ମୁଁ ସେ ସବୁ ଜାଣି ନଥିଲି ନୁହେଁ । କିନ୍ତୁ ନିଜ ଦୁଃଖରେ ମୂହ୍ୟମାନ ହୋଇ ସବୁ ପୁଣି ଭୁଲି ଯାଇଥିଲି । ନିଜକୁ ଏକୁଟିଆ ଦୁଃଖୀ ଭାବିବା ଏକ ମାୟା ।

ନାରଦ ! ମୁଁ ପ୍ରକୃତରେ ଭ୍ରମରେ ପଡ଼ିଥିଲି । ସତୀ ଏବଂ ଉମାଙ୍କୁ ପୃଥକ୍ ବୁଝି ମୁଁ ବହୁ କଷ୍ଟ ପାଇଲିଣି । କିନ୍ତୁ...ତୁମେ ଆଜି ମୋର ସେ ଭ୍ରମ ଓ ମାୟା ଦୂର କରିଦେଲ । ପ୍ରକୃତରେ ମୁଁ ସବୁଠାରୁ ସୁଖୀ ଅଟେ । ଆମେ ହେଲୁ ଯୋଗୀ ଭିକାରୀ । ତଦୁପରି ସର୍ବଦା ବ୍ରହ୍ମାନନ୍ଦର ନିଶାରେ ବିଭୋଳିତ ହୋଇଥାଉଁ । ତୁମକଥା ଯଥାର୍ଥ ଅଟେ ନାରଦ । ମୋଠାରୁ ବଳି ଏ ବିଶ୍ୱ-ବ୍ରହ୍ମାଣ୍ଡରେ ସୁଖୀ କିଏ ? ଶୈଳାଧିରାଜତନୟା ଉମାଙ୍କ ଭଳି ପତିପରାୟଣା ପତ୍ନୀ ! ଗଣେଶ କାର୍ତ୍ତିକଙ୍କ ସଦୃଶ୍ୟ ବାଧ୍ୟ ଆବାଲ୍ୟ ବ୍ରହ୍ମଚାରୀ ବିଜ୍ଞ ଓ ସୁଦର୍ଶନ ପୁତ୍ରରତ୍ନ ! ସେମାନେ ପୁଣି ଚିରକୁମାର ହୋଇଥିବାରୁ ସଚରାଚର ପୁତ୍ରବଧୂମାନଙ୍କ ଭିତରେ ଘଟୁଥିବା ହିଂସାହିଂସି କଳିକଜିଆ ମୋ ଘରେ ନାହିଁ । ନାତି ନାତୁଣୀଙ୍କର ନେ ନେନ୍ଦେର ଜଞ୍ଜାଳ ମଞ୍ଜାଳ ନାହିଁ । ନନ୍ଦୀ ଭୃଙ୍ଗୀଙ୍କ ଭଳି ଅତି ଅନୁଗତ ନିର୍ବୋଧ ଶିଷ୍ୟ ସେବକ ଦ୍ୱୟ, ବୃଷଭ ବାସୁ ସଦୃଶ ସର୍ବ

ସହିଷ୍ଣୁ ନିଦକ ବାହନ, ପୁଣି ସର୍ବଦା ମୋ ଭଳି ନିକମା ଟୋକିଙ୍କୁ ଅକୁଣ୍ଠ ଭାବେ ଧନଧାନ୍ୟରେ ସାହାଯ୍ୟ କରୁଥିବା ପର୍ବତରାଜ ହିମାଳୟଙ୍କ ପରି ଶଶୁର—ଅତ୍ୟନ୍ତ ବାତ୍ସଲ୍ୟବିହ୍ୱଳା ମେନାଙ୍କ ପରି ଶାଶୂ—ଆଉ ନିତ୍ୟ ଜପ ବା ଭଜନ କରିବାକୁ "ରାମ" ସଦୃଶ ମହାମଧୁର ନାମାମୃତ, ବିହାର କରିବା ଲାଗି ଏଭଳି ବିବିକ୍ତ ନିର୍ବିବାଦ ଶ୍ମଶାନଭୂମି । ତା'ଛଡ଼ା, ବିଷ୍ଣୁଙ୍କର ସମକକ୍ଷ ଦେବତା ହେଲେ ବି, ମୋତେ ଅବତାର ଫବତାର ହେବାକୁ ପଡ଼ୁନାହିଁ— ଦୁଷ୍ଟଦଳନ ଓ ଧର୍ମ ସଂସ୍ଥାପନ ପରି ଅତି ଜଟିଳ, ଦୂରୂହ, ଦୁର୍ବୋଧ୍ୟ ଓ ଦୁଃସାଧ୍ୟ କର୍ମର ଦାୟିତ୍ୱ ମଧ୍ୟ ମୋ ଉପରେ ପଡ଼ିନାହିଁ । କହିଲ ନାରଦ ? ଏତିକି ଭାଗ୍ୟ କେତେଜଣ ଭଲ ତୁମର ଏଇ ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ପାଇଛନ୍ତି ? ତୁମେ ତ ତିନିପୁର ଭ୍ରମୁଛ—ସମସ୍ତଙ୍କୁ ଦେଖୁଛ, ଜାଣୁଛ ! ...ବିଷ୍ଣୁଙ୍କ ଲାଗି ପ୍ରକୃତରେ ମୁଁ ଭାରୀ ଦୁଃଖିତ । ହଉ, ହଉ, କଣ ଆଉ କରିପାରିବା ଆମେ ବିଷ୍ଣୁଙ୍କ ପାଇଁ ? ସେହି କଥା ଚିନ୍ତାକର ନାରଦ ! ବିଷ୍ଣୁ ପ୍ରକୃତରେ ମହାଦୁଃଖୀ । ତାଙ୍କଭଳି ଦୁଃଖୀ ଆଉ ବିଶ୍ୱରେ କେହି ନାହିଁ । ମୋର ବିଷ୍ଣୁଙ୍କ ଲାଗି ଖୁବ୍ ମାୟା ହେଉଛି ନାରଦ......ବିଷ୍ଣୁଙ୍କ ଲାଗି କରୁଣାରେ ମୋର ହୃଦୟ ତରଳି ଯାଉଛି । ବିଷ୍ଣୁଙ୍କ ଅନନ୍ତ ଦୁଃଖରେ ଭାଗୀଦାର ହେବାକୁ ମୋ ଛଡ଼ା ଏ ତ୍ରିଭୁବନରେ ଆଉ କିଏ ଅଛି ?

ଏତିକି କହି ମହାଦେବ ଠିଆ ହେଲେ ଏବଂ ଖୁବ୍ ଜଡ଼ିତ ଓ ଗଦ୍‌ଗଦ୍ କଣ୍ଠରେ ଡାକ ଛାଡ଼ିଲେ—ହେ ବାବା ନନ୍ଦୀ ! ଆରେ ଭୃଙ୍ଗୀ ! ଶୀଘ୍ର ବୃଷଭକୁ ପ୍ରସ୍ତୁତ କରି ଏଠାକୁ ଆଣ ତ ! ମୋର ମନେ ହେଉଛି—ତୁମର ମାଆ ପାର୍ବତୀ ମୋତେ ବିକଳରେ ସ୍ମରଣ କରୁଛନ୍ତି !

ଶିବଙ୍କ ତୁଣ୍ଡରୁ ଏତେକ ଶ୍ରବଣ କରି ତ୍ରିକାଳଦର୍ଶୀ ଦେବର୍ଷି ନାରଦ ସ୍ମିତ-ହାସ୍ୟ କରି ଊର୍ଦ୍ଧ୍ୱମୁଖ ହେଲେ ଏବଂ ହସ୍ତଯୋଡ଼ି ଇଷ୍ଟ ସ୍ମରଣ କରି ଉଠିଲେ —ନାରାୟଣ ! ନାରାୟଣ !

ଏହି ସମୟରେ ଏକ ଅଭାବିତ ଘଟଣା ଘଟିଲା । ସେତେବେଳକୁ ସନ୍ଧ୍ୟା ସମାଗତ । କିଞ୍ଚିତ୍ ତରଳ ଅନ୍ଧକାର ଧଉଳାଗିରିରୁ ବହି ଆସି ଚତୁର୍ଦ୍ଦିଗକୁ ଆପ୍ଳୁତ କରୁଅଛି । ନଦୀକୂଳସ୍ଥ ଶ୍ମଶାନରେ ଜୁଇଟିଏ ପ୍ରବଳ ତେଜରେ

ଜଳୁଅଛି ଏବଂ ତାର ଆଲୋକରେ ଶିବଙ୍କର ରଜତଧବଳ ଶରୀର ଅଗ୍ନିମୟ ବିଭ ଧାରଣ କରିଅଛି । ନିକଟସ୍ଥ ବନାନୀ ଉପାନ୍ତରୁ ଶୃଗାଳମାନେ ସମ୍ମିଳିତ ଭାବେ ହୁକେହୋ ରବ ଆରମ୍ଭ କରିଛନ୍ତି । ଏମନ୍ତ ସମୟରେ ଶିବ ବାହନ ବୃଷଭ ହଠାତ୍ ଲାଞ୍ଜ ଟେକି ଖରଶ୍ୱାସ ହୋଇ ଉତ୍ୟକ୍ତଭାବେ କାହା ସଙ୍ଗେ ଲଢ଼ିବା ଭଙ୍ଗୀରେ ନାଚି ନାଚି ଧାଇଁବା ଦେଖି ନାରଦଙ୍କ ସମେତ ଶିବ ସେହି ଦିଗକୁ ଚାହିଁଲେ । ସେମାନେ ଦେଖିଲେ ଯେ ସ୍ୱୟଂ ହିମାଳୟନନ୍ଦିନୀ ଶିବାନୁଗତପ୍ରାଣା ପାର୍ବତୀ ତାଙ୍କ ବାହନ ସିଂହ ଉପରେ ଉପବେଶନ କରି ତାଙ୍କ ଆଡ଼କୁ ଆସୁଛନ୍ତି ଏବଂ ଦୁଇକଡ଼ରେ ମୂଷିକ ଓ ମୟୂର ଉପରେ ବସି ଗଣେଶ ଓ କାର୍ତ୍ତିକ ମଧ୍ୟ ଆସୁଅଛନ୍ତି । ନାରଦ ଏ ଦୃଶ୍ୟ ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇ କିଞ୍ଚିତ ଅଗ୍ରସର ପୂର୍ବକ ପାର୍ବତୀଙ୍କୁ ଅଭିବାଦନ କରନ୍ତେ– ପାର୍ବତୀ ସ୍ମିତ ପ୍ରକାଶ ପୂର୍ବକ ଅଭୟ ହସ୍ତ ପ୍ରସାରଣ କରି ନାରଦଙ୍କୁ ଆଶୀର୍ବାଦ କଲେ ଏବଂ ତାଙ୍କୁ ଟିକିଏ ସିନ୍ଦୂର ଏବଂ ମନ୍ଦାର ଫୁଲଟିଏ ଉପହାର ଦେଲେ ।

ପାର୍ବତୀଙ୍କୁ ଦେଖି ନନ୍ଦୀ ଓ ଭୃଙ୍ଗୀ ଅତି ଆନନ୍ଦରେ ବିହ୍ୱଳ ହୋଇ ତାଙ୍କ ପାଦତଳେ ଗଡ଼ିଗଲେ ଏବଂ ଗତ କେତେବର୍ଷ ଧରି ଶିବଙ୍କ ପାଳରେ ପଡ଼ି ଏହି ଅପନ୍ତରରେ କି ସବୁ ଦୁଃଖ କଷ୍ଟରେ ନଖାଇ ନପିଇ ନଶୋଇ କାଳାତିପାତ କରୁଛନ୍ତି ବୋଲି ଦୁଃସହ ଦୁରବସ୍ଥାର ବର୍ଣ୍ଣନା କରି ବସିଲେ । ମାତ୍ର ଶିବ ଗୋଟିଏ ପ୍ରସ୍ତର ଉପରେ ସ୍ଥାଣୁଭଳି ବସି ରହିଥାନ୍ତି । ଆନନ୍ଦ ଓ ଅଭିମାନରେ ତାଙ୍କର ଦେହ ମନ ନିଶ୍ଚଳ ହୋଇ ଯାଇଥାଏ । ତାହା ଦେଖି ପାର୍ବତୀ ମନେ ମନେ କିଞ୍ଚିତ୍ କୌତୁକ ଅନୁଭବ କଲେ ଏବଂ ଶିବଙ୍କର ଏହି ପ୍ରଣୟାଭିମାନୀ ରୂପ ଦେଖି ତାଙ୍କ ହୃଦୟରେ ପତିଙ୍କ ପ୍ରତି ବିହ୍ୱଳଭାବ ଜାତହେଲା । ମାତ୍ର ସେ ନିଜର ଆବେଗକୁ ସଂଯତ କରି ଶିବଙ୍କ ପାଦ ବନ୍ଦନା କଲେ ଏବଂ କିଛି କଥାବାର୍ତ୍ତା ନକରି, ନନ୍ଦୀ, ଭୃଙ୍ଗୀ, ବୃଷଭ ଓ ନାରଦଙ୍କୁ ଯଥେଷ୍ଟ ଆଲିଙ୍ଗନ ଆଶୀର୍ବାଦାଦି କରି ସେମାନଙ୍କୁ ଯଥେଷ୍ଟ ଆପ୍ୟାୟିତ କଲେ ଏବଂ ପିତ୍ରାଳୟରୁ ଆନୀତ ବହୁ ଦୁର୍ଲ୍ଲଭ ମିଷ୍ଟଫଳ ସହିତ ବହୁ ମହାର୍ଘ ମିଷ୍ଟଦ୍ରବ୍ୟ ଭୋଜନ କରାଇଲେ ଏବଂ ସେମାନଙ୍କ ସହିତ ଗଣେଶ

କାର୍ତ୍ତିକଙ୍କୁ ଆଳାପ କରିବାକୁ ଛାଡ଼ି ଦେଇ ଏକାନ୍ତରେ ଶିବଙ୍କ ସମୀପକୁ ଗଲେ ।

ଶିବ ତଥାପି ମୌନ ହୋଇ ବସିଥାନ୍ତି । ପାର୍ବତୀ ତାଙ୍କୁ ଆଲିଙ୍ଗନ କରି ତାଙ୍କ ମୁହଁ ପାଖରେ ମାତୃପ୍ରଦତ୍ତ ଏକ ସୁମିଷ୍ଟ ଅମୃତୋପମ ତେଜୋବନ୍ତ ମୋଦକ ଧରି ଅତ୍ୟନ୍ତ ଆଦର ଗେହ୍ଲାପଣରେ କହିଲେ—ପ୍ରଭୁ ! ଆପଣଙ୍କର ଅତିପ୍ରିୟ ଏହି ମୋଦକ ମୋର ମାଆ ନିଜ ହାତରେ ପ୍ରସ୍ତୁତ କରି ଆପଣଙ୍କ ପାଇଁ ପଠାଇ ଅଛନ୍ତି । ଶୀଘ୍ର ଏହାର ସଦ୍‌ବ୍ୟବହାର କରି ପୂର୍ବାଭିମାନ ତ୍ୟାଗ କରି ଦାସୀକୁ ଅନୁଗୃହିତ କରନ୍ତୁ ।

ମାତ୍ର ଶିବ ସଙ୍ଗେ ସଙ୍ଗେ ମୁହଁ ବୁଲାଇ ଦେଇ ତାଙ୍କ ଆଦରକୁ ଉପେକ୍ଷା କଲେ । ପାର୍ବତୀ ପ୍ରଣୟ-କୌତୁକ ପ୍ରକାଶ କରି କହିଲେ—ଯଦି ତୁମ୍ଭର ଏମିତି ଗୁଣ ମୁଁ ଆଗରୁ ଶୁଣିଥାନ୍ତି ତେବେ ତୁମକୁ ବିବାହ କରିବି ବୋଲି ଏତେ କଠିଣ ତପସ୍ୟା କରିନଥାନ୍ତି ।

ଏହା କହି ପାର୍ବତୀ ଶିବଙ୍କର ମସ୍ତକକୁ ନିଜ ବକ୍ଷ ଦେଶରେ ଆଉଜାଇ ଆଣିଲେ ଏବଂ ବାଲ୍ୟକାଳରେ ଗଣେଶ କାର୍ତ୍ତିକଙ୍କୁ ଅପୂର୍ବ ବାତ୍ସଲ୍ୟରେ ଆପ୍ଳୁତ କରି ଖୁଆଇବା ଭଳି, ଶିବଙ୍କୁ ସେହି ମୋଦକଟି ଖୁଆଇ ବସିଲେ । ଶିବ ତଥାପି ପାର୍ବତୀଙ୍କ ସୋହାଗକୁ ଉପେକ୍ଷା କରି ଠିଆହେଲେ ଏବଂ ଅଭିମାନକମ୍ପିତ କଣ୍ଠରେ କହିଲେ—

ହେ ଚଣ୍ଡୀ ! ତୁମେ ମୋତେ ବର୍ତ୍ତମାନ ଯେତେ ପ୍ରୀତିବାକ୍ୟ ଶୁଣାଇଲେବି ମୁଁ ଆଉ କୈଳାସକୁ ଫେରି ତୁମ ସଙ୍ଗେ ତୁମ ପିତ୍ରାଳୟରେ ରହିବି ନାହିଁ— ଏହା ମୋର ଦୃଢ଼ ପ୍ରତିଜ୍ଞା ।

ପାର୍ବତୀ କହିଲେ—ନାଥ ! ମୋର ସମସ୍ତ ଦୋଷ ମାର୍ଜନା କରନ୍ତୁ । ମୋର ପିତା ହିମାଳୟ ଓ ମାତା ମେନା ଦେବୀ ଆପଣଙ୍କୁ କେବେ ଅବଜ୍ଞା କରି ନାହାନ୍ତି । ସେମାନେ ଆପଣଙ୍କୁ ତାଙ୍କ ଗୃହରେ ପାଇ ସର୍ବଦା ଅନୁଗୃହିତ ବୋଲି ଅନୁଭବ କରିଥାନ୍ତି । ଆପଣ ବୃଥାରେ ସେମାନଙ୍କ ଉପରେ କାହିଁକି ରୁଷ୍ଟତା ପ୍ରକାଶ କରୁଛନ୍ତି ?

ଶିବ କହିଲେ—ପ୍ରିୟେ ! ତୁମ ପିତାମାତାଙ୍କର କିଛି ଦୋଷ ନାହିଁ ସତ୍ୟ ମାତ୍ର ମୋ ପକ୍ଷରେ ଚିରଦିନ ଶଶୁରାଳୟରେ ଦାମ୍ପତ୍ୟ ଜୀବନ ଯାପନ କରିବା ଅଶୋଭନୀୟ । ଏହି ପର୍ବତର ସନ୍ନିକଟରେ ଏକାମ୍ର କାନନ ବୋଲି ଗୋଟିଏ ସୁନ୍ଦର ଉପବନ ଅଛି । ଏହା ସ୍ୱର୍ଣାଚଳର ମଧ୍ୟଭାଗରେ ଓ ଶୀର୍ଷ ଦେଶରେ ଅବସ୍ଥିତ । ଏହି ଉପବନରେ ନିତ୍ୟ ବସନ୍ତ ଋତୁ ବିରାଜମାନ କରନ୍ତି ଏବଂ ଏହି ବନ ଅତ୍ୟନ୍ତ ଶୀତଳ ଓ ଶାନ୍ତିପ୍ରଦ ଅଟେ । ସେଠାରେ ମନ୍ଦାକିନୀ ଗୁପ୍ତଭାବରେ ଗୋଟିଏ ଝରଣା ରୂପେ ବହମାନ ହେଉଛନ୍ତି ଏବଂ ସପ୍ତସମୁଦ୍ର ବିନ୍ଦୁ ରୂପରେ ସେହି ଭୂମିତଳେ ଆତ୍ମଗୋପନ କରିଛନ୍ତି । ଏହି ସ୍ଥାନ ହିମାଳୟ ପ୍ରଦେଶ ଅପେକ୍ଷା ମଧ୍ୟ ଅତ୍ୟନ୍ତ ପବିତ୍ର ଓ ଧ୍ୟାନ ସମାଧି ଯୋଗ ଲାଗି ସର୍ବତୋଭାବେ ଅନୁକୂଳ । ମୋର ଇଚ୍ଛା, ମୁଁ ଏହି ସ୍ଥାନରେ ଚିରଦିନ ଅବସ୍ଥାନ କରିବି । ତୁମେ ଯଦି ଇଚ୍ଛାକର, ତେବେ ପିତ୍ରାଳୟ ତ୍ୟାଗକରି ଚିରକାଳ ମୋ ସାଙ୍ଗେ ଏଠାରେ ରହିପାର ।

ପାର୍ବତୀଙ୍କ ମୁଖମଣ୍ଡଳ ଶାରଦୀୟ ପୂର୍ଣଚନ୍ଦ୍ର ସଦୃଶ ପ୍ରେମ ଓ ଆନନ୍ଦରେ ଉଦ୍‌ଭସିତ ହୋଇଗଲା । ତାଙ୍କର ହୃଦୟ ଏହି ଭୋଳାନାଥ ସ୍ୱାମୀଙ୍କ ପ୍ରତି ପ୍ରୀତିକରୁଣାରେ ପରିପୂର୍ଣ ହୋଇ ଉଠିଲା । ସେ ଆଉ କିଛି କଥା କହି ପାରିଲେ ନାହିଁ । ଯୋଗେଶ୍ୱର ଶିବଙ୍କର ସେହି ତୁଷାରଧବଳ ସରଳତମ ପବିତ୍ରତମ ପରମ ଆହ୍ଳାଦକ ଶରୀରଟିକୁ ନିବିଡ଼ଭାବେ ଆଲିଙ୍ଗନ କରି ଆନନ୍ଦରେ ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ ।

କିଛି ସମୟ ପରେ ସେହି ଅଭିଭୂତ ଅବସ୍ଥା କଟିଯାନ୍ତେ, ପାର୍ବତୀ କହିଲେ—ପ୍ରଭୁ ! ଆପଣଙ୍କ ଇଚ୍ଛା, ଦାସୀ ପକ୍ଷରେ ଶିରୋଧାର୍ଯ୍ୟ । ମୁଁ ମଧ୍ୟ ଆଉ ପିତ୍ରାଳୟ କୈଳାସ ଯିବିନାହିଁ । ଏହିଠାରେ ହିଁ ଅନନ୍ତକାଳ ପର୍ଯ୍ୟନ୍ତ ତୁମ ସଙ୍ଗେ ଏକତ୍ର ଅବସ୍ଥାନ କରିବି । ମାତ୍ର ପ୍ରଭୁ ! ମୋର ପିତା ମାତା ଉଭୟେ ଆପଣଙ୍କ ଦର୍ଶନାଭିଳାଷରେ ଉତ୍କଣ୍ଠ ହୋଇ ଏକାମ୍ର କାନନ ସମୀପସ୍ଥ ଏକ ଝରଣା କୂଳରେ ଅପେକ୍ଷା କରି ରହିଛନ୍ତି । ସେମାନଙ୍କୁ ଅନୁଗୃହିତ କରନ୍ତୁ ।

ଶିବ କହିଲେ—କଲ୍ୟାଣୀ ! ମୁଁ ସେମାନଙ୍କୁ ନିଶ୍ଚୟ ଦର୍ଶନ ଦେବି । ପ୍ରତିବର୍ଷ ଜ୍ୟେଷ୍ଠମାସ ଶୁକ୍ଳ ଷଷ୍ଠୀ ତିଥିରେ ଆମର ବିବାହ ଉତ୍ସବ ପାଳନ କରି

ଆମର ଭକ୍ତମାନେ ଆପ୍ତକାମ ହେବେ । ଏବଂ ସେହି ଦିନଟି ଶୀତଳଷଷ୍ଠୀ ନାମରେ ଧନ୍ୟ ହେବ । ତୁମର ପିତା ମାତା ସେଠାରେ କେଦାରେଶ୍ୱର ଓ ଗୌରୀମାତା ନାମରେ ଅବସ୍ଥାନ କରି ଶୈବ ଓ ଶାକ୍ତ ମନ୍ତ୍ରରେ ସପୂଜିତ ହେବେ ଏବଂ ସେହି ଝରଣା ଚିରସ୍ରୋତା ହୋଇ କେଦାରଗୌରୀ ନାମରେ ବିଖ୍ୟାତ ହେବ । ଏହାର ଜଳ ପବିତ୍ର ଓ ସର୍ବରୋଗ ନିରମୟ କରିବ । ମୁଁ ତୁମ୍ଭ ସଙ୍ଗେ ପ୍ରତିବର୍ଷ ସେହି ସମୟରେ ସେଠାକୁ ଯାଇ ବିବାହବାର୍ଷିକୀ ପାଳନ କରିବି । ସେହିସ୍ଥାନ ଆଜିଠାରୁ ତୁମର ପିତ୍ରାଳୟ ରୂପେ ପ୍ରଖ୍ୟାତହେବ ଏବଂ ଆମେ ବର୍ତ୍ତମାନ ଯେଉଁ ସ୍ଥାନରେ ଅଛେ, ସେଠାରେ ତୁମର ମୋର ପୁନର୍ମିଳନ ହୋଇଥିବାରୁ ଏହି ସ୍ଥାନରେ ମାହାତ୍ମ୍ୟ ବୃଦ୍ଧି ପାଇବ ଏବଂ ମୁଁ ଏଠାରେ ଧବଳେଶ୍ୱର ନାମ ଧାରଣ କରି ଏକ ବିରାଟ ଲିଙ୍ଗ ରୂପେ ଅବସ୍ଥାନ କରିବି । ଏହି ସମଗ୍ର ଅଞ୍ଚଳ ଆମ୍ଭଯୋଗୁଁ ଭୁବନେଶ୍ୱର ନାମରେ ସୁବିଦିତ ହେବ ଏବଂ ତୁମ୍ଭେ ମଧ୍ୟ ଏ କ୍ଷେତ୍ରରେ ଭୁବନେଶ୍ୱରୀ ନାମରେ ବିଖ୍ୟାତ ହୋଇ କ୍ଷେତ୍ରାଧିଷ୍ଠାତ୍ରୀ ରୂପେ ପୂଜା ପାଇବ ।

ପାର୍ବତୀ ଶିବଙ୍କ ମୁଖରୁ ଏହା ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲେ । ଶିବ ପୁନଶ୍ଚ କହିଲେ–

ପ୍ରିୟେ ! ମୁଁ ତୁମକୁ ଆଉ ଗୋଟିଏ ଗୂଢ଼ ସିଦ୍ଧାନ୍ତ କହୁଛି ଶ୍ରବଣ କର । ଏହି କ୍ଷେତ୍ର ମୋର ଅବସ୍ଥାନ ଯୋଗୁଁ ଶିବକ୍ଷେତ୍ର ରୂପେ ପରିଗଣିତ ହେଲେ ମଧ୍ୟ ଏବଂ ମୁଁ ଏଠାରେ ଲିଙ୍ଗରାଜ ଭୁବନେଶ୍ୱର ରୂପେ ଅଧିଷ୍ଠିତ ହେଲେ ମଧ୍ୟ, ମୁଁ ଏଠାରେ ଲିଙ୍ଗ ସଙ୍କୋଚ କରି ସ୍ୱଭାବତଃ "ହରିହର" ରୂପେ ବିଷ୍ଣୁ ଓ ଶିବ ଉଭୟ ମନ୍ତ୍ରରେ ପୂଜିତ ହେବି ଏବଂ ଏକ ସଙ୍ଗରେ ବିଲ୍ୱ ଓ ତୁଳସୀପତ୍ର ମସ୍ତକରେ ଧାରଣ କରିବି । ପୁନଶ୍ଚ କାଳକ୍ରମେ ମୁଁ ମଧ୍ୟ ବିଷ୍ଣୁଙ୍କ ପରି ଅନ୍ନଭୋଜୀ ହେବି ।

ପାର୍ବତୀ ଆଶ୍ଚର୍ଯ୍ୟ ହୋଇ ପଚାରିଲେ–ଏ କି ଦୁର୍ଘଟ କଥା କହୁଛନ୍ତି ପ୍ରଭୁ ! ଆପଣ "ହରିହର" ରୂପରେ ଆବିର୍ଭୂତ ହେବାକୁ କାହିଁକି ଇଚ୍ଛା କରୁଛନ୍ତି, ତାହା ମୁଁ ବୁଝିପାରୁ ନାହିଁ ।

ଶିବ କାରୁଣ୍ୟ ବିଗଳିତ କଣ୍ଠରେ କହିଲେ—କଲ୍ୟାଣୀ ! ଆଜି ଦାରଦଙ୍କ ମୁଖରୁ ମୁଁ ବିଷ୍ଣୁଙ୍କ ଦୁରବସ୍ଥା ସମ୍ପର୍କରେ ଯାହା ଶ୍ରବଣ କଲି, ସେଥିରେ ମୋର ହୃଦୟ ବିଷ୍ଣୁଙ୍କ ଦୁର୍ଦ୍ଦଶାରେ କାତର ହେଉଅଛି । ଏବଂ ତାଙ୍କ ପ୍ରତି କୃପାରେ ବିଗଳିତ ପ୍ରାୟ ହେଉଅଛି । ମୋତ ଯାହା ମନେ ହେଉଛି—ବିଷ୍ଣୁଙ୍କ ଅପେକ୍ଷା ଏହି ବିଶ୍ୱବ୍ରହ୍ମାଣ୍ଡରେ ଏଭଳି ଏକୁଟିଆ ଆଉ ଦୁଃଖୀ ବ୍ୟକ୍ତି ଦ୍ୱିତୀୟ ନାହାନ୍ତି । ବିଷ୍ଣୁ ମୋ ପ୍ରତି ଯେତେ ଯାହା ନିଷ୍ଠୁର ଆଚରଣ କରିଥାନ୍ତୁ ନା କାହିଁକି, ବିଷ୍ଣୁଙ୍କ ଦୁଃଖରେ ମୋର ଚିତ୍ତ ବିଦୀର୍ଣ୍ଣ ହୋଇ ଯାଉଛି । ମୁଁ ମନେ ମନେ ପ୍ରତିଜ୍ଞା କରିସାରିଛି ଯେ ବିଷ୍ଣୁଙ୍କ ଦୁଃଖରୁ ମୁଁ ଅନ୍ତତଃ ଅର୍ଦ୍ଧେକ ଗ୍ରହଣ କରିବି ।

ପାର୍ବତୀଙ୍କ ମନ ଏ କଥାରେ ଚିଡ଼ିଗଲା । ସେ ପ୍ରକାଶ୍ୟରେ କହିଲେ—କି ଅଘଟଣ କଥା କହୁଛ ? ନିଜ ଦୁଃଖତ ନିଜକୁ ଅସମ୍ଭାଳ । ବେଳେବେଳେ ଜଟା ଛିଡ଼ାଇ ନାଚୁଛ । ଆଉ, ବିଷ୍ଣୁଙ୍କ ଦୁଃଖରୁ ଅଧେ ନେବାକୁ ଏତେ ବ୍ୟାକୁଳ କାହିଁକି ? କ'ଣ ମୁଁ ଆଉ ତୁମକୁ କହିବିଟି ! ମୋର ବି ଭଗ୍ୟ ସେମିତି । ନିଜେ ତ ତପସ୍ୟା କରି ସେହି ବିଷ୍ଣୁଙ୍କ ଅନୁଗ୍ରହରୁ ତୁମକୁ ପତି ରୂପେ ପାଇଛି । ବର୍ତ୍ତମାନ ତାର ଫଳ ଭୋଗ କରିବିନି ତ ଆଉ କିଏ କରିବ ?

ଏତିକି କହି ପାର୍ବତୀ ଅଭିମାନରେ କାନ୍ଦି ଉଠିଲେ । ଶିବଙ୍କର ପ୍ରଣୟାଭିମାନ ଭାଙ୍ଗିଗଲା । ସେ ଉଠି ଆସି ପାର୍ବତୀଙ୍କୁ ଆଲିଙ୍ଗନ କରି ତାଙ୍କର ଅଶେଷ ସୁଧାପୂର୍ଣ୍ଣ କୋଟିଚନ୍ଦ୍ର ନିଭନନରେ ବାରମ୍ବାର ଚୁମ୍ବନ ପ୍ରଦାନ କରି କହିଲେ—

ଗଣେଶ ଜନନୀ ! ତୁମେ ଯେ ତପସ୍ୟା କରି ମୋତେ ଲାଭ କରିଛ ବୋଲି ବାରମ୍ବାର ଅନୁତପ୍ତ ଖେଦୋକ୍ତି ପ୍ରକାଶ କର—ତାହା ପୂର୍ଣ୍ଣ ସତ୍ୟ ନୁହେଁ । ତୁମଙ୍କୁ ପତ୍ନୀ ରୂପେ ପାଇବା ଲାଗି ମୁଁ କଷ୍ଟକଷ୍ଟ କଠିଣ ତପସ୍ୟା କରି ଅଛି—ଯାହାକି ବ୍ରହ୍ମା ବିଷ୍ଣୁଙ୍କ ପକ୍ଷରେ ମଧ୍ୟ ସମ୍ଭବ ନୁହେଁ । ତୁମକୁ ପତ୍ନୀ ରୂପେ ଲାଭ କରିଛି ବୋଲି, ମୁଁ ବିଷ୍ଣୁଙ୍କ ଠାରୁ କୋଟିଗୁଣେ ସୁଖ ଓ ଐଶ୍ୱର୍ଯ୍ୟ ଭୋଗ କରୁଅଛି । ହେ କଲ୍ୟାଣୀ ! ତୁମେ ଆଦିଶକ୍ତି ଜଗନ୍ମାତା । କୃପା ପୂର୍ବକ ମୋ ଉପରେ ପ୍ରସନ୍ନା ହୁଅ ଏବଂ ମୋର ଇଚ୍ଛା ପୂରଣ ଲାଗି ସଦୟ

ଅନୁମତି ପ୍ରଦାନ କର । ମୁଁ ଏହି ପୀଠରେ ଆଜିଠାରୁ ହରିହର ରୂପେ ପ୍ରତିଷ୍ଠିତ ଓ ପୂଜିତ ହେବି ଏବଂ ତୁମେ ମଧ୍ୟ ଏଠାରେ ମହାଲକ୍ଷ୍ମୀଙ୍କର ମହିମା ଭୋଗ କରି "ଅନ୍ନପୂର୍ଣ୍ଣା" ନାମରେ ପ୍ରତିଷ୍ଠା ପାଇବ ଓ ବିଖ୍ୟାତା ହୋଇ ପୂଜା ପାଇବ । ହେ ପ୍ରସନ୍ନମୟୀ ! ମୁଁ ଓ ବିଷ୍ଣୁ ଏକ ଏବଂ ଅଭିନ୍ନ ବୋଲି ଜାଣିରଖ । ହରି ଓ ହର ଏକ ଆତ୍ମା । ଏହି କଳି ଯୁଗରେ ଏବଂ ଓଡ୍ରଖଣ୍ଡ ମଣ୍ଡଳରେ ଏହି ଗୁହ୍ୟ ରହସ୍ୟ ଖୁବ୍ ଶୀଘ୍ର ଉଦ୍‌ଘାଟିତ ହୋଇ ତତ୍ତ୍ୱରୂପେ ଗୃହିତ ହେବ ଏବଂ ଆଜିଠାରୁ ଏହି ଭୁବନେଶ୍ୱର କ୍ଷେତ୍ରରେ ଶୈବ ବୈଷ୍ଣବ ଓ ଶାକ୍ତ ମତ ଏକ ମନ୍ତ୍ରରେ ଗୃହୀତ ହୋଇ ଉଚ୍ଚାରିତ ହେବ । ଏହା ଧ୍ରୁବ ବୋଲି ଜାଣ ।

ଶିବଙ୍କ ମୁଖରୁ ଏହି ଅମୃତ ରହସ୍ୟର ବାଣୀ ଶ୍ରବଣ କରି ମା ପାର୍ବତୀ ଅପୂର୍ବ ଆହ୍ଲାଦରେ ତାଙ୍କର ବିଶାଳ ଶରୀରକୁ ନିଜର ଅନନ୍ତ ପ୍ରେମ ଓ ଶକ୍ତିର ଆଲିଙ୍ଗନରେ ବେଷ୍ଟିତ କରିଦେଲେ ଏବଂ ଗଦ୍‌ଗଦ୍ ବାକ୍ୟରେ କହିଲେ—

ମହେଶ୍ୱର ! ତୁମର ଇଚ୍ଛା ପୂର୍ଣ୍ଣ ହେଉ । ଆଜିଠାରୁ ମୁଁ ଏହି ବର ପ୍ରଦାନ କରୁଛି ଯେ ଏହି କ୍ଷେତ୍ରରେ ତୁମେ ଏକ ଲକ୍ଷ ଲିଙ୍ଗ ରୂପରେ ଆବିର୍ଭୂତ ହୁଅ ଏବଂ ଭୁବନେଶ୍ୱର ନାମରେ ଏହା ଜଗତର ଶ୍ରେଷ୍ଠ ତୀର୍ଥ ରୂପେ ବିଖ୍ୟାତ ହେଉ ।

ଶିବ କହିଲେ—ହେ ପାର୍ବତୀ ! ତୁମର ବାକ୍ୟ ଅବ୍ୟର୍ଥ ହେବ । କଳିଯୁଗ ପାଇଁ ଯେଉଁ ସିଦ୍ଧାନ୍ତ ହୋଇଅଛି, ତାହା ଶ୍ରବଣ କର । ଅଳ୍ପକାଳ ମଧ୍ୟରେ ବିଷ୍ଣୁ ଆମ୍ଭ ଆସ୍ଥାନର ଦକ୍ଷିଣପୂର୍ବ କୋଣରେ ମହୋଦଧିକୂଳସ୍ଥ ନୀଳଗିରି ଉପରେ ନୀଳମାଧବ ରୂପେ ଆବିର୍ଭୂତ ହୋଇ ଶବରମାନଙ୍କ ଦ୍ୱାରା ପୂଜିତ ହେବେ । ତା'ପରେ ସେଠାରୁ ଦିନେ ଅନ୍ତର୍ଦ୍ଧାନ ହୋଇ ପୁନଶ୍ଚ ଦାରୁବ୍ରହ୍ମ ରୂପେ ଅବସ୍ଥାନ କରିବେ ଏବଂ ଏହି କଳିଙ୍ଗ ବା ଉତ୍କଳ ଦେଶ ଆମ୍ଭଦୁହିଁଙ୍କ ଯୋଗୁଁ ସମଗ୍ର ବିଶ୍ୱରେ ଅଦ୍ୱିତୀୟ କ୍ଷେତ୍ର ରୂପେ ପ୍ରତିଷ୍ଠା ଲାଭ କରିବ ।

ଏହି ସମୟରେ ଶିବ ଓ ପାର୍ବତୀଙ୍କୁ ଚକିତ କରି ଏକ ଦିବ୍ୟ ଆଲୋକ ଦ୍ୱାରା ଚତୁର୍ଦ୍ଦିଗ ଉଜ୍ଜ୍ୱଳ ହୋଇଉଠିଲା ଏବଂ ସଙ୍ଗେ ସଙ୍ଗେ ବିବିଧ ବାଦ୍ୟ ବାଜଣାରେ ଚତୁର୍ଦ୍ଦିଗ ମୁଖରିତ ହୋଇଉଠିଲା । ଏକ ଦିବ୍ୟ ସୁବାସରେ ଚତୁଃପାର୍ଶ୍ୱ ଆମୋଦିତ ହୋଇଉଠିଲା । ଦେବର୍ଷି ନାରଦ ମୁହୁର୍ମୁହୁ "ନାରାୟଣ" ଉଚ୍ଚାରଣ କରିବାକୁ ଲାଗିଲେ ଏବଂ ସହସା ଶିବ ଓ ପାର୍ବତୀଙ୍କ ସମ୍ମୁଖରେ ଗରୁଡ଼ ପୃଷ୍ଠରୁ ଭଗବାନ ବିଷ୍ଣୁ ଚତୁର୍ଭୁଜରେ ଶଙ୍ଖ ଚକ୍ର ଗଦା ପଦ୍ମ ଧାରଣ କରି ଲକ୍ଷ୍ମୀଙ୍କ ସହ ସେଠାରେ ଅବତରଣ କଲେ । ବିଷ୍ଣୁ ପରମ ଆଗ୍ରହରେ ଶିବଙ୍କୁ ଆଲିଙ୍ଗନ କଲେ ଏବଂ ଏହି ଆଲିଙ୍ଗନ ଆଉ ଶିଥିଳ ହେଲନାହିଁ । ସମସ୍ତେ ଦେଖିଲେ ଯେ ଶିବ ଓ ବିଷ୍ଣୁ ଏକାକାର ହୋଇ ଅନୁପମ ମହିମାରେ ଏକ ଅଭିନବ ଦିବ୍ୟ ରୂପରେ ଶୋଭମାନ ହେଲେ । ସେହିପରି ଲକ୍ଷ୍ମୀ ଓ ପାର୍ବତୀ ମଧ୍ୟ ପରସ୍ପରକୁ ଆଲିଙ୍ଗନ କରି ଏକୀଭୂତା ହୋଇଗଲେ । ଆକାଶରୁ ଦେବତାମାନେ ଘନଘନ ପୁଷ୍ପବୃଷ୍ଟି କରି ଏହି ମହାନ୍ ଦିବ୍ୟ ମିଳନକୁ ସ୍ୱାଗତ କଲେ । ଗନ୍ଧର୍ବ ଓ କିନ୍ନରମାନେ ବିବିଧ ଦିବ୍ୟ ବାଦ୍ୟ ବଜାଇ ମାଙ୍ଗଳିକ ଗାନ କଲେ ଏବଂ ନାରଦଙ୍କ ସମେତ ମୁନିଋଷିମାନେ ବେଦ ମନ୍ତ୍ର ଗାନ କରି ଏହି ମହାମିଳନକୁ ମହିମାନ୍ୱିତ କଲେ ।

॥ ॥ ॥

## ବଟ ମାହାତ୍ମ୍ୟ ବା ଆଲମ୍‌ଚଣ୍ଡୀ ବୃତ୍ତାନ୍ତ

ଆମ ଗାଁର ସେହି ବରଗଛଟି ଆଉ ନାହିଁ । ........ଏବଂ...........

ଖାଲି ସେଇ ବରଗଛଟି କାହିଁକି, ମୋ ଦେଖନ୍ତରେ ଆମ ଗାଁରେ ଯେତେ ସବୁ ମହାପ୍ରାଚୀନ ମହିମାବନ୍ତ ବଟବୃକ୍ଷମାନେ ଥିଲେ, ସେମାନେ ଆଜି ଆଉ କେହି ନାହାନ୍ତି । ଏପରିକି, ସେମାନଙ୍କ ଔରସରୁ ଜାତ ହୋଇ ସେହି ମହାନ୍ ବଟ-ବଂଶ ପରମ୍ପରାକୁ କୌଣସି ପ୍ରକାରେ ରକ୍ଷା କରିଥିବା ଗଜା ବରଗଛଟିଏ ବି ଆପଣ ଆମର ସହର ତାଆରେ ଗଢ଼ି ଉଠୁଥିବା ଓ ବ୍ଲକ ପଞ୍ଚାୟତାଦି ନାନା କୂଟନୈତିକ ଓ ରାଜନୈତିକ ବିଶେଷଣମାନଙ୍କରେ ଭୂଷିତ ମଦନପୁର ଗାଁରେ କୁତ୍ରାପି ଆଉ ଦେଖିବାକୁ ପାଇବେ ନାହିଁ । ଆମ ଐତି-ହାସିକ ଗ୍ରାମଟିରେ ଏକକାଳରେ ଜନ୍ମ ଗ୍ରହଣ କରି ସ୍ୱକୀୟ ଗୁଣ ରାଶିରେ ଗ୍ରାମ୍ୟ ଐତିହ୍ୟକୁ ସମୃଦ୍ଧିବନ୍ତ କରିଥିବା ସେ କାଳର ସେହି ସବୁ ମହାନ୍ ମହିମାବନ୍ତ ବିଶିଷ୍ଟ ମଣିଷ କେତୋଟିଙ୍କ ପରି, ସେହି ସବୁ ମହା ମହା ଯଶଖ୍ୟାତି ସମ୍ପନ୍ନ ବଟବିଟପମାନେ ମଧ୍ୟ ଆଜି ଗାଁର ଧୂଳି ମାଟିରେ ପାଉଁଶ ହୋଇ ମିଶି ଯାଇଛନ୍ତି ।

ବର୍ତ୍ତମାନ କିନ୍ତୁ ଆମ ଗାଁରେ ଜନସଂଖ୍ୟା ଅତି ପ୍ରବଳ ହେଲଣି । କିନ୍ତୁ ଏହି ପ୍ରବଳ ବର୍ଦ୍ଧିଷ୍ଣୁ ଜନଗହଳ ଭିତରେ ଆପଣ ସେପରି ଐଶ୍ୱର୍ଯ୍ୟବନ୍ତ ବ୍ୟକ୍ତିତ୍ୱ ସମ୍ପନ୍ନ ମଣିଷଟିଏ ଦେଖିବାକୁ ପାଇବେ କାହୁଁ ? ହାଡୁମାହାପାତ୍ରେ, ଈଶର ବାରିକି, ଗୁଣ୍ଡୁ ମାହାନ୍ତି, ବଳୀ ସେନାପତି, ବାଲେଇ ମିଆଁ, ମଲିକ୍ ମତ୍‌ଲୁବ୍

ଉଛବା ଭୋଇ, ମହୀ ଚୌଧୁରୀ, ଜମ୍ଭୁ ମିଶ୍ରେ, ଚଇତନ ସାଉ, ଶମ୍ଭୁ ଚମେଇତଗ, ସୁଦାମ ଖଟୁଆ, ଗୋକୁଳୀ ନନ୍ଦେ ପ୍ରମୁଖ ମହାଗୁଣ ନିଧାନ ପୁରୁଷପୁଙ୍ଗବ ମାନଙ୍କ ଭଳି ପୁରୁଷ ଆଉ ସତକୁ ସତ ଆଜିକାଲି ଆମ ଗାଁରେ କାହାନ୍ତି ?

ଏବେ ଅବଶ୍ୟ ସରପଞ୍ଚ ଓ ଉଆର୍ଡ ମେମ୍ବର, ଚେୟାରମାନ, ଏମ୍. ଏଲ୍. ଏ. ଏବଂ ଡ଼ିଲର୍ ଆଖ୍ୟାଧାରୀ ବିଶିଷ୍ଟ ଲୋକେ ଆମ ଗାଁରେ ଆତଜାତ ହେଲେଣି। ସେହିପରି ଏଇ ଗତ ପନ୍ଦର କୋଡ଼ିଏ ବର୍ଷ ଭିତରେ ଯଥେଷ୍ଟ କଳା ଟଙ୍କା ଉପାର୍ଜନ କରି ଗଣ୍ଡି ବଢ଼େଇ ସ୍କୁଟର, ମଟରଂ ସାଇକେଲ, ଓ ଟ୍ରେକଗଦି ଯାନ ଆରୋହଣ କରି, ଗାଁରୁ ରାଜଧାନୀ ଓ ରାଜଧାନୀରୁ ଗାଁକୁ ଅନୁବ୍ରତେ ଯାତାୟତ ଧାଁଧପଡ଼ାଦି କରୁଥିବା ଏ ଯୁଗର କେତୋଟି ଧନୀମାନୀ ମଧ୍ୟ ଆମ ଗାଁରେ ଖୁବ୍ ଭିଡ଼ ଜାଙ୍କ ଜମେଇଲେଣି । କଲେକ୍ଟର, ଏସ୍, ପି, ଏ.ଡ଼ି.ଏମ୍, ଡ଼ି. ଏସ୍: ପି ଏବଂ ଏପରି କି ମନ୍ତ୍ରୀ ଉପମନ୍ତ୍ରୀମାନଙ୍କୁ ଜବାବ୍ ଦେଇବାଲା ଯୁବନେତା କେତୋଟି ମଧ୍ୟ ଉଦୀୟମାନ ହୋଇ ଗ୍ରାମ୍ୟ ଆକାଶରେ ବିଚିତ୍ର ରାଜନୈତିକ ଓ କୂଟନୈତିକ ତେଜୋରଶି ବିକୀରଣ କଲେଣି । ସର୍ବୋପରି ଆମ ଗ୍ରାମର ଛଅଟି ହରିଜନ ସାହିରୁ ପ୍ରାୟ ଦ୍ୱାଦଶ ସଂଖ୍ୟକ ହରିଜନ ଯୁବନେତା ପ୍ରାଦୁର୍ଭୁତ ହୋଇ ସେମାନଙ୍କର ରଡ଼ିରେ ଗ୍ରାମ୍ୟ ବାୟୁମଣ୍ଡଳକୁ ପ୍ରକମ୍ପିତ କଲେଣି । କିନ୍ତୁ ସେ ଯାହା ହେଲେ ବି–ଏଇସବୁ ଗୁଁଟିଆ ମୁଁଟିଆ ଛଳଛଦ୍ମମଯୁକ୍ତ ମହାଧୂର୍ତ୍ତ ଶୃଗାଳୋପମ ଲୋକଙ୍କ ଭିତରେ ସେ ଯୁଗର ସେହି ମହିମାବନ୍ତ ମଣିଷଙ୍କ ଭଳି ମଣିଷଟିଏ ଖୋଜି ପାଇବା ଅସମ୍ଭବ ନିଶ୍ଚୟ ।

ସେମିତି ମଧ୍ୟ ବର୍ତ୍ତମାନ ଆମ ଗାଁରେ ସେହି ସବୁ ମହାପ୍ରାଚୀନ, ମହାଉଦାର ଓ ବହୁ ରହସ୍ୟ ରୋମାଞ୍ଚପୂର୍ଣ୍ଣ ଇତିହାସସମୃଦ୍ଧ ବିଶାଳ ବଟବୃକ୍ଷମାନଙ୍କ ଭଳି ଆଉ ବନସ୍ପତିମାନେ କାହାନ୍ତି ? ଏବେ ଅବଶ୍ୟ, ଏଠି ସେଠି କେତୋଟି ଇଉକାଲିପଟାସ ଗଛ, କେତୋଟି କାଜୁବାଦାମ ଗଛ ଏବଂ ଅନ୍ତତ୍ର କେତୋଟି ଗେଡ଼ା ନଡ଼ିଆ ଗଛ ବା କୋଉଠି କେମିତି କେତୁଟା ସାହାଡ଼ା ଗଛ, ଡିମିରି ଗଛ, କରଞ୍ଜଗଛ, ନିମ୍ବଗଛ ଅଥବା କେତୁଟା କନିଅର, ଅଥବା

କେତୋଟି ଅଜ୍ଞାତ କୁଳଶୀଳ ଆମ୍ବ ବା ପଣସଗଛ କାଁଭଁ। ଉଦେ ହୋଇ ନିରସ୍ତପାଦପଦେଶେ ଏରଣ୍ଡୋଽପି ଦ୍ରୁମାୟତେ ଭଙ୍ଗୀରେ ଦଣ୍ଡାୟମାନ ରହିଛନ୍ତି । କିନ୍ତୁ ସେହି ସବୁ ମହିମାବନ୍ତ ମହୀରୁହମାନେ ଆଉ କାହାନ୍ତି ? ବିଶାଳ ବିଶାଳ ବନସ୍ପତିମାନେ କାହାନ୍ତି ? ମହାଦ୍ରୁମମାନେ କାହାନ୍ତି ? ସ୍ୱର୍ଗ-ମର୍ତ୍ତ୍ୟ ପାତାଳକୁ ଏକାଠି କରୁଥିବା ମହାମହା ପାଦପମାନେ ଆଉ କାହାନ୍ତି ?

ସେକାଳେ, ଅର୍ଥାତ୍ ଗ୍ଳକିଶି ପଇଁଗ୍ଳକିଶିବର୍ଷ ତଳେ, ଆମ ଗାଁର ବିଭିନ୍ନ ସ୍ଥାନରେ ଯେଉଁସବୁ ବଟମହୀରୁହମାନେ ବିରାଜମାନ କରୁଥିଲେ, ସେ ପ୍ରତ୍ୟେକଙ୍କର ଥିଲା ସ୍ୱତନ୍ତ୍ର ନାମ ଓ ସ୍ୱକୀୟ ବ୍ୟକ୍ତିତ୍ୱ । ଏବଂ ସେହି ସବୁ ନାମ ଓ ବ୍ୟକ୍ତିତ୍ୱ ପଛରେ ମଧ୍ୟ ଥିଲା ପ୍ରତିଟି ବଟବୃକ୍ଷର ସ୍ୱକୀୟ ମର୍ଯ୍ୟାଦା ପୂର୍ଣ୍ଣ ଇତିହାସ ।

ଉଦାହରଣ ସ୍ୱରୂପ—ଆମ ପ୍ରାଚୀ ନଦୀତଟ ପୂରବର୍ତ୍ତୀ ଶ୍ମଶାନ ଭିତରେ ଯେଉଁ ଗଗନସ୍ପର୍ଶୀ ଅଥଚ ଘନ-ଗହଳ-ପ୍ରଳମ୍ବ ଡାଳପତ୍ର ଏବଂ ଭୂମିସ୍ପର୍ଶୀ ଓହଳମାନ ସୁଶୋଭିତ, ନାନାଦି ବିହଙ୍ଗ ସମାକୁଳ ବଟବୃକ୍ଷଟି ଅବସ୍ଥାନ କରୁଥିଲେ—ତାଙ୍କର ନାମ ଥିଲା "ସତୀବର" । ସେ ମହାତ୍ମାଙ୍କର ବୟସ ଥିଲା ଛଅଶତବର୍ଷରୁ କିଞ୍ଚିତ ଊର୍ଦ୍ଧ୍ୱ ଏବଂ ସେହି ବରଗଛ ମୂଳେ ଆମଗ୍ରାମର ବିଖ୍ୟାତ ନାଗଗୋତ୍ରୀ କ୍ଷତ୍ରୀବଂଶର ଅବତଂଶ ସ୍ୱରୂପ ଜମିଦାର ଶ୍ରୀ ଶ୍ରୀ ମହାପାତ୍ର ଗୋକୁଳଚନ୍ଦ୍ର ରାୟ ଚୂଡ଼ାମଣିଙ୍କର ତରୁଣୀ ରୂପସୀ ପତ୍ନୀ ସତୀ ଶିରୋମଣି କମଳକୁମାରୀ ତାଙ୍କ ପତିଙ୍କ ଚିତାଗ୍ନି ଭିତରକୁ ପ୍ରବେଶ କରି ଆତ୍ମାହୁତୀ ଦେଇ ଆଦ୍ୟାସତୀ ହୋଇଥିଲେ । ଏବଂ ମୁଁ ଯାହା ଶୁଣିଛି—ତାଙ୍କ ପରେ ପରେ ସେଇ ସତୀକୁଳ ଲଲାମଭୁତା—ସ୍ୱାମୀସହଗାମିନୀ ପ୍ରାତଃ ସ୍ମରଣୀୟା କମଳକୁମାରୀଙ୍କର ମହତୀ ସତୀକୀର୍ତ୍ତିକୁ ସ୍ମରଣ କରି ଓ ତଦ୍ୱାରା ଅନୁପ୍ରାଣିତା ହୋଇ, ବିଭିନ୍ନ ସମୟରେ ବିଭିନ୍ନ ଜାତି ଓ ବଂଶର ପ୍ରାୟ ଛଅଜଣ ପତିପରାୟଣା ସ୍ତ୍ରୀ ତାଙ୍କ ମୃତସ୍ୱାମୀଙ୍କ ଚିତାରେ ଝାସ ଦେଇ ସତୀ ହୋଇଥିଲେ । ସେଥିପାଇଁ ମୋ ପିଲାଦିନ ପର୍ଯ୍ୟନ୍ତ ସମସ୍ତେ ଏହି ବଟମହାତ୍ମାଙ୍କୁ ଯେପରି ସମ୍ମାନ ସମୀହାଦି ପ୍ରଦର୍ଶନ କରୁଥିଲେ । ସେହିପରି

ଭୟ ମଧ୍ୟ କରୁଥିଲେ । ଖରଦିନର ଉଦୁଉଦିଆ ଦି'ପ୍ରହରେ ବା ଯେକୌଣସି ରାତ୍ରିର ଅର୍ଦ୍ଧରାତ୍ରିରେ କେହି ତା' ମୂଳକୁ ଏକୁଟିଆ ଯିବାକୁ ସାହାସ ମଧ୍ୟ କରୁ ନ ଥିଲେ । କେହି କେହି ଗୁଣୀଗାରେଡ଼ୀଆ ତାନ୍ତ୍ରିକ ଅଥବା ସାଧୁ ସନ୍ନ୍ୟାସୀ ବୈଷ୍ଣବ ରାତି ଅର୍ଦ୍ଧରେ ବହୁ ଦୂରରେ ଥାଇ ସେହି ବରଗଛ ଡାଳରେ ଉପବିଷ୍ଟା ସାତୋଟି ସତୀସ୍ତ୍ରୀଙ୍କର ଜ୍ୟୋତିର୍ମୟୀ ରୂପକୁ ସନ୍ଦର୍ଶନ କରିଥିବାର ଜନଶ୍ରୁତି ମଧ୍ୟ ଆମ ପିଲାଦିନେ ଆମ ଗାଁରେ ଆବାଳବୃଦ୍ଧ-ବନିତାଙ୍କର ବିଶ୍ୱାସକୁ ଭିତ୍ତିକରି ପ୍ରତିଷ୍ଠିତ ଥିଲା । ସେହି ନିଘଂଚ ବିସ୍ତୃତ ବଟ ଦ୍ରୁମର ବିଶାଳଗଣ୍ଡି ଭିତରେ ଥିବା ସାତୋଟି ଗଭୀର ଅନ୍ଧକାରଛନ୍ନ ଓ ଭୀତି ସଞ୍ଚାରକ ରହସ୍ୟ ପରିପୂର୍ଣ୍ଣ କୋଟରକୁ ଏହି ସପ୍ତସତୀଙ୍କର ପ୍ରେତାତ୍ମା ମାନଙ୍କର ନିବାସ ସ୍ଥଳୀବୋଲି ମଧ୍ୟ ସେ କାଳର ସ୍ୱନାମଧନ୍ୟ ଗୁଣିଆ ଗୁଣାର୍ଣ୍ଣବ ଶ୍ରୀଅନନ୍ତପ୍ରହରାଜ ଆମ ଗ୍ରାମର ତତ୍କାଳୀନ ପ୍ରେତତତ୍ତ୍ୱାନୁସନ୍ଧିତ୍ସୁ ଅଥବା ଅଲୌକିକ ଜଗତର ରହସ୍ୟ-ରୋମାଞ୍ଚ-ତଥ୍ୟ-କୁତୂହଳୀ କେତେକ ବଡ଼ବଡ଼ ମଣିଷଙ୍କ ପାଖରେ ପ୍ରତ୍ୟକ୍ଷ ପ୍ରମାଣ ଦେଇ ସାବ୍ୟସ୍ତ କରି ସାରିଥିଲେ ।

କିନ୍ତୁ ଏଇ କୋଡ଼ିଏ ପଚିଶବର୍ଷ ତଳେ, ଯେତେବେଳେ ଗ୍ରାମଗୋଷ୍ଠି ଯୋଜନା ପ୍ରଚଳନ ହେଲା—ସେତେବେଳେ ସେଠାରେ ଅଫିସରମାନଙ୍କ କ୍ୱାଟରସ୍ ତୋଳା ହେବ ବୋଲି ମଶାଣୀର କିୟଂଦଂଶ ସରକାର ଅଧିକାର କଲେ—ଏବଂ ଏହି ବରଗଛଟି ହଣାଯିବା ଲାଗି ଯେପରି ସ୍ଥିର ହୋଇଗଲା ଆମ ଗ୍ରାମ୍ୟ ବଜାରଟିକୁ ଯେ କୌଣସି ପ୍ରକାରେ ଏକ ସହରୀ ବଜାରରେ ଶୀଘ୍ର ପରିଣତ କରିଦେବା ପାଇଁ ଯେଉଁ ସବୁ ଯୁବକ ଗ୍ରାମ୍ୟ ବ୍ୟାଙ୍କ୍ରୁ ଋଣ ନେଇ ଗୁହା, ପାନ, ଷ୍ଟେସନାରୀ ଓ ହୋଟେଲ ଜଳଖିଆ ଦୋକାନମାନ ଖୋଲି ପ୍ରାଣାନ୍ତକ ଉଦ୍ୟମରେ ଲାଗି ପଡ଼ିଥିଲେ, ସେମାନେ ଗୁହାଁ ଗୁହାଁ ନିଜେ ଓ କୁରାଢ଼ିଆମାନଙ୍କୁ ଡାକି, ମାତ୍ର ଆଠଟି ଘଣ୍ଟା ଭିତରେ ସେହି ବିଶାଳ ପୁରାଣ ସତୀ ମହିମାଧାରୀ ଅଭିଜାତ ବଟବୃକ୍ଷଟିକୁ ହାଣି କାଟିକୁଟି ସଫାକରି ଟ୍ରକ୍ ଓ ଶଗଡ଼ରେ ଲଦି ବଜାର ଭିତରକୁ ବୋହି ନେଇ ଜାଳି ଦେଲେ ଓ ଆଉ କେତେକ ବଜାରରେ କୋଠା ତୋଳିବା ଉଦ୍ଦେଶ୍ୟରେ ଇଟାଭାଟି ଭିତରେ ପୁରାଇ ଜାଳିଦେଲେ । ବର୍ତ୍ତମାନ ସେହି ସ୍ଥାନରେ ବି. ଡ଼ି. ଓ. ମହୋଦୟଙ୍କର

କ୍ୱାଟର୍ସଟି ବିଦ୍ୟମାନ ରହି ଆମ ଗ୍ରାମର ନାଗରିକ-ସୌଧ-ମହିମା-ଅଭିବୃଦ୍ଧିରେ କଥଂଚିତ୍ ସାହାଯ୍ୟ କରୁଅଛି ।.........

ସେହିପରି ଗାଁର ହାଇସ୍କୁଲ ପଛପଟକୁ "ମିଶ୍ରତୋଟା" ନାମରେ ପ୍ରଥିତ ଆମ୍ରୋଦ୍ୟାନ ସମ୍ମୁଖସ୍ଥ ବାଲିକୁଦର ପାଦଦେଶରେ ଅପୂର୍ବ ଲାଳିତ୍ୟ ଓ କମନୀୟ ଶ୍ୟାମକାନ୍ତି ବିସ୍ତାର କରି-ନିତ୍ୟ ଲୀଳାସଙ୍ଗିନୀ ରୂପେ ବେତୋଟି ସାହାଡ଼ା, ପୁନ୍ନାଗ, କୋଚିଲା ଓ କରଞ୍ଜାଦି ସ୍ୱଳ୍ପକାୟା ବିଟପୀମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଯେଉଁ ବଟପୁରୁଷୋତ୍ତମ ବିରାଜମାନ କରୁଥିଲେ ସେ"ଲବଣୀଖିଆ ବଟ" ନାମରେ ସ୍ୱନାମଧନ୍ୟ ହୋଇଥିଲେ । ତାଙ୍କ ଶୀର୍ଷ ଦେଶରେ ଚନ୍ଦ୍ରତାରକାଲାଞ୍ଛିତ ଧଳା ଓ ନାଲି ରଙ୍ଗର ଦୁଇଟି ପତାକା ମଧ୍ୟ ଉଡ୍ଡୀୟମାନ ହେଉଥିଲା । ଆମ ଗ୍ରାମର ସର୍ବବିଶିଷ୍ଟ ଇଷ୍ଟଦେବତା ଓ ପ୍ରାୟଇ ଗଙ୍ଗବଂଶ ଅମଳରୁ ପ୍ରତିଷ୍ଠିତ ବୋଲି ପ୍ରଖ୍ୟାପିତ ହରିହରମୂର୍ତ୍ତି ଶ୍ରୀଶ୍ରୀ ଶୋଭନେଶ୍ୱର ମହାଦେବଙ୍କର ବିଜେ ପ୍ରତିମା ଶ୍ରୀଶ୍ରୀ ଗୋବିନ୍ଦ ଗୋପାଳ ଜୀଉ ପ୍ରତିବର୍ଷ ଦୋଳପୂର୍ଣ୍ଣିମା ଦିନ ମହାସମାରୋହରେ ଏଠାକୁ ବିମାନରେ ଆସି, ଏଇ ବରଗଛମୂଳେ ବାଲୁକାବେଦୀ ଉପରେ ଉପବେଶନ କରି ଆମ ଗ୍ରାମର ଗୋପାଳମାନଙ୍କ ଦ୍ୱାରା ପ୍ରସ୍ତୁତ ଓ ଅର୍ପିତ ସରଲବଣୀ ଭୋଗ ଉପଭୋଗ କରିଥାନ୍ତି ଏବଂ ଗହ୍ମାପୂର୍ଣ୍ଣିମା ଦିନ ଶ୍ରୀଶ୍ରୀ ଗୋବିନ୍ଦଗୋପାଳ ଜୀଉଙ୍କର ଜ୍ୟେଷ୍ଠସହୋଦ୍ର ଶ୍ରୀଶ୍ରୀ ବଳରାମଙ୍କର ବିଜେ ପ୍ରତିମା ଏଠାକୁ ବିଜେ କରି ବାଲିରେ ତିଆରି ହୋଇଥିବା ଏକ ବିରାଟ ସେତୁକୁ ଉଲ୍ଲଂଘନ କରି "ଗହ୍ମାଡ଼ିଆ" ଉତ୍ସବ ସମାହିତ କରୁଥିଲେ । ଆମ ଗ୍ରାମର ବଳଭଦ୍ର ଗୋତ୍ରୀ ମାସ୍ତାନ ବ୍ରାହ୍ମଣମାନେ ଏହି ଉତ୍ସବଟିର ଯାବତୀୟ ଭୋଗରାଗ ଓ ଖର୍ଚ୍ଚବାର୍ଚ୍ଚ ବହନ କରିଥାନ୍ତି । ସେଦିନ ଏଠାରେ ଛେନା, ଏଣ୍ଡୁରୀ ଓ ମଣ୍ଡାପିଠା ଭୋଗ ଲାଗୁଥିଲା ଓ ମହୋତ୍ସବ ହେଉଥିଲା । ଆଶ୍ଚର୍ଯ୍ୟର କଥା ଏହିକି ଯେ ଏହି ବୃକ୍ଷଟି ଥିଲା ଚିରଶ୍ୟାମଳ ଓ ବର୍ଷକ ବାରମାସ ପଦ୍ମରାଗମଣି ସଦୃଶ୍ୟ ଉଜ୍ଜଳ ରକ୍ତବର୍ଣ୍ଣର ବଟଫଳଗୁଡ଼ିକ ଦ୍ୱାରା ଏହା ଅତ୍ୟନ୍ତ ଶୋଭମାନ ଦିଶୁଥିଲା—ଏବଂ ଅସଂଖ୍ୟ ହରଡ଼ଚଢ଼େଇ ଶୁଆ, ବଣୀ, ହଳଦୀବସନ୍ତ, ଚୂଳିଆ ଓ ଗୁଣ୍ଡୁଚିମୂଷା ମାନେ ସର୍ବଦା ଏହି ବୃକ୍ଷରେ ଆତଜାତ ହୋଇ ଏହାକୁ ନିତ୍ୟ କଳରବ-ମୁଖରିତ କରି ରଖୁଥିଲେ । ଗାଈଆଳ ପିଲାମାନେ ଖରାବେଳେ ଏହାର

ଶୀତଳ ଛାଇରେ ଡାଳମାଙ୍କୁଡ଼ି ଆଦି ଖେଳୁଥାନ୍ତି—ଏବଂ ଏହି ଦିବ୍ୟବୃକ୍ଷରେ ଭୂତପ୍ରେତ ପିଶାଗ୍ରଦିଙ୍କର ଉପଦ୍ରବ ନଥିବାରୁ ଖରଦିନର ରତିମାନଙ୍କରେ ବାଟୋଇମାନେ ଏହା ମୂଳେ ବାଲୁକାଶଯ୍ୟାରେ ଖୁବ୍ ନିର୍ଭୟ ଶାନ୍ତି ଆଉ ଆନନ୍ଦରେ ନିଦ୍ରା ଯାଆନ୍ତି । ଏହି କାରଣରୁ ଗ୍ରାମବାସୀଗଣ ଏଇ ବୃକ୍ଷଟିକୁ ଖୁବ୍ ଭକ୍ତି କରୁଥିଲେ ଏବଂ ଗଲା ଅଇଲା ବେଳେ ନମସ୍କାର କରି ସମୀହ ପ୍ରକାଶ କରୁଥିଲେ । ପୂଣ୍ୟକାର୍ତ୍ତିକମାସରେ ପ୍ରତିଦିନ ସକାଳୁ ଗୁପ୍ତଗଙ୍ଗା ସ୍ୱରୂପିଣୀ ପୂଣ୍ୟତୋୟା ପ୍ରାଚୀନଦୀରେ ବୁଡ଼ ପକାଇସାରି ଭକ୍ତିମତୀ ପୂତହୃଦୟା ହବିଷାଳୀ ବିଧବା ବ୍ରାହ୍ମଣୀମାନେ ଘରକୁ ଲେଉଟାଣୀ ପଥରେ ସମସ୍ତେ ଏହା ମୂଳରେ ପାଣି ଟିକିଏ ଢାଳି ଦିଅନ୍ତି—ଫୁଲ କେତୋଟି ଖଞ୍ଜି ଦିଅନ୍ତି ଓ ଲିଆ ଖଣ୍ଡିଏ ବିଞ୍ଚି ଦେଇ ଗଛକୁ ପ୍ରଦକ୍ଷିଣ କରି, ମୁଣ୍ଡିଆ ମାରି ସାରି ଯେଝା ଘରକୁ ଫେରିଯା'ନ୍ତି ।

କିନ୍ତୁ ଏଇମାତ୍ର ସତର ଅଠର ବର୍ଷ ତଳେ ଆମ ଗ୍ରାମର ଉଦଣ୍ଡ କୋଦଣ୍ଡ ପ୍ରତାପୀ ଯୁବନେତା ଓ ଯୁବ ବ୍ୟବସାୟୀ କୁନା ଶତପଥୀ ତାଙ୍କ ଅଟା ଓ ଧାନକଳ ଥାପନା ପାଇଁ ଘର ତିଆରି କଲାବେଳେ ବି.ଡ଼ି.ଓ. ଏବଂ ତହସିଲଦାରଗଦି ଗ୍ରାମ୍ୟ ସରକାରୀ କର୍ତ୍ତାମାନଙ୍କୁ କୋନମତେ ହାତ କରି ଏବଂ କେତେକ ଯୁବ ପ୍ରତିବାଦୀମାନଙ୍କୁ ଦୁଇଗ୍ରରି ବୋତଲ ମାଲପାଣିରେ ସନ୍ତୁଷ୍ଟ କରି, ସେହି ଅପରୂପ ଲାବଣ୍ୟମୟ ଚିରଯୌବନ ଦିବ୍ୟ ବରଗଛଟିକୁ ଦିନେ କାଟିକୁଟି ତାଙ୍କ ଇଟାଭଟିରେ ନିଆଁ ଧରଇ ଦେଇଥିଲେ । ଏହି ନିତ୍ୟତରୁଣ ଦିବ୍ୟ ବଟବୃକ୍ଷଙ୍କର ବୟସ ଥିଲା କୁଆଡ଼େ ସାତଶତବର୍ଷରୁ କିଞ୍ଚିତ ଉର୍ଦ୍ଧ୍ୱ !

ସେମିତି, ଆମ ଗ୍ରାମର ଉତ୍ତରପୂର୍ବ କୋଣରେ ଯୋଉଠି ପୂତସଲୀଳା ଗୁପ୍ତଗଙ୍ଗା ପ୍ରାଚୀନଦୀ କ୍ରମଶଃ ପଶ୍ଚିମଦିଗ ଆଡ଼କୁ କିଛିବାଟ ମୁହାଁଇ ଯାଇ ପୁନଶ୍ଚ ଦକ୍ଷିଣପୂର୍ବ ଆଡ଼କୁ ଗତିକରି ବହି ଯାଉଛନ୍ତି—ଠିକ୍ ସେହି ଜାଗାରେ ଯେଉଁସବୁ ଢେଉ ଢେଉକା ବାଲି ପର୍ବତମାନ ଦୃଶ୍ୟ ହୁଏ —ଏବଂ ଯାହାର ସାମାନ୍ୟ ଦୂରକୁ ସୁପ୍ରାଚୀନ ବିଖ୍ୟାତ ପାଣ୍ଡବକୁଦ ମଠ ଅବସ୍ଥିତ—ଏବଂ ଯେଉଁ ସ୍ଥାନଟି ପୂର୍ବେ ବନଜନ୍ତୁ ସମାକୁଳ ମହାଅରଣ୍ୟ ଥିଲା ବୋଲି ଜନଶ୍ରୁତି କହେ—ଏବଂ ଯୋଉଠି ପାଣ୍ଡବମାନେ ବନବାସ

ସମୟରେ କିଛିକାଳ ବିଶ୍ରାମ କରିଥିଲେ ଓ ବାବନାସୁର ନାମକ ଭୀଷଣକାୟ ଦୈତ୍ୟକୁ ଭୀମସେନ ବଧ କରି ଯାହାର ବିଶାଳ ଶରୀରକୁ ଭୂମିତଳେ ସମାଧି ଦେଇଥିଲେ ବୋଲି ଏହି ବିସ୍ତୃତ ସମୁଚ୍ଚ ବାଲୁକାସ୍ତୂପ ଗୁଡ଼ିକ ସୃଷ୍ଟି ହୋଇଛି ବୋଲି କିମ୍ବଦନ୍ତୀ ରହି ଆସିଛି—ସେହିଠାରେ ଆଗେ ଥିଲା ପଞ୍ଚବଟୀ ନାମକ ଆଶ୍ରମ । ପାଞ୍ଚଟି ବିଶାଳ ବଟବୃକ୍ଷ ସେଠାରେ ପ୍ରାୟ ପାଞ୍ଚ ଏକର ବାଲୁକାଞ୍ଚଳକୁ ଅଧିକାର କରି ପ୍ରାୟ ତିନିହଜାର ବର୍ଷ ଧରି ସେଠାରେ ବଂଶ ବିସ୍ତାର କରତଃ ଏକ ଭୀଷଣ ରହସ୍ୟମୟ ବଟାରଣ୍ୟ ସୃଷ୍ଟି କରିଥିଲେ । ସେହି ବଟାରଣ୍ୟର ଅଭ୍ୟନ୍ତର ପୁଣି ଅସଂଖ୍ୟ ଓହଳ ଏବଂ ବିଗଟ ବିଗଟ ଉଇହୁଙ୍କା ଦ୍ୱାରା ଏବଂ ବିଭିନ୍ନ ପ୍ରକାର କଣ୍ଟକାକୀର୍ଣ୍ଣ ଲଟାଗୁଳ୍ମାଦି ଦ୍ୱାରା ଏପରି ଅଭେଦ୍ୟ ହୋଇଥିଲା ଯେ ଦିନ ଦୁଇପ୍ରହରେ ସୁଦ୍ଧା ତା' ଭିତରେ ପ୍ରବେଶ କରିବା ସମ୍ଭବପର ନଥିଲା । ପୁଣି ସେହି ଦୁର୍ଗମବଟାରଣ୍ୟ ଭିତରେ ହରେକରକମର ସାପ, ଗୋଧି, ବିଲୁଆ ଓ ନେଉଳ ଜାତୀୟ ପ୍ରାଣୀ ବାସ କରୁଥିଲେ । ମୋ·ପିଲାଦିନ ପର୍ଯ୍ୟନ୍ତ ତାହା ତଦ୍ରୁପ ରହସ୍ୟାଚ୍ଛନ୍ନ ଅଗମ୍ୟ ଓ ଅକ୍ଷତାବସ୍ଥାରେ ରହିଥିଲା ।

ଏହି ପଞ୍ଚବଟୀ ସମ୍ବନ୍ଧେ ସେକାଳେ ଏହି କିମ୍ବଦନ୍ତୀ ପ୍ରସିଦ୍ଧ ଥିଲା ଯେ, ସେଠାରେ କୁଆଡ଼େ ଗୋରେଖନାଥ, ମହେନ୍ଦ୍ରନାଥ, ଲୋହିନାଥ, ବାଉଳିନାଥ ଓ କପାଳୀନାଥ ନାମକ ପଞ୍ଚ ଅବଧୂତ ସନ୍ନ୍ୟାସୀ କଳିଯୁଗ ଆରମ୍ଭ କାଳରୁ ଘୋର ତପସ୍ୟାରେ ରତ ଅଛନ୍ତି—ଏବଂ ବହୁ ଛୋଟ ଛୋଟ ଉଇହୁଙ୍କା ଭିତରେ ଯେଉଁ ପାଞ୍ଚଟି ବିଶାଳ ଉଇହୁଙ୍କା ସେଠାରେ ଗମ୍ଭୀରଭାବେ ପାଖକୁ ପାଖ ଲାଗି ବିଦ୍ୟମାନ ଥିଲେ—ସେହି ପାଞ୍ଚଟି ଉଇହୁଙ୍କା ଭିତରେ କୁଆଡ଼େ ସେହିମାନେହିଁ ଗୋପ୍ୟାନ ହୋଇ ରହିଥିଲେ । ଆମେ ପିଲାମାନେ ତା' ଭିତରେ କେବେ ବି ଭରସି କରି ପ୍ରବେଶ କରୁ ନଥିଲୁ । କାହାକୁ ମଧ୍ୟ ସାହାସ କରି ତା' ଭିତରେ ପ୍ରବେଶ କରି ଶୁଖିଲା କାଠିକୁଟା ସଂଗ୍ରହ କରୁଥିବାର ଆମେ କସ୍ମିନ୍‌କାଳେ କେବେ ଦେଖିନାହୁଁ । ଆମେ କେବଳ ଦୂରରୁ ଥାଇ ପଞ୍ଚବଟୀର ସେହି ଭୀଷଣ ରୋମାଞ୍ଚକର ରହସ୍ୟକୁ ଉପଭୋଗ କରୁଥିଲୁ । କେତେଥର ସେଇସବୁ ଉଇହୁଙ୍କା ଉପରେ ମହା ମହା ଭୀଷଣାକୃତି ଗୋଧିମାନଙ୍କୁ ନିର୍ଭୟରେ ବିଚରଣ କରୁଥିବାର ଲକ୍ଷ୍ୟ କରିଛୁ ।

କିନ୍ତୁ କେବେ ହେଲେ ବି ଆଉ କିଛି ଅଲୌକିତ ଦୃଶ୍ୟ ଆମ ଆଖିରେ ପଡ଼ିନାହିଁ ।

ତେବେ ଆମ ଗାଁ ବାଉରୀ ସାହିର ଭେଇକୁଳ ଶିରୋମଣି ଅଲେଖ ଧର୍ମାବ-ଲମ୍ବୀ ରହସ୍ୟବାଦୀ ଜଟାଜୁଟଧାରୀ ଶ୍ରୀ ଉଛବା ଭେଇଙ୍କ ସ୍ୱଚୁଣ୍ଡରୁ ମୁଁ ଶୁଣିଛି ଯେ, ସେ ନିଜେ ସଂକ୍ରାନ୍ତି ଓ ଅମାବାସ୍ୟା ରାତିରେ କିଛି ଫଳମୂଳ ଧରି ଏକୁଟିଆ ସେଠାକୁ ଯାନ୍ତି ଏବଂ ସେତେକ ସେହି ସବୁ ତପସ୍ୟାରତ ପଞ୍ଚଅବଧୂତ ସନ୍ୟାସୀଙ୍କୁ ସମର୍ପଣ କରି ସେମାନଙ୍କ ସହିତ କଳିଯୁଗ କେବେ ଶେଷ ହେବ, ସତ୍ୟଯୁଗ କେବେ ପ୍ରକାଶିବ, ଏବଂ ଅଲେଖ ନିରଞ୍ଜନ ଶୂନ୍ୟ-ପୁରୁଷ କେବେ କୋଉଠି ଉଦେ ହୋଇ କିପରି ଭବେ ମ୍ଲେଚ୍ଛ ସଂହାର କରିବେ—ଏସବୁ ଆଗତ ଭବିଷ୍ୟ ସମ୍ବନ୍ଧେ ଆଳାପ ଆଲୋଚନା କରି ସାରି ରାତି ପାହିବା ପୂର୍ବରୁ ଫେରି ଆସନ୍ତି । ଏସବୁ ଶୁଣି, ମୋର ସେହି ରହସ୍ୟ ରୋମାଞ୍ଚଭରା ପଞ୍ଚବଟୀ ବଣ ଭିତରକୁ ଯାଇ ସବୁକଥା ନିଜେ ପ୍ରତ୍ୟକ୍ଷ କରିବା ପାଇଁ ପ୍ରବଳ ଉତ୍କଣ୍ଠା ଥିଲେ ବି, ଏବଂ ଏ ସମ୍ବନ୍ଧେ ପିଲାଦିନୁଁ ମୁଁ ଖୁବ୍ ଦୁଃସାହସୀ ହୋଇଥିଲେ ବି, ମୋର ଦୁର୍ଭାଗ୍ୟକୁ ମୁଁ ତା' ଭିତରକୁ ଏକୁଟିଆ, ବା ବିଭିନ୍ନ ବିଷୟରେ ବିଚକ୍ଷଣ କାରପଟ୍‌ଦାର ମୋର ବାଲ୍ୟ-ସଙ୍ଗୀମାନଙ୍କୁ ଧରି କେବେ ବି ଯାତାୟତ କରିପାରି ନାହିଁ ।

......ଏବଂ ମୋର ଯଥେଷ୍ଟ ପରିଣତ ବୟସରେ ଦିନେ ସତକୁସତ ମଁ ସେଇ ପଞ୍ଚବଟୀ ଭିତରକୁ ଯେବେ ଯିବା ଲାଗି ପ୍ରସ୍ତୁତ ହେଲି—ଶୁଣିଲି ଯେ ସେଠାରେ ବର୍ତ୍ତମାନ ଆଉ ସେଇସବୁ ବଟବୃକ୍ଷମାନେ ନାହାନ୍ତି । ସେଇ ଉଇ ହୁଙ୍କାଗୁଡ଼ିକ ବି ଆଉ ନାହିଁ । କାରଣ, ସେବାଟେ କେନାଲ ଯିବାଲାଗି ଭୂଇଁ ପ୍ରସ୍ତୁତ କଲାବେଳେ ସେଇ ଅରଣ୍ୟଗୁଡ଼ିକୁ କାଟିକୁଟି ଦିଆଗଲା ଏବଂ ଯାହା ବା ଅବଶିଷ୍ଟ ଥିଲା—ସେଥିରେ କେତେକ ହରିଜନ ଯାଇ ଜବରଦସ୍ତି ଘରଦ୍ୱାର ବନାଇ ରହିଗଲେଣି । ଏବେ ତା' ପାଖକୁ ଲାଗି ଗୋଟିଏ ମଦ ଖଟି ମଧ୍ୟ ହେଲାଣି ।

ଏ ସବୁ ମହାପ୍ରାଚୀନ ଐତିହ୍ୟସମୃଦ୍ଧ ପ୍ରଖ୍ୟାତ ବଟବୃକ୍ଷମାନଙ୍କ ବ୍ୟତୀତ ସ୍ୱଳ୍ପଖ୍ୟାତି ସମ୍ପନ୍ନ ଅଥଚ ମାନ୍ୟଗଣ୍ୟ ଆଉ କେତୋଟି ନାତି-

ପ୍ରାଚୀନ ବଟବୃକ୍ଷ ମଧ୍ୟ ଆମ ଗ୍ରାମରେ ଥିଲେ—ସେଗୁଡ଼ିକ ମଧ୍ୟରୁ ମୋରମନେ ଥିବା କେତୋଟି ହେଲେ—"ସାଧନାବଟ" "ବାମନବଟ" ଓ "ଆଲମବଟ" । ସାଧନା ବଟ ନାମରେ ଆଖ୍ୟାତ ବଟବୃକ୍ଷଟି ଅବସ୍ଥାନ କରୁଥିଲେ ଆମ ଗାଁର ଗହୀର ବିଲ ଭିତରେ ଗୋଟିଏ ବିସ୍ତୃତ ଆଉ ଢିପା ଗୋଚର ଦଣ୍ଡା ଉପରେ । ଖୁବ୍ ବେଶୀ ଉଚ୍ଚା ନହେଲେ ବି ବେଶ୍ ପ୍ରଲମ୍ବ ଆଉ ଗହଳ ଶାଖା ପତ୍ର ଓହଳରେ ଛତ୍ରିପ୍ରାଏ ଶୋଭ ପାଉଥିଲେ ଏହି ବଟ ମହାରାଜ । ଏହା ମୂଳରେ ଦୁଇଟି ପ୍ରାଚୀନ ଉଇହୁଙ୍କା ଥିଲେ—ଏବଂ ତା' ପାଖାପାଖି ଆଉ କେତୋଟି ସବୁଜପତ୍ର ସମାଛନ୍ନ ସାନ ସାନ ଏଣ୍ତେଣୁ ଗଛବୃଛ ମଧ୍ୟ ଥିଲେ । ସେମାନଙ୍କ ଠାରୁ ସାମାନ୍ୟ ତଫାତ୍‌ରେ ଗୋଟାଏ ଖୁବ୍ ବଡ଼ ଉଇ ହୁଙ୍କା ଥିଲା ଏବଂ ସେଇ ହୁଙ୍କାକୁ ବହୁ ଛୋଟ ଛୋଟ କଣ୍ଟକାକୀର୍ଣ୍ଣ ଗୁଳ୍ମ ଆବୃତ କରି ରଖିଥିଲେ । ସେହି ହୁଙ୍କା ଉପରେ ପୁଣି ଗୋଟିଏ ବଙ୍କା ବରୁଣଗଛ ପେଟେଇ ରହିଲା ପରି ଛିଡ଼ା ହୋଇଥିଲା । ମୋର ପିଲାଦିନେ ଏହା ମୂଳରେ ଛୋଟ କୁଡ଼ିଆଟିଏ କରି ତା' ଭିତରେ ଜଣେ ବାବାଜୀ ରହୁଥିଲେ । ତାଙ୍କର ନାମ ଥିଲା ବାନ୍ଦର ଦାସ ବାବା । ସେ କୁଆଡ଼େ ହନୁମାନସାଧନା କରିଥିଲେ । ଏବଂ ସେହି ବଳରେ କେତେକ ଅଲୌକିକ ସିଦ୍ଧି ମଧ୍ୟ ଅର୍ଜନ କରିଥିଲେ । କାହାର ଗାଈ ବାଛୁରୀ ଛେଳୀ ମେଣ୍ଢା ଅଥବା କିଛି ଜିନିଷ ହଜିଗଲେ କି ଚୋରି ଗଲେ, ସେ ବାନ୍ଦରବାବାଙ୍କ ପାଖକୁ ଯାଇ ଜଣାଣ କଲେ—ସେ ତୁରନ୍ତ ତାର ଉଦନ୍ତ କରି ଦେଉଥିଲେ । ମୁଁ ବାନ୍ଦର ଦାସ ବାବାଙ୍କୁ ବହୁବାର ଦେଖିଛି । ସେ ଖଣ୍ଡିଏ କୌପୀନ ମାତ୍ର ପିନ୍ଧୁଥିଲେ । ଚିପଣ୍ଡ କଳା ଶରୀର—ଖୁବ୍ ଗେଡ଼ା—କିନ୍ତୁ ବଳିଷ୍ଠ ସ୍ଥୂଳ ଦେହ—କଳା ଦେହ ତମାମ ରମାନନ୍ଦୀ ତିଳକ । ମୁଣ୍ଡଟିରେ ବୋଝେ ଜଟା । କପାଳରେ ଚନ୍ଦନ ଓ ସିନ୍ଦୂର ଲେପିତ ହୋଇଥାଏ । ବାବାଜୀ ହରଦମ୍ ଚିଲମ ଶୋଷି ଗଞ୍ଜାଇ ଖାଉଥିଲେ ଏବଂ ସେହି ବରଗଛର ଗୋଟିଏ ନଇଁଲା ଅଥଚ ଦମ୍ଭିଲା ମୋଟା ଡାଳ ଉପରେ ବସି ଆଉ ଗୋଟିଏ ତଦ୍ରୂପଡାଳକୁ ଆଉଜି ଗେଧ ମାଙ୍କଡ଼ଟିଏ ଭଳି ଦିନଜାକ ବିତାଉଥିଲେ ତଳକୁ ଗୋଡ଼ଲମ୍ବାଇ ।

ଭକ୍ତମାନେ କେବଳ ଫଳମୂଳ ଧରି ତାଙ୍କ ପାଖକୁ ଯାଉଥିଲେ ଏବଂ ବାବାଜୀ ସେହି ବରଗଛର ଡାଳରେ ବସି ଭକ୍ତମାନଙ୍କ ପ୍ରଶ୍ନର ଉତ୍ତର ଦେଉଥିଲେ

ବା ମନୋବାଞ୍ଛା ପୂର୍ଣ୍ଣ କରୁଥିଲେ । ଏହି ବାବାଜୀଙ୍କର କେତେକ ଶିଷ୍ୟ ମଧ୍ୟ ଆଖପାଖ ଗ୍ରାମରୁ ଆସି ସେଠି ଜୁଟୁଥିଲେ । ବିଶେଷତଃ ଅମାବାସ୍ୟା ପୂର୍ଣ୍ଣିମା, ସଂକ୍ରାନ୍ତି ଓ ବିଶିଷ୍ଟ ଦିନମାନଙ୍କରେ । ବରଗଛ ନିକଟରେ କୂଅଟିଏ ମଧ୍ୟ ଥିଲା । ଏବଂ ସେହି ସେହି ବିଶିଷ୍ଟ ଦିନମାନଙ୍କରେ ରାତିସାରା ସେଠାରେ ଭଜନ ସଂକୀର୍ତ୍ତନନାଦି ହେଉଥିଲା ଓ ଗୋଟିଏ ଛୋଟକାଟର ମହୋତ୍ସବ ମଧ୍ୟ ହେଉଥିଲା । ସାଧନାବଟ ସମ୍ବନ୍ଧେ ଏକଥା ମଧ୍ୟ ପ୍ରଚଳିତ ଥିଲା ଯେ, ଏହା ମୂଳେ ଚୁଲୀ ଜାଳି ଯାହା ରାନ୍ଧିବ, ତାହା ସ୍ୱର୍ଗର ଅମୃତ ଭଳି ସୁସ୍ୱାଦୁ ହେବ ଏବଂ ଏଠାରେ ରାନ୍ଧିଲା ବେଳେ ପରିବାପତ୍ରକୁ ଚୋପା ଛଡ଼ାଯିବ ନାହିଁ—ତର୍କାରୀ ଛୁଙ୍କ ହେବ ନାହିଁ—ମସଲା ପଡ଼ିବ ନାହିଁ—କିମ୍ବା ହିସାବ କରି କେହି ଅନ୍ଧଣିଆ ରାନ୍ଧିବେ ନାହିଁ । ତା'ମାନେ, ଯେତିକି ରନ୍ଧା ହୋଇଯିବ—ଯେତେଲୋକ ଆସି ପହୁଞ୍ଚିବେ, ଖାଇ ସରିବେ । ମୋର ଦୁର୍ଭାଗ୍ୟ, ମୁଁ ସେଇ ଅମୃତୋପମ, ଅଲୌକିକ ରନ୍ଧଣା ଖାଇନାହିଁ । ଏହି ସାଧନାବଟ ସମ୍ବନ୍ଧେ ଆଉ ଗୋଟିଏ କିମ୍ବଦନ୍ତୀ ହେଲା—ଆମ ଗହୀର ପ୍ରବଳ ବଢ଼ିପାଣିରେ ଉବୁଟୁବୁ ହେବ ପଛେ, ଏ ଟାପୁକୁ ପାଣି ପହୁଁଞ୍ଚିବ ନାହିଁ । ଏପରିକି, ଘୋର ପ୍ରଳୟକାଳରେ ବି ଯେତେବେଳେ ସାରା ପୃଥୀ ସପ୍ତସମୁଦ୍ରର ଜଳରେ ଉବୁଟୁବୁ ହେବାର ବେଳା ଆସିବ, ସେତେବେଳେ ସାଧନାବଟ ଓ ତାର ଏହି ପବିତ୍ର ଟାପୁ ଖଣ୍ଡିକ ସେହିମିତି ସେଇ ମହାପ୍ରଳୟକାଳୀନ ଜଳରାଶିର ଅସ୍ପୃଶ୍ୟ ହୋଇ ରହିଥିବ । ଆମେ ଏକଥା ମଧ୍ୟ ଶୁଣିଥିଲୁ ଯେ, ସ୍ୱୟଂ ପବନସୁତ ଶ୍ରୀରାମଭକ୍ତ ବଜରଙ୍ଗବାଲେ ହନୁମାନଜୀ ତ୍ରେତାଯୁଗରେ ସୀତାଙ୍କୁ ଠାବ କରିବା ପାଇଁ ଲଙ୍କାକୁ ଯିବାବେଳେ କିଛି ମୁହୂର୍ତ୍ତ ପାଇଁ ସେହି ଏକୁଟିଆ ହୁଙ୍କା ପାଖ ବରୁଣଗଛଟି ଉପରେ ବିଶ୍ରାମ ଉଦ୍ଦେଶ୍ୟ ବସିଯିବା ମାତ୍ରେ, ବିଚରା ବରୁଣବିଟପୀଟି ପବନସୁତଙ୍କ ପ୍ରକାଣ୍ଡ ଦେହଭାରରେ ନଇଁ ପଡ଼ିଲା ଓ କୁଜା ହୋଇଗଲା । ସେଥିଯୋଗୁଁ ସେହି କପି-ହର୍ଯକ୍ଷ ଆପଣା ଦେହକୁ ମୂଷିକପ୍ରାୟ ସଂକୁଚିତ କରି ଏହି ସାଧନାବଟ ବୃକ୍ଷରେ ବିଶ୍ରାମ ନେଇଥିଲେ ମାତ୍ର ଗୋଟିଏ ମୁହୂର୍ତ୍ତ ପାଇଁ । ତ୍ରେତାଯୁଗର ସେହି ସମୟରେ କୁଆଡ଼େ ଆମର ଗାଁଗଣ୍ଡା ସବୁ ସମୁଦ୍ରମୟ ହୋଇ ରହିଥିଲା । କେବଳ ତା' ଭିତରେ ସ୍ଥଳଭାଗ ହିସାବରେ ଏଇ ଛୋଟ ଟାପୁଟିହିଁ ବିଦ୍ୟମାନ ଥିଲା ।

ଶ୍ରୀ ହନୁମାନଜୀଙ୍କ ପ୍ରସାଦରୁ ସେତିକିବେଳେ ତାଙ୍କ ଆଜ୍ଞାରେ ଏଠାରୁ ଶତ ଯୋଜନ ପର୍ଯ୍ୟନ୍ତ ସମୁଦ୍ର ଘୁଞ୍ଚିଗଲା । ଏବଂ କ୍ରମଶଃ ବର୍ତ୍ତମାନର ଅସ୍ତରଙ୍ଗ ଓ କାକଟପୁର ଠାରୁ ଆମ ଗ୍ରାମ ପର୍ଯ୍ୟନ୍ତ ଅଞ୍ଚଳ ସ୍ଥଳ ଭାଗରେ ପରିଣତ ହେଲା ।

ଏହି କିମ୍ବଦନ୍ତୀରେ ସୁପ୍ରତିଷ୍ଠ ସେହି ସାଧନାବଟ ଉପରେ ଗୋଟିଏ ଧଳା କନାର ପତାକା ସର୍ବଦା ଫରଫର ହୋଇ ଗହିର ପବନରେ ଉଡୁଥାଏ । ଏବଂ ସେ ବାଟେ ଗତାଗତ କରୁଥିବା ବାଟୋଇମାନେ ବଟବୃକ୍ଷ ଆଡ଼କୁ ଚାହିଁ ନମସ୍କାର କରନ୍ତି । ଏବଂ ସେବାଟେ କେହି ପରିବାଘର ନେଇ ଗଲା ବେଳେ କିମ୍ବା ଆଖୁ ଶଗଡ଼ ନେଇ ଗଲାବେଳେ, ଅଥବା ଯାହା କିଛି ନେଇ ଗଲାବେଳେ କିଛି ନା କିଛି ସେଠାରେ ଅର୍ପଣ କରିଯାନ୍ତି । ଏହି ବଟବୃକ୍ଷଟି ତିନିଯୁଗ ଭୋଗ କରି ସାରିଲାଣି ଏବଂ ସତ୍ୟଯୁଗ ଶେଷ ହେବା ପର୍ଯ୍ୟନ୍ତ ରହିଥିବ ବୋଲି ବାନ୍ଦରଦାସ ବାବା ଦୃଢ଼କଣ୍ଠରେ ବାରମ୍ବାର ହୁଁକାର ନାଦ କରି କହିଛନ୍ତି । ଏକଥା ସେତେବେଳର ଭକ୍ତମାନଙ୍କ ମୁଖରୁ ବହୁବାର ମୁଁ ଓ ଅନ୍ୟମାନେ ଶୁଣିଥିଲୁ ।......

କିନ୍ତୁ ସ୍ୱୟଂ ବାନ୍ଦରଦାସ ବାବା କୋଉଦିନ ସେଠାରୁ କୁଆଡ଼େ ହଠାତ୍ ଅନ୍ତର୍ଦ୍ଧାନ ହୋଇଗଲେ—ସେ ଖବର ଆମେ କେହି ଜାଣି ପାରି ନଥିଲୁ । ତାଙ୍କର କେହି କେହି ଶିଷ୍ୟ ଅବଶ୍ୟ କିଛିଦିନ କହିବାର ଶୁଣାଗଲା ଯେ ସ୍ୱୟଂ ପବନସୁତ ହନୁମାନଜୀଙ୍କ ଡାକରରେ ସେ କିସିନ୍ଧା ଚାଲିଗଲେ ।......ହାୟ ହାୟ ! ମାତ୍ର ଏଇ ଦଶପନ୍ଦର ବର୍ଷ ତଳେ......ଆମ ଗ୍ରାମର ବଳପୂର୍ବା ହରିଜନମାନେ ସେଇ ଗୋଚର ଟାପୁଟିକୁ ଅଧିକାର କରି ଘର ବନାଇଗଲେ ଏବଂ ସେହି ବରଗଛଟିକୁ ହାଣିହୁଣି ତା ସିଅ ସୁଦ୍ଧାକୁ ତାଡ଼ି ଜାଳିଦେଲେ । ଏବଂ ସେହି ଟାପୁରେ କାନ୍ଦୁଲ ମଞ୍ଜି ବୁଣି ପ୍ରଚୁର କାନ୍ଦୁଲ ଶସ୍ୟ ଅମଳ କଲେ ।......

ଅତଃପର ମୁଁ ଆମ ଗ୍ରାମର "ବାମନବଟ" ନାମରେ ପ୍ରଖ୍ୟାତ ଥିବା ସେହି ପୂଣ୍ୟଶ୍ଳୋକ ବଟବୃକ୍ଷଟିର ଇତିବୃତ୍ତ ସମ୍ବନ୍ଧେ ସାମାନ୍ୟ କିଛି ସ୍ମୃତି-ଚାରଣା କରି ମୋର ଏହି ପ୍ରବନ୍ଧଟିର ଅସଲ ନାୟକ "ଆଲମ ବଟ" ବୃକ୍ଷଟିର ଐତିହାସିକ ବା ପୌରାଣିକ କିମ୍ବଦନ୍ତୀ ସମ୍ବନ୍ଧେ ମୋର ପାଠକପାଠିକାମାନଙ୍କୁ

କହିବାକୁ ଗ୍ରହୁଁଛି—କାରଣ ତାହାହିଁ ମୋର ଏତେବଡ଼ ପ୍ରବୀଣ ବୟସ ସୁଲଭ ପ୍ରଗଲ୍‌ଭତା ବା ବାଗ୍ଜଳତା ପୂର୍ଣ୍ଣ ଭୂମିକାର ଶେଷ ଲକ୍ଷ୍ୟ ବୋଲି ଅବା କାହିଁକି କହିବା ମୂଳଲକ୍ଷ୍ୟ ବୋଲ ।

ତେବେ ଆଲମବଟ ବିଷୟରେ କହିବା ପୂର୍ବରୁ "ବାମନବଟ"ର ଇତିବୃତ୍ତଟିକୁ ସାମାନ୍ୟରେ ପ୍ରଦକ୍ଷିଣ କରି ଯିବା ଉଚିତ ହେବ । କାରଣ ଏଇ "ବାମନବଟ"ର ଶେଷକଥାଟି ଅନ୍ୟ ବଟମାନଙ୍କର ଶେଷକଥା ଭଳି ଏତେ ଅକିଞ୍ଚିତ୍‌କର ଯବନିକା ବା ଧ୍ୱଂସଲୀଳାର ନିଦାରୁଣ ବୃତ୍ତାନ୍ତ ମାତ୍ର ନୁହେଁ ।

ଶଂସିତ "ବାମନବଟ" ଆମ ଗାଁର ପଧାନସାହି ଓ ବଢ଼େଇ ସାହିର ମଝି-ଅଗଳରେ ବିରାଜମାନ କରୁଥିଲେ । ନାମାନୁସାରେ ଏହି ବୃକ୍ଷଟି ମଧ୍ୟ ଥିଲେ ଖୁବ୍ କ୍ଷୁଦ୍ରକାୟ ମାତ୍ର ବେଶ୍ ଝଙ୍କାଳିଆ । ବୟସରେ ଅନ୍ୟ ବଟମାନଙ୍କ ସଦୃଶ ଏତେ ପ୍ରାଚୀନ ନହେଲେ ବି, ଅନ୍ତତଃ ତିନିଶତବର୍ଷ ବ୍ୟାପି ସେ ଯେ ବୃକ୍ଷଲୀଳା ସମ୍ପାଦନ କରିଥିଲେ । ସେଥିରେ ଅବଶ୍ୟ କୌଣସି ସନ୍ଦେହ ନାହିଁ । ପଧାନସାହିଆ ସେ ବୃକ୍ଷମୂଳରେ ଗୋଟିଏ ଇଟାଗ୍ରନ୍ଦିନୀ ବନାଇ ଦେଇଥିଲେ । ଏହି ବଟବୃକ୍ଷଟିର ଡାଳରୁ କେତୋଟି ଓହଳ ଲମ୍ବି ଆସି ଭୂଇଁ ସ୍ପର୍ଶ କରିଥିଲେ । ଏହାର ଡାଳଗୁଡ଼ିକ ବେଶ ସରଳ ଅଥଚ ଖୁବ୍ ଦୃଢ଼ ଥିଲ । ସନ୍ଧ୍ୟାବେଳେ ଗ୍ରାମବାସୀମାନେ ସେଇ ଚଉତରା ଉପରେ ଆସି ବସୁଥିଲେ । ଖରଦିନେ ଦ୍ୱି'ପ୍ରହରେ କିମ୍ବା ରାତିରେ ବହୁ ଲୋକ ସେ ବୃକ୍ଷମୂଳେ ଶୋଇ ବେଶ୍ ସୁଖନିଦ୍ରା ଉପଭୋଗ କରୁଥିଲେ । ଏବଂ ଏହି ବଟବୃକ୍ଷଟି ଗ୍ରାମ ମଝିରେ ଥିବାରୁ ଏବଂ ଅତି ଉଚ୍ଚ ହୋଇ ନଥିବାରୁ—ଏବଂ ଏହା ପଛରେ ଖୁବ୍ ଭୀତିବିହ୍ୱଳ ରହସ୍ୟ ରୋମାଞ୍ଚକର କିମ୍ବଦନ୍ତୀ ନଥିବାରୁ—ଏହି ନାତି ଉଚ୍ଚ ଅଥଚ ଘନଘଞ୍ଚ ସବୁଜ ପତ୍ରଗହଳ ବାମନ ବଟବୃକ୍ଷଟି ଆମ ପିଲମାନଙ୍କ ପକ୍ଷରେ ଥିଲ ଖୁବ୍ ପ୍ରିୟ ଓ ଖୁବ୍ ଆପଣାର । ସତେ କି ଆମ ଠାରୁ ମାତ୍ର କେତେବର୍ଷ ବୟସରେ ବଡ଼ ଓ ମାତ୍ର ଇଁଚେ ଦେଢ଼ଇଞ୍ଚ ଅଧିକା ଡେଙ୍ଗା ସ୍ନେହୀ ସାଙ୍ଗ କକା ବା ମାମୁଁଟିଏ ! ଆମେ ସେ ଗଛରେ ମନଇଚ୍ଛା ନିର୍ଦ୍ୱନ୍ଦରେ ଚଢୁଥିଲୁ । ଡାକିମାଙ୍କୁଡ଼ି ଖେଳୁଥିଲୁ । ଏବଂ ତା ଚଉତରା ଉପରେ ଖରଦିନେ ଖରବେଳେ ଡ୍ରାମା କରୁଥିଲୁ ବାଳୀସୁଗ୍ରୀବ ଯୁଦ୍ଧ—ଭୀମବକାସୁର

ଯୁଦ୍ଧ କିମ୍ବା କେଦାର ଗୌରୀ କିମ୍ବା କଂାଚନବାଳା ଗୀତାଭିନୟ । ସତକଥା କହିଲେ–ଆମେ ପିଲାମାନେ ଏଇ ବାମନବଟ ବୃକ୍ଷଟିକୁ ଖୁବ ଭଲ ପାଉଥିଲୁ । କିଛି କିଛି ସମ୍ମାନ ସମୀହ ମଧ୍ୟ କରୁଥିଲୁ ।

କିନ୍ତୁ ଦିନେ ଏହି ବଟମହାତ୍ମାଙ୍କୁ ଏକ ମହତ୍ କାର୍ଯ୍ୟରେ ପ୍ରାଣବିସର୍ଜନ କରିବାକୁ ପଡ଼ିଲା । କଥାଟି ହେଲା–ସେ ବର୍ଷ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ନବକଳେବର ଲାଗି ଆମ ଗାଁ ପାଖରେ ଗୋଟିଏ ଗାଁରେ ବଡ଼ଠାକୁର ବଳଭଦ୍ରଙ୍କ ପାଇଁ ଦାରୁ ଚିହ୍ନୋଟ ହୋଇ ଯଥା ଦିବସରେ ଯଥା ରୀତିରେ ଖୁବ୍ ଭଜନ କୀର୍ତ୍ତନ ସହ ଦାରୁ ମଧ୍ୟ କର୍ତ୍ତିତ ହେଲେ ଏହି କର୍ତ୍ତିତ ବ୍ରହ୍ମଦାରୁ କେବଳ ବରକାଠରେ ନିର୍ମିତ ଶଗଡରେ ଲଦିତ ହୋଇ ପୁରସ୍ତମ ଯିବା କଥା ।

ଆମ ଗାଁ ପଧାନସାହିର ସବୁଠାରୁ ବୁଢ଼ା ଭାଇଗୀ ପଧାନଙ୍କୁ ଆମ ଗ୍ରାମର ଗାର୍ଜନ ସ୍ୱରୂପିଣୀ ଗ୍ରାମଦେବତୀ ମା କୁତାମଚଣ୍ଡୀ ଦିନେ ପାହାନ୍ତାପ୍ରହର ନିଦରେ ସପନେଇଲେ–କହିଲେ–

"ଆରେ ଭାଇଗୀ ! ବଡ଼ଠାକୁର ସାଆନ୍ତଙ୍କର ବ୍ରହ୍ମଦାରୁ ବୁହାହୋଇ ଯିବ ପୁରସ୍ତମ । ବରକାଠରେ ଶଗଡ଼ ତିଆରି ହେବ । ତେମନ୍ତ ପୂଣ୍ୟବନ୍ତ ବଟ ମୁଁ ତ ମୋ ଇଲାକାରେ ଆଉ କୋଉଠି ଦେଖୁନାହିଁ । ବାମନର ବେଳା ପହୁଁଚି ଗଲାଣି । ସେତ ପୂର୍ବଜନ୍ମରେ ଜଣେ ଗନ୍ଧର୍ବ ଥିଲା । ତା'ର ନା ଥିଲା ତରଣୀସେନ ଗନ୍ଧର୍ବ ଥରେ ମର୍ତ୍ତ୍ୟକୁ ଆସି ପ୍ରାଚୀନଦୀର ମଣିକର୍ଣ୍ଣିକା ଘାଟରେ ତାର ସ୍ତ୍ରୀମାନଙ୍କ ସହିତ ଉଲଗ୍ନ ହୋଇ ଜଳକେଳି କରୁଛି–ଏମନ୍ତ ସମୟରେ ନୀଳାମ୍ବର ନାମକ ବାମନବ୍ରାହ୍ମଣ ସେହି ଘାଟକୁ ସ୍ନାନ କରିବାକୁ ଆସିଲା । ତାକୁ ସେହି କେଳି ବେଳାରେ ଦେଖି ଉଲଗ୍ନ ତରଣୀସେନ ଗନ୍ଧର୍ବ ଲଜ୍ୟା କ୍ରୋଧରେ ଗୋଇଠା ମାରିଲା । ବାମନବ୍ରାହ୍ମଣ ତା' କମଣ୍ଡଳୁରେ କୁଶପାଣି ରଖି ଅଭିଶାପ ଦେଲା–ଆରେ ଆରେ ଗର୍ବିତା ଗନ୍ଧର୍ବ ! ମୋତେ ଆଜି ବାମନ ଭାବି ଅବଜ୍ଞାକରି ଗୋଇଠା ମାରିଲୁ ! ମୋ ଅଭିଶାପ ଫଳରେ ତୁ ଆଜିଠାରୁ ବାମନ ବଟବୃକ୍ଷଟିଏ ହୋଇ ଏଇ ଗ୍ରାମରେ ତିନିଶହବର୍ଷ ଯାଏ ବିରାଜମାନ କରିବୁ । ତା' ପରେ ଯେବେ ଦାରୁବ୍ରହ୍ମ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର

ନବକଳେବରକୁ ବଡ଼ଠାକୁର ବଳଭଦ୍ରଙ୍କ ଦାରୁ ଏଠାରୁ ତୋ''କାଠରେ ତିଆରି ଶଗଡ଼ରେ ବୁହାହୋଇ ଯିବେ—ସେବେ ଯାଇ ତୁ ବୃକ୍ଷଜନ୍ମରୁ ମୁକ୍ତି ପାଇ ପୁନଶ୍ଚ ସ୍ୱର୍ଗପୁରକୁ ଫେରିବୁ । ଆରେ ଭଇଗୀ ! ଆଉ ଡେରି କରନା । ଜଗନ୍ନାଥଙ୍କର ବାଡେନୀ ଆସିଛି । ତୁ ଯା'—ଗାଁ ବାଲାଙ୍କୁ ଡାକି ଏ ସବୁ ବୃତ୍ତାନ୍ତ କହ । ସଂକୀର୍ତ୍ତନ କରି କାଠୁରିଆମାନଙ୍କୁ ଡାକି ଏହାର ଡାଳମାନକାଟି ତାକୁ ମୁକ୍ତି ଦେ । ସେ ସ୍ୱର୍ଗକୁ ଯାଉ— ।"

ଭଇଗୀ ପ୍ରଧାନ ସହସା ନିଦ୍ରାରୁ ଉଠି ଗାଁ ଜାକର ଲୋକଙ୍କୁ କୁତାମଚଣ୍ଡୀଙ୍କର ଏହି ଆକସ୍ମିକ ସ୍ୱପ୍ନାଦେଶ ଜଣାଇଲେ । ସାଙ୍ଗେସାଙ୍ଗେ ସକାଳୁ ସକାଳୁ ଲୋକମାନେ ଏକାଠି ହୋଇ ଭକ୍ତି-ଉଚ୍ଛ୍ୱାସରେ ହରିବୋଲ ଶବ୍ଦରେ ଉଚ୍ଛୁଳି ଉଠିଲେ । ତୀର୍ଲା ଲୋକମାନଙ୍କର ହୁଳହୁଳି ଶବ୍ଦରେ ଗାଁ ଦାଣ୍ଡ କମ୍ପି ଉଠିଲା । କେହି କେହି ଶଂଖ ଫୁଙ୍କିଲେ । ସେଇଠୁ ସମସ୍ତେ ଗାଧୋଇ ପାଧୋଇ ଆସି ସେ ବରଗଛ ମୂଳେ ଜମାହେଲେ । କେହିକେହି ତା' ମୂଳରେ ଲମ୍ବ ହୋଇ ବୃକ୍ଷରୂପୀ ଗନ୍ଧର୍ବକୁ ଦଣ୍ଡବତ କଲେ । କୀର୍ତ୍ତନୀୟାମାନେ ଆସି ସଂକୀର୍ତ୍ତନ ଆରମ୍ଭ କରିଦେଲେ । କୁରଢିଆମାନେ ଆସିଗଲେ । ମଥାରେ ଚନ୍ଦନ ସିନ୍ଦୁର ଓ ବେକରେ ଫୁଲମାଳ ପକାଇ ପୁରୋହିତଙ୍କ ମଂତ୍ରଧ୍ୱନି ଭିତରେ ସେହି ବୃକ୍ଷମହାତ୍ମାଙ୍କୁ ସାତଥର ପ୍ରଦକ୍ଷିଣ କରି ପ୍ରଣାମ ପୂର୍ବକ ତାଙ୍କ ଶରୀରରେ କୁରଢୀ ଆଘାତ ଆରମ୍ଭ କରିଦେଲେ । ସାତଜଣ କୁରଢିଆଙ୍କ କୁରଢୀ ଘେଟର ଶବ୍ଦ ଏକ ସାଥିରେ ଏକ ଅଦ୍‌ଭୁତ ଶବ୍ଦତରଙ୍ଗ ସୃଷ୍ଟି କରୁଥାଏ । ଏବଂ ବାରଂବାର ସମବେତ ନରନାରୀ ବାଳକ ବାଳିକାଙ୍କ ତୁମୂଳ ହରିବୋଲ ଶବ୍ଦରେ ଗାଁ ଦାଣ୍ଡ ଫାଟି ପଡ଼ୁଥାଏ । ଆମ ଗ୍ରାମର ସବୁଠାରୁ ବୃଦ୍ଧ, ପ୍ରବୀଣ, ପଣ୍ଡିତ ଓ ଶୁଦ୍ଧମନ୍ତ ସର୍ବପୂଜ୍ୟ ଶ୍ରୀ ବୃନ୍ଦାବନ ମିଶ୍ରେ ସେହି ବଟଙ୍କ ଉଦ୍ଦେଶ୍ୟରେ ହାତଯୋଡ଼ି ଅଶ୍ରୁସଜ୍ଜଳ କଣ୍ଠରେ ଆବେଗ କଂପିତ ସ୍ୱରରେ କହୁଥାନ୍ତି—ଧନ୍ୟ ଧନ୍ୟ ଧନ୍ୟ ଧନ୍ୟ ହେ ଗନ୍ଧର୍ବବୀର ! ବାମନବ୍ରାହ୍ମଣର ଅଭିଶାପ ପାଇ ବୃକ୍ଷ ହେଲ । ସେହି ବୃକ୍ଷ ରୂପରେ ଥାଇ ପୁଣି ଏମନ୍ତ କି ତପସ୍ୟା କଲ ଯେ ତୁମର ଦାରୁଶରୀର ପୁଣି ମହାପ୍ରଭୁ ବଡ଼ଠାକୁରଙ୍କ ବ୍ରହ୍ମଦାରୁଙ୍କୁ ବହନ କରିବ ! ଆହା ! ଆହା ! ପ୍ରଭୁଙ୍କର କି କୃପା! ଧନ୍ୟ ହେ ଗନ୍ଧର୍ବବୀର ଚରଣୀସେନ ! ଧନ୍ୟ ଧନ୍ୟ ! ଆହା ! ଏ ଆକ୍ଷି କଣ

ନ ଦେଖୁଛି ଟି !! ଧନ୍ୟ ଧନ୍ୟ ଆହେ ନୀଳାଚଳ ନାଥ !! ହରି ହରି – ହରି ହରି । ହରି ବୋଓଓଓଲ !!!

ମୁଁ ବୃନ୍ଦାବନ ମିଶ୍ରଙ୍କ ପାଖରେ ଠିଆ ହୋଇଥାଏ । ସାତଟି କୁରାଢ଼ୀମାଡ଼ରେ ପଠା ପଠା ହୋଇ ଛିଡ଼ି ପଡ଼ୁଥିବା ଆମର ପରମ ସ୍ନେହଶୀଳ ପ୍ରିୟ ସାଙ୍ଗସଦୃଶ କକା ବା ମାମୁଁ ସ୍ୱରୂପୀ ବାମନବଟଙ୍କ ଉଦ୍ଦେଶରେ ହାତଯୋଡ଼ି କାନ୍ଦୁଥାଏ । ଗ୍ରାମର ସ୍ତ୍ରୀ ଲୋକମାନେ କାନ୍ଦୁଥାନ୍ତି । ବୃଦ୍ଧଲୋକ କାନ୍ଦୁଥାନ୍ତି । କେହି କେହି ମହାନ୍ ପୂଣ୍ୟବନ୍ତ ବଟକଙ୍କ ଉଦ୍ଦେଶରେ ଭୂମିଉପରେ ସାଷ୍ଟାଙ୍ଗ ହୋଇ ଦଣ୍ଡବତ କରୁଥାନ୍ତି । ସମସ୍ତଙ୍କ ପାଟିରୁ ଧନ୍ୟଧନ୍ୟ ପଦ ବାହାରୁଥାଏ । କେହି କହୁଥାନ୍ତି–ଧନ୍ୟଧନ୍ୟ ହେ ବଟ ମହାତ୍ମା ! କାହା ପାଟିରୁ ବାହାରୁଥାଏ–ଧନ୍ୟ ଧନ୍ୟ ହେ ଗନ୍ଧର୍ବବୀର ! ଦଶହଳ ଝାଂଜ ମାଡ଼ରେ ଆକାଶ କଂପୁଥାଏ–ପାଞ୍ଚୁଟା ଦକ୍ଷିଣ ମୃଦଙ୍ଗ ଶବ୍ଦରେ ମେଦିନୀ ଥରୁଥାଏ–ସଂକୀର୍ତ୍ତନ ଗ୍ଭଲିଥାଏ–ଘନଘନ ହରିବୋଲ ହୁଳହୁଳି ପଡ଼ୁଥାଏ–ସାତୋଟି କୁରାଢ଼ିଆଙ୍କର ଘନଘନ କୁରାଢ଼ୀ ଚୋଟରେ ମହାପୂଣ୍ୟବନ୍ତ ବାମନବଟ ସ୍ୱରୂପୀ ଗନ୍ଧର୍ବବୀର ତରଣୀସେନଙ୍କ ଶରୀର ପଗପଗ ହୋଇ ଖସି ପଡ଼ୁଥାଏ । ଆକାଶରେ କୁଆମାନେ ମେଳି ହୋଇ କା କା କରି ଚକର ଦେଉଥାନ୍ତି–ବଣିଚଢ଼େଇମାନେ କିଚିରିମିଚିରି ହେଉଥାନ୍ତି– ସାରା ଗାଁ ର ଆଖିରୁ ଲୁହ ବହୁଥାଏ । ଅଳପ ସମୟ ଭିତରେ ବରଗଛଟିର ସମସ୍ତ ଡାହି କଟାହୋଇ ତଳେ ପଡ଼ିଲା । କୁରାଢ଼ିଆମାନେ ଡାହିଗୁଡ଼ିକୁ ପଗ ପଗ କରି ପୃଥକ ଭାବେ ଥୋଇଲେ । ତିନିଶତବର୍ଷରୁ ଉର୍ଦ୍ଧ୍ୱ କାଳ ବାମନବଟମୂଳର ଖରା ନଦେଖିଥିବା ମାଟି ଆଉ ଚଉତରାଟି ପ୍ରଥମଥର ପାଇଁ ଖରା ଦେଖିଲା ।

ତା'ପରେ ପରେ ବଢ଼େଇମାନେ ସେହି ଡାହିରେ ଗୋଟାଏ ଶଗଡ଼ ତିଆରି କରିଦେଲେ । ଯଥା ସମୟରେ ସେହି ଶଗଡ଼ରେ ବଡ଼ଠାକୁର ଶ୍ରୀ ଶ୍ରୀ ବଳଭଦ୍ରଙ୍କ ବ୍ରହ୍ମଦାରୁ ମହାସମାରୋହରେ ବୁହା ହୋଇଗଲେ ପୁରସ୍ତମ......

...ଏବଂ ସବୁଠାରୁ ଆଶ୍ଚର୍ଯ୍ୟ କଥା ହେଲା–ସତକୁସତ ସେହି ଦିନଠାରୁ ବାମନ ବଟ ଆପେ ଆପେ ମଳିନ ପଡ଼ି ଆସିଲେ– ଓ କ୍ରମେ କ୍ରମେ ଶୁଖି ଶୁଖି ଯାଇ

ଶେଷକୁ ମରିଗଲେ । କିନ୍ତୁ ସେହି ପବିତ୍ର ବଟବୃକ୍ଷର ଅବଶିଷ୍ଟ ଶୁଖିଲା କାଠକୁ କେହି ନେଇ ନିଜଘରେ ଜାଳିଲେ ନାହିଁ । ଆମ ଗ୍ରାମର ମହାପ୍ରାଚୀନ ପାତାଳଫୁଟା ଲିଙ୍ଗ ଶ୍ରୀ ଶ୍ରୀ ଶୋଭନେଶ୍ୱର ମହାଦେବଙ୍କ ବାର୍ଷିକ ମହୋତ୍ସବ ଗନ୍ଧଣାରେ ସେହି କାଠସବୁ ଚୂଲୀ ଅହିଆରେ ଜଳା ଯାଇଥିଲା ଏବଂ ତାର ପାଉଁଶକୁ ଭକ୍ତିମାନ ଲୋକେ ସଂଗ୍ରହ କରି ଆଣି ନିଜ ଶରୀରରେ ବୋଳି ହୋଇଥିଲେ ।.........

ପାଠକେ ! ଏହି ସବୁ ମହିମାବନ୍ତ ବଟବୃକ୍ଷମାନଙ୍କ ସମ୍ବନ୍ଧେ ଏତେକଥା ଶୁଣିଲେ । ମାତ୍ର ମୋର ଏହି ପ୍ରବନ୍ଧଟିର ନାୟକ ସଦୃଶ "ଆଲମବଟ" ବୃକ୍ଷଙ୍କ ସମ୍ବନ୍ଧେ ମୋର ସ୍ୱାଭବିକ ବାଗ୍ମଲତା ଦୋଷରୁ ମୁଁ ଏଯାବତ୍ ପଦୁଟିଏ ବି କହିନାହିଁ । ଏବେ ତା'ହେଲେ ଶୁଣିବା ହେଉ—

ଆମ ଗ୍ରାମରେ ପ୍ରାଚୀ ନଦୀର ଦକ୍ଷିଣପୂର୍ବ ପଟକୁ ଯୋଉ ବାଲିକୁଦମାନ ରହିଛି—ଏବଂ ଯାହା ଉପରେ ବର୍ତ୍ତମାନ ଡାକ୍ତରଖାନା ଓ ଗ୍ରାମମଙ୍ଗଳ କେନ୍ଦ୍ରର କୋଠାଗୁଡ଼ିକ ଠିଆ ହୋଇଛନ୍ତି—ଠିକ ଚା'ରି ଦକକୁ ବଜାର ଓ ପଠାଣବସ୍ତି ଆଡ଼ୁ ଯୋଉ ରାସ୍ତାଟି ଆସି ଆମର ଗ୍ରାମଦେବତୀ ମହା ମହିମାମୟୀ କୁଚାମଚଣ୍ଡୀଙ୍କ ମନ୍ଦିର ବାଟଦେଇ ଗହୀର ଆଡ଼କୁ ମୁହାଁଇ ଯାଇଛି—ସେହି ରାସ୍ତାର ଠିକ୍ ମଧ୍ୟସ୍ଥଳୀରେ—ମାନେ ଠିକ୍ କେଉଟସାହିର ବାରିପଟକୁ ଯେଉଁ ବିଶାଳ ପ୍ରାଚୀନ ବଟବୃକ୍ଷଟି ତାଙ୍କର ସହସ୍ର ଡାଳ ଏବଂ ଓହଳ ବିସ୍ତାର କରି ଗୋଟିଏ ମନୋରମା ଅଶ୍ୱତ୍ଥ ବୃକ୍ଷ ସହିତ ଦେହ-ସଂଲଗ୍ନ ହୋଇ ଶୋଭମାନ ହୋଇଥିଲେ—ତାଙ୍କର ଡାକନାମ ଥିଲା—"ବାଗୁଡ଼ୁଗୁଡ଼ୁ" ବରଗଛ ଏବଂ ସମ୍ଭ୍ରାନ୍ତ ନାମଟି ହେଲା—"ଆଲମବଟ" । ପ୍ରତିବର୍ଷ ରଜ ତିନିଦିନ କାଳ ଏହି ବୃକ୍ଷମୂଳେ ଆମଗ୍ରାମର ଯୁବକମାନେ ଦଳଦଳ ହୋଇ ବାଗୁଡ଼ି ଖେଳନ୍ତି ଏବଂ ଏ ଖେଳ ଦେଖିବାକୁ ଅନ୍ୟାନ୍ୟ

ଗ୍ରାମରୁ ଶହଶହ ଲୋକ ଆସି ଏଠି ଜମା ହୁଅନ୍ତି । ସେ ସକାଶୁ ଏହାର ଡାକ୍‌ନାମ "ବାଗୁଡ଼ି ବରଗଛ" ବୋଲି ଖ୍ୟାତି ଲଭିଥିଲା । ଏହି ବୃକ୍ଷର ଅନତି ଦୂରରେ ଗାଈଗୋରୁଙ୍କ ମଶାଣୀ ଏବଂ ପ୍ରାୟ ଅଧିକାଂଶ ଦିନ ଏଠାରେ ମଲା ଗୋରୁଟିଏ ପଡ଼ି ଥିବାର ଏବଂ ତାକୁ ବିଲୁଆ, କୁକୁର ଓ ଶାଗୁଣା ମାନେ ଘେରି ରହିଥିବାର ମଧ୍ୟ ଦେଖା ଯାଇଥାଏ । ସେହି ହେତୁ ଏହି ବଟବୃକ୍ଷରେ ଅଧିକାଂଶ ସମୟରେ ଶାଗୁଣା ଓ ଚିଲ ପ୍ରଭୃତି ମାଂସାଶୀ ପକ୍ଷୀମାନେ ବସିଥିବାର ଦେଖାଯାନ୍ତି । ତା'ଛଡ଼ା, ଏହି ବିଶାଳ ବଟବୃକ୍ଷରେ କେତେକ ଗଭୀର କୋରଡ଼ ମଧ୍ୟ ଥିଲା । ଏବଂ ତା' ଭିତରେ ପେଚା, ଓ ହୁଁହାଁ ଚଢ଼େଇମାନେ ମଧ୍ୟ ରହୁଥିଲେ । ଗଛଜାକ ନାନାଦି ବଣ୍ୟଲତା ମାଡ଼ିଥାନ୍ତି ଏବଂ ଏକପ୍ରକାରର ମଲଙ୍ଗଲତା ତା' ଡାହିମାନଙ୍କରୁ ଓହଳି ଗଛ ଟିର ରହସ୍ୟମୟତାକୁ ଆହୁରି ବଢ଼ାଇ ଦେଉଥାଏ । ଏହି ବୃକ୍ଷରୁ ପାଞ୍ଚ ଛଅଟି ମୋଟା ଓହଳ ମାଟି ତଳକୁ ଭେଦି ଗଛଟିକୁ ସୁପୁତ୍ରମାନଙ୍କ ଭଳି ସ୍ତମ୍ଭ ହୋଇ ଟେକି ଧରିଥାନ୍ତି । ଏହି ବୃକ୍ଷର ଗୋଟିଏ କୋରଡ଼ରେ ଖଣ୍ଡିଏ ରହସ୍ୟମୟ ପଥର ସିନ୍ଦୂରବୋଳା ହୋଇ ରହିଥାଏ । ଏବଂ ଚାରିପଟେ କେତୋଟି କଳାକନା ବନ୍ଧା ହୋଇଥାଏ । ବୃକ୍ଷଟିର ସେହି ଅଂଶରେ କେତୋଟି ବଡ଼ବଡ଼ ଆବୁ ବାହାରି ଥାଏ—ଏବଂ ସେ ଆବୁଗୁଡ଼ିକ ଦେହରେ ବି ହଳଦୀ ଓ ସିନ୍ଦୂର ଘନ ହୋଇ ଲିପା ଯାଇଥାଏ । ଏହି ବୃକ୍ଷକୋଟର-ସ୍ଥିତ ସିନ୍ଦୂରହଳଦୀମଣ୍ଡିତ କଳାକନାବେଷ୍ଟିତ ପଥରଖଣ୍ଡିକୁ ଆମ ଗାଁବାଲା ଆଲମ୍‌ଚଣ୍ଡୀ ନାମରେ ଡାକୁଥିଲେ । ଏବଂ କେତେକ ଜାତିର ସ୍ତ୍ରୀଲୋକ ବାହା ପୁଆଣୀବେଳେ ଏଠାକୁ ଆସି ଏହି ଆଲମ୍‌ଚଣ୍ଡୀ ଠାକୁରଣୀଙ୍କ ମାନଣା କରି ମଙ୍ଗୁଳାଇ ଦେଇ ଯାଉଥିଲେ । କିନ୍ତୁ ଆମ ଉଚ୍ଚବର୍ଣ୍ଣର ଲୋକେ ଅବଶ୍ୟ ଏହି ଆଲମଚଣ୍ଡୀଙ୍କୁ କେବେ ପୂଜାପୂଜି କରୁ ନଥିଲେ । ଏହି ଗଛମୂଳେ ଅବଶ୍ୟ କେତୋଟି ପୋଡ଼ାମାଟିର ଘୋଡ଼ା, ହାତୀ ଏବଂ କଳସ ପଡ଼ିଥାଏ । ଗଛ ଦେହରେ କେତେକ ପତାକା ମଧ୍ୟ ବନ୍ଧା ରହିଥାଏ । ଦିନେ ଦିନେ ଅବଶ୍ୟ ସେହି ଗଛମୂଳେ କେତେକ କୁକୁଡ଼ାପର ଓ ହାଡ଼ଗୋଡ଼ ପଡ଼ିଥାଏ । କେତେକ ଶ୍ରେଣୀର ଲୋକ କେବେକେବେ ଏହି ଠାକୁରଣୀଙ୍କ ପାଖରେ ମାନସିକ କରି ବଳିପକାଇଥାନ୍ତି ।

କିନ୍ତୁ ମୁଁ ବା ମୋର ସାଙ୍ଗମାନେ କେହି ସେଦିନପର୍ଯ୍ୟନ୍ତ ଏହି 'ଠାକୁରଣୀଙ୍କ ସମ୍ବନ୍ଧେ ବିଶେଷ ମୁଣ୍ଡ ଖେଳାଇ ନଥିଲୁ । କିମ୍ବା ଆମର ତାଙ୍କ ସମ୍ବନ୍ଧେ କିଛି କୌତୂହଳ ମଧ୍ୟ ନଥିଲା । ଆମ ବ୍ରାହ୍ମଣ ଶାସନର କେହିକେହି ପୁରୁଖା ନୈଷ୍ଠିକ ବିଜ୍ଞ ବ୍ରାହ୍ମଣ ବରଂଚ ଆଲମ୍ ଚଣ୍ଡୀଙ୍କ ନାମ ଶୁଣିଲା ମାତ୍ରେ ନାସିକା କୁଂଚନ କରୁଥିଲେ । ଏବଂ ବାରଂବାର ଛିକାର କରି କହୁଥିଲେ— ଯାଃ ଯାଃ ! ସେ ଗୋଟାଏ ମ୍ଳେଚ୍ଛ ମହା ବିଟାଳୀ ଚଣ୍ଡୀ ! ବ୍ରାହ୍ମଣ ହୋଇ ବ୍ରହ୍ମୋପବୀତ ଧାରଣ କରି ସେ ବିଟାଳୀର ମୁଖାବଲୋକ କରିବ ? ତାକୁ ଛୁଇଁଲେ ବି ବ୍ରହ୍ମପଇତା ମାଗ ହୋଇଯିବ ।

ମୁଁ କିନ୍ତୁ ସେ ଯାବତ୍ ଏହାର ରହସ୍ୟ କିଛି ବୁଝି ପାରି ନଥିଲି । ତେବେ କେତେବାର ମୁଁ ଲକ୍ଷ୍ୟ କରିଛି—ଆମ ମୁସଲମାନବସ୍ତିର କେତେକ ପଠାଣ ସେଠି ଆସି କିଛି ସମୟ ବସନ୍ତି । କେହିକେହି କେବେକେବେ ଶିରିଣି ଭୋଗ ମଧ୍ୟ କରନ୍ତି । କେହି କେହି କୁକୁଡ଼ା ବଳି ମଧ୍ୟ ପକାଇଥାନ୍ତି । ଗାଁରେ ହଇଜା ପଶିଲେ କେତେକ ମୁସଲମାନ ଭକ୍ତ ଗୋଟିଏ ବୋଦାଛେଳୀ ଆଣି ସେ ଗଛ ମୂଳେ ବାନ୍ଧନ୍ତି ଓ ତାର ଦୁଇକାନକୁ କଷିକରି ମୋଡ଼ନ୍ତି । ସେ ବୋଦା ଭୀଷଣ ରଡ଼ି କରେ । ସେମାନଙ୍କର ଏପରି ବିଶ୍ୱାସ ଥିଲା ଯେ, ବୋଦାର ଏହି ରଡ଼ି ଶୁଣି ହଇଜାଚଣ୍ଡୀ ମୁସଲମାନ ବସ୍ତି ଭିତରକୁ ପଶିବ ନାହିଁ । ଅବଶ୍ୟ ଜଣେ ରହସ୍ୟବାଦୀ ମୁସଲମାନ ବୋଦାଟିର କାନ ମୋଡ଼ିଲା ବେଳେ ଅସ୍ପଷ୍ଟ ସ୍ୱରରେ ଉର୍ଦ୍ଦୁ ବା ଆରବୀ ଭାଷାରେ କିଛି ଗୋଟାଏ ମନ୍ତ୍ର ବୋଲୁଥିବାର ଆମେ ଦେଖିଛୁ ।

ମୁଁ ଏସବୁ ଦେଖିଛି । କିନ୍ତୁ ମୁସଲମାନମାନେ କିପରି ଗୋଟିଏ ହିନ୍ଦୁ ଠାକୁରଣୀଙ୍କୁ ଆସି ପୂଜା କରନ୍ତି—ଏହା ଏକ ବିସଦୃଶ ବ୍ୟାପାର ହୋଇ ଥିଲେ ହେଁ, ସେଦିନ ପର୍ଯ୍ୟନ୍ତ ମୁଁ ସେଥିରେ ବିଶେଷ ମୁଣ୍ଡ ପୂରାଇ ନଥିଲି ।

ଦିନକର କଥା । ମୁଁ ସେତେବେଳକୁ ଆମ ଗାଁରେ ମାଇନର ପାସ୍ କରି ସାରି ଅନ୍ୟ ଗୋଟିଏ ଗ୍ରାମରେ ହାଇସ୍କୁଲରେ ଅଷ୍ଟମଶ୍ରେଣୀରେ ପଢ଼ୁଥାଏ । ଥରେ ଦଶହରା ଛୁଟୀରେ ମୁଁ ଗ୍ରାମକୁ ଆସିଥାଏ । ସେଦିନ ଷଷ୍ଠୀ ବେଲ- ବରଣ ପୂଜା । ମୁଁ ଓ ମୋର ଦୁଇଜଣ ସାଙ୍ଗ ଆମ ବଙ୍ଗାଳୀସାହିରେ

ଦେବୀ ଦେଖି ସାରି ସନ୍ଧ୍ୟାବେଳକୁ ବଜାର ବାଟ ଦେଇ ଘରକୁ ଫେରୁଥାଉଁ । ବଜାର ଭିତରେ ମୋର ଜଣେ ପଠାଣପିଲା ସାଙ୍ଗ ସହିତ ଦେଖା ହେଲା । ସେ ବଜାରରୁ କିଛି ମିଠା ଜିନିଷ କିଣୁଥିଲା । ଆମକୁ ଦେଖି କହିଲା—ଆସ ମୋ ସାଙ୍ଗରେ । ଆଲମ୍‌ଚଣ୍ଡୀଙ୍କ ପାଖରେ ଆଜି ଆମର ଶିର୍ଣ୍ଣୀ ଭୋଗ ହେଉଛି । ଦେଖିବ—ଖାଇବ । ଆମେ ତା' ସହିତ ଆଲମ୍‌ବଟ ଯାଏ ଗଲୁ । ଦେଖିଲୁ—ସେଠାରେ କେତେକ ହରିଜନ ଓ ମୁସଲମାନ ଏକତ୍ର ହୋଇ ବସିଛନ୍ତି । ଜହ୍ନ ଆଲୁଅରେ ସ୍ଥାନଟି ବଡ଼ ରହସ୍ୟମୟ ଦିଶୁଥାଏ । କେତୋଟି ସରାରେ କିଛି ମିଠା ଜିନିଷ ଥୁଆ ଯାଇଥାଏ । ଧୂପକାଠିଗୁଡ଼ିଏ ଲଗିଥାଏ । ଦୁଇଟି ଖଜୁରୀ ତାଡ଼ିର କଳସ ମଧ୍ୟ ସେଠାରେ ରଖାଯାଇ ଥାଏ । ଆଲମ୍‌ଚଣ୍ଡୀ ଛେଳୀ କୁକୁଡ଼ାଦି ଖା'ନ୍ତି ବୋଲି ଜାଣିଥିଲି । କିନ୍ତୁ ଖଜୁରୀ ତାଡ଼ି ମଧ୍ୟ ପିଅନ୍ତି ବୋଲି ସେଦିନ ଜାଣିଲି । ପାଞ୍ଚ ଛଅଜଣ ବୟସ୍କ ଦାଢ଼ୀବନ୍ତ ମୁସଲମାନ ସେଠାରେ ବସିଥିବାରୁ ଆମ୍ଭେମାନେ ଚୁପ୍‌ଚାପ୍ ରହିଥାଉଁ । କିଛି ସମୟ ପରେ ଭୋଗରାଗ ସରିଲା ଓ ଆମ ହାତରେ କିଛି ମିଠାଇ ଭୋଗ ଦିଆଗଲା । ଆମେ ଖାଉଥାଉ—ଏବଂ ସେହି ଖାଇବା ମଝିରେ ମୁଁ ମୋର ସେହି ସାଙ୍ଗ ପଠାଣ ପିଲାକୁ ଚୁପ୍‌ଚାପ୍ ପଚାରି ଦେଲି—କିରେ ହୋସେନ୍ ! ତୁମେମାନେ ତ ପଠାଣ । ତୁମେ କେମିତି ଆମ ହିନ୍ଦୁ ଠାକୁରାଣୀଙ୍କୁ ପୂଜା କରୁଛ ? .

ମୋର ଏଇ ଧୀର କଣ୍ଠର ପ୍ରଶ୍ନଟି ସେଠାରେ ସମବେତ ଜଣେ ମୁସଲମାନ କାନରେ ପଡ଼ିଗଲା । ତାଙ୍କୁ ଆମେ ଡାକୁଥିଲୁ ଓଲୀ ମିଆଁ । ସେ ଖୁବ୍ ଫାଜିଲ ଆଉ ମିଠା ପ୍ରକୃତିର ଲୋକ ଥିଲେ । ମୁଁ ଜାଣେ—ତାଙ୍କୁ ବହୁତ ହିନ୍ଦୁ ଓ ମୁସଲମାନ ଶାସ୍ତ୍ର ମାଲୁମ ଥିଲା । ସାଧାରଣ ହିନ୍ଦୁ କି ମୁସଲମାନ ପରି ସେ ଜମା ଧର୍ମାନ୍ଧ ନଥିଲେ । ମୁଁ ଆଗରୁ ବହୁବାର ତାଙ୍କ ମୁହଁରୁ ଅନେକ ହିନ୍ଦୁ ପୌରାଣିକ କଥା ଶୁଣିଥିଲି । ସେ ମଧ୍ୟ ଆମର ଭାଗବତଟୁଙ୍ଗୀଙ୍କ ଭିତରୁ ଥିଲେ ଜଣେ । ମୁଁ ଜାଣେ ସେ ମୁସଲମାନ ହେଲେ ବି, ହିନ୍ଦୁ ପାଞ୍ଜିର ତିଥି ନକ୍ଷତ୍ର ଓ ବିଧି ନିଷେଧମାନ ପାଳନ କରୁଥିଲେ । ଏକାଦଶୀ ଦିନ ବିଲରେ ହଳ ଧରୁ ନଥିଲେ । ତାଙ୍କ ଘରେ ମଧ୍ୟ କୁଆଡ଼େ ମାର୍ଗଶୀର ମାସରେ ଗୁରୁବାର ଦିନ ମାଣ ବସୁଥିଲା । ଅଥଚ, ସେ ପ୍ରତିଦିନ ପାଞ୍ଚଥର

ନମାଜ ପଢ଼ୁଥିଲେ । ସେ ଲୋକଟି ପ୍ରତି ମୋର ଖୁବ୍ ଭଲ ଧାରଣା ଥିଲା । ମୋତେ ଦେଖିଲେ ମୋ ଆଗରେ ସତ୍ୟ ମିଥ୍ୟା, ତଥ୍ୟ ଅତଥ୍ୟ ଗପିବାକୁ ତାଙ୍କ ପାଟି ଖଲଖଲ ହେଉ ଥିଲା । ତେଣୁ ବର୍ତ୍ତମାନ ମୋର ଏହି ପ୍ରଶ୍ନଟି ଶୁଣିଲା ମାତ୍ରେ ସେ ମୋ ଆଗରେ ଶାସ୍ତ୍ର ଗପିବାକୁ ସୁଯୋଗ ପାଇଗଲେ । କିୟତ୍‌କ୍ଷଣ ପୂର୍ବରୁ ସେ ଆଲମ୍‌ଚଣ୍ଡୀଙ୍କ ପାଖେ ନୈବେଦ୍ୟ ହୋଇଥିବା ଖଜୁରୀ ତାଡ଼ିରୁ ବେଶ୍ କିଛି ପିଇଥିଲେ ବୋଲି ମଧ୍ୟ ତାଙ୍କ କଣ୍ଠସ୍ୱର ଓ କହିବା ଭଙ୍ଗୀରୁ ଜଣା ପଡୁଥିଲା । ସେ କହିଲେ—

ବୁଝିଲ ବାବୁ ! ତୁମେ ଭୁଲ ସମ୍‌ଝିଛ । ଆଲମ୍‌ଚଣ୍ଡୀ କଣ ତୁମର ହିନ୍ଦୁ ଠାକୁରାଣୀ ? ସେ ହେଲେ ଅସଲରେ ପଠାଣୀ ଠାକୁରାଣୀ ।

ମତେ କୌତୁକ ଲାଗିଲା ଯେମିତି ଉଲ୍ଲାସ ବି ଲାଗିଲା ସେମିତି । ମୁଁ ହସିହସି ପଚାରିଦେଲି—ତୁମ ପଠାଣଙ୍କର କଣ ଠାକୁରାଣୀ ଅଛନ୍ତି ?

ଓଲୀ ମିଆଁ ତାଙ୍କ ବଟୁଆରୁ ଖଣ୍ଡିଏ ପାନ ଭାଙ୍ଗୁଥିଲେ । ଗୁଆକାତିରେ ଗୁଆ କାଟ୍‌କାଟୁ କହିଲେ—ଶୁଣ ବାବୁ ! ତୁମେ ସିନା ଅଙ୍ଗରେଜୀ ପାଠ ପଢ଼ୁଛ—ହେଲେ ଶାସ୍‌ତର୍ ପୁରାଣ୍‌ର ଅସଲ୍ ଗୁମର୍ ବାତ୍ ତୁମ୍‌କୋ ମାଲୁମ୍ ନେହିଁ । ଶୁଣ ତା'ହେଲେ । ଏ ଆଲମ୍‌ଚଣ୍ଡୀ ଏଠିକି କେମିତି ଆଇଲେ ତୁମେ ଶୁଣିବ ? ସେ ବହୁତ୍ ଉମର୍ କା ବାତ୍ । ସେତେବେଳେକୁ ଆମର୍ ଯେ ଭଗବାନ୍ ଅଛିନ୍ତି—ଖୁଦାତାଲ୍ଲା—ସେ କଣ କଲେ ନା—ଭାବିଲେ—ଏତ ଆରବ୍ ଦେଶକୋ ହାମେ ଜୟ କଲୁ—ଇରାକ୍ ଇରାନ୍ କାବୁଲ୍ କାନ୍ଦାହାର୍ ସବୁ ହାମର୍ ଜୟ ହେଲା । ଏଥର ହିନ୍ଦୁସ୍ତାନ କୋ ଯିବା । ହିନ୍ଦୁସ୍ତାନକୁ ଜୟ ନକଲେ ହାମ୍‌କୁ କେହି ଖୁଦାତାଲ୍ଲା ବିସ୍‌ମିଲ୍ଲା ବୋଲି ମାନିବେ ନାହିଁ । ସେଇଠୁ ଆଲ୍ଲା କଣ କଲେ ନା ତାଙ୍କର ଘମାଘୋଟ ଫଉଜ୍ ଲସ୍କର ଲେଇ ହିନ୍ଦୁସ୍ତାନ ଉପରେ ହାମ୍‌ଲା ସୁରୁ କରିଦେଲେ । ଏଣେ କଣ ହୋଇଛି ନା ତୁମର ଯେ ଆଦିମାତା ଦେବୀ ଅଛନ୍ତି ଦୁର୍ଗାପାର୍ବତୀ—ସେ ହିମାଳୟ ପର୍ବତ ଉପରେ ତାଙ୍କର ବାହାନ ଶେର୍ (ସିଂହ) ଉପରେ ବସି ବୁଲୁଛନ୍ତି—ତାଙ୍କର ଲଜର୍ ପଡ଼ିଗଲା ଆମ ଆଲ୍ଲା ଆଉ ତାଙ୍କର ଫଉଜ୍ ଲସ୍କରଙ୍କ ଉପରେ ।

ଦୁର୍ଗାଙ୍କ ମଥାକୁ ରାଗରେ ଖୁବ୍ ହେଟିଗଲା । ସେଇଠୁ ସେ ଜଲ୍‌ଦି ତାଙ୍କର ଯେ ସ୍ୱାମୀ ମାହ୍‌ଦେବ ଅଛନ୍ତି—ତାଙ୍କ ପାଖକୁ ଯାଇ ଦେଖିଲେ ଯେ ମାହ୍‌ଦେବ କଣ କରିଛନ୍ତି ନା କଷିକରି ଦୁଦୁରମଞ୍ଜି ବାଟି ଭଙ୍ଗରେ ମିଶାଇ ପିଇଦେଇ ବସି ଢୁଲଉଛନ୍ତି—

ଦୁର୍ଗା ଯେତେ ଡାକିଲେ—ତାଙ୍କୁ ଶୁଭିଲା ନାହି । ସେ କଣ ହୋଁସରେ ଅଛନ୍ତି ଯେ ଶୁଣିବେ ? ସେଇଠୁ ଦୁର୍ଗା ତାଙ୍କର ସବୁ ଯେତେ ଯୋଉଠି ଚଣ୍ଡୀ ଚାମୁଣ୍ଡୀ ଅଛନ୍ତି—ସମସ୍ତଙ୍କୁ ଡାକି ସାଙ୍ଗରେ ଧରି ଆଲ୍ଲାଙ୍କ ସାଙ୍ଗରେ ହାମ୍‌ଲା କରିବାକୁ ବାହାରି ପଡ଼ିଲେ । ଆଲ୍ଲାଙ୍କ ସାଙ୍ଗରେ ଦୁର୍ଗାଙ୍କର ବହୁତ ଯୁଦ୍ଧ ହେଲା । ଶେଷରେ ଦୁର୍ଗା ହାରିଗଲେ । ଠାକୁରାଣୀ ହେଲେ କଣ ହେବ—ଯେତେହେଲେ ଜନାନା ଲୋକ । ଆଲ୍ଲା ହେଲେ ମର୍‌ଦ ଭଗବାନ । ସେଇଠୁ ଆଲ୍ଲା ଦୁର୍ଗାଙ୍କୁ ବନ୍ଦୀକରି ତାଙ୍କର ଡେରାକୁ ଲେଇ ଆସିଲେ । ଡେରାକୁ ଆଣି ଆଲ୍ଲା ଦୁର୍ଗାଙ୍କୁ ଭଲ କରି ଦେଖିଲେ । ଦୁର୍ଗା ସେହି ପରିକା ତାଙ୍କର ଶେର୍ ଉପରେ ଠିଆ ହୋଇଥାନ୍ତି—ଯେମିତି ତୁମେ ତୁମର ଦେବୀ ମେଢ଼ରେ ଦେଖିଛ । ଆଲ୍ଲା ତାଙ୍କର ରୂପ ଯୌବନ ଦେଖି ଖୁବ୍ ଖୁସୀ ହୋଇଗଲେ । ଭାବିଲେ—ଇସ୍ ! ହିନ୍ଦୁସ୍ଥାନ୍‌ର ଏଇ ଜନାନା ଦେବୀ କେତ୍‌ନା ସୁନ୍ଦରୀ ! ଐସି ହସିନା ହମ୍‌ନେ ହମାରି ଜନ୍ନତ ମେଁ ଭି ନହିଁ ଦେଖି ହୋଗି । (ଏମିତି ସୁନ୍ଦରୀ ମୁଁ ମୋ ସ୍ୱର୍ଗରେ ବି କେବେ ଦେଖିନାହିଁ । ) ମଗର କ୍ୟା ଶାନ୍ ହେ ଉସ୍ ହସିନେ କି ! ( କିନ୍ତୁ ଏ ସ୍ତ୍ରୀ ଲୋକଟାର କି ତେଜ ! ) ସେଇଠୁ ଆଲ୍ଲା କଣ କଲେନା—ଭଲକରି ଗୋସଲ ମୋସଲ କରି (ଗାଧୁଆ ପାଧୁଆ କରି ) ଜରିଦାର ପୋଷାକ ପିନ୍ଧି—ଆଖିରେ ସୁର୍‌ମା ଲଗାଇ ଦାଢ଼ିରେ ଅତର ମାଖି ଦୁଇହାତରେ କବୁଲ୍ କରି କରି ଦୁର୍ଗାଙ୍କ ପାଖରେ ନେହୁରା ହୋଇ କହିଲେ—"ଦେଖ ସୁନ୍ଦରୀ ! ତୁମେ ମୋର୍ ପାଖ୍‌ରେ ହାରିଗଲ । ତୁମେ ଅବି ହାମର ନଜରବନ୍ଦୀରେ ରହିଛ । ମୁଁ ତୁମର ହାସିନା ଦେଖି ଖୁବ୍ ଖୁସି ଅଛି । ତୁମେ ଯଦି ମୋତେ ସାଦୀ କରିବାକୁ ରାଜି ହେବ, ତା' ହେଲେ ମୁଁ ତୁମକୁ ମୁକ୍ତି ଦେବି—ଆଉ ବାଗ୍‌ଦାଦ୍ ସହରରେ ସବୁଠାରୁ ବଢ଼ିଆ ମହଲ୍‌ରେ ତୁମକୁ ନେଇ ରଖିବି । ତୁମକୁ ସେବା କରିବା ପାଇଁ ଲକ୍ଷେ ବାନ୍ଦୀ (ଦାସୀ) ମୁକରିର୍ କରିଦେବି ।

ଆଲ୍ଲା ଯେମିତି ଏ ପରସ୍ତାବ୍ ଦେଇଛନ୍ତି—ଦୁର୍ଗା ଗଗରେ ଜଳି ପଡ଼ିଗଲେ । ସେ ଆଲ୍ଲାଙ୍କ ଆଡ଼କୁ କଟମଟ କରି ଗ୍ରହିଁ କହିଲେ—କି ବେସରମ୍ ବେହୁଦା-ବାତ୍ ତୁମେ କହୁଛ ଆଲ୍ଲା !! ତୁମେ ଏ ଦିନ୍ ଦୁନିଆର ମାଲିକ୍ ବୋଲଉଛ । ଦୁସ୍‌ଗଲୋକର ଔରତ୍ ଉପରେ ପାପ ନଜର ପକାଉଛ ? ମୁଁ ହେଲି ହିନ୍ଦୁ ଘରର ଦେବୀ ! ମୁଁ ସତୀ ସ୍ତ୍ରୀ ଅଛି । ମୋର ସ୍ୱାମୀ କିଏ ତୁମ୍‌କୋ ମାଲୁମ ଅଛି ତ ? ମୋର ସ୍ୱାମୀ ହେଲେ ହରହର ମାହାଦେବ୍ ! ସେ ଯଦି ଏକଥା ଶୁଣିବେ ନା, ତ୍ରିଶୂଳଧରି ଏ ଦୁନିଆକୁ ଦରିଆମେ ମିଶାଇ ଦେବେ । ଛାଡ଼, ଛାଡ଼ । ଯାହା ହବାର ହେଲଣି । ତୁମେ ଯଦି ଗ୍ରହୁଁଛ—ଯଦି ତୁମକୁ ଏ ଦେଶ ଭଲ ଲାଗୁଛି—ତେବେ ହିନ୍ଦୁସ୍ତାନରେ ବୁଲାବୁଲି କର । ଆଉ ଯଦି ନିହାତି ହିନ୍ଦୁସ୍ତାନର ଖୁବ୍‌ସୁରତ୍ ଛୋକ୍‌ରୀ ଦେବୀଟିଏ ସାଦି କରିବାକୁ ଗ୍ରହୁଁଛ—ତେବେ ମୁଁ ମୋର ଚଣ୍ଡୀଗ୍ରମ୍ଣ୍ଡାମାନଙ୍କୁ ତୁମ ଆଗରେ ଧାଡ଼ିକରି ଠିଆ କରି ଦେଉଛି । ତୁମର ଯାହାକୁ ଇଛା ହେବ—ତାକୁ ମୁଁ ମୋର ରୂପ ଦେଇ ତୁମ ସଙ୍ଗେ ସାଦୀ କରିଦେବି ।

ସେଇଆ ହେଲ । ଚଣ୍ଡୀଗ୍ରମଣ୍ଡାଙ୍କ ଭିତରୁ ଆଲ୍ଲା ଖୁବ୍‌ସୁରତ୍ ସୁନ୍ଦରୀ ଛୋକ୍‌ରୀ ଦେବୀଟିଏ ବାଛି ଦେଲେ । ଦୁର୍ଗା ହସିହସି ତାକୁ ଆଣି ଆଲ୍ଲାଙ୍କ ହାତରେ ସମର୍ପି ଦେଇ କହିଲେ—ଦେଖ ଆଲ୍ଲା ! ତୁମେ ଯାକୁ ସାଦୀ କର । ତୁମ ନାମ ଅନୁସାରେ ଆଜିଠାରୁ ଏହାର ନାମ ଆଲ୍ଲାମଚଣ୍ଡୀ ରହିଲା । ମୁଁ ମଧ୍ୟ ଆଜିଠାରୁ ଏଇ ପର୍‌ତିଜ୍ଞା ଦେଉଅଛି ଯେ, ଏ ଚଣ୍ଡୀକୁ ଆଜିଠାରୁ ହିନ୍ଦୁ ମୁସଲମାନ ସମସ୍ତେ ପୂଜା କରିବେ । ଏ ଚଣ୍ଡୀ କୁକୁଡ଼ା ଛେଳୀ ଖାଇବ—ସରବ୍ ତାଡ଼ି ମଧ୍ୟ ପିଇବ । ଦେଖ ଆଲ୍ଲା—ଖେୟାଲ ରଖ—ଯେ ଚଣ୍ଡୀ କି ହରବଖତ୍ ମିଠା ମିଠା ନରମବାତ୍ କହିକରି ତା'ର ଦିଲ୍‌କୁ ସଦାସରବଦା ଥଣ୍ଡା ରଖିବ । ଅଗର୍ ଯଦି କେବେ ତାକୁ ଚେଡା କରି କିଛି କହିବ ନାହିଁ—ତା'ହେଲେ ଏ ଚଣ୍ଡୀ ରକ୍ତମୁଖା ହେଇକରି ତୁମ ସମସ୍ତଙ୍କୁ ଆମ୍ପୁଡ଼ି କାମୁଡ଼ି ଖୁନ୍ ପିଇଯିବ । ଫେର୍ ମୋ' ପାଖକୁ ପଳେଇ ଆସିବ । ହଁ—ଶୁଣ ଆଲ୍ଲା ! ଯାକୁ କଭି ଗୋସ୍ (ଗୋମାଂସ) ଖିଲଇବ ନାହିଁ । ସାବଧାନ !!

ଓଲୀ ମିଆଁ ଏତିକି କହି ପୁଣି ଟିକିଏ ଚୁପ୍ ରହିଲେ ଓ ମାଟି ସରରେ ଆଉରି ସରଏ ତାଡ଼ି ଢକଢକ କରି ପିଇ ଗୋଟାଏ ହେଉଡ଼ି ମାରିଲେ

ତା'ପରେ ତାଙ୍କର ଦାର୍ଢ଼ିଗହଳ ଭିତରୁ ପାନଖିଆ କଷାଦାନ୍ତ ଧାଡ଼ିକ ଦେଖାଇ ହସି ହସି କହିଲେ–

ପାର୍‌ବତୀ କାହିଁକି ଏ ଚଣ୍ଡୀକି ଗୋସ୍ ନ ଖିଲେଇବା ପାଇଁ କହିଲେ–ତା'ର ମରମ୍ ଜାଣିଛ ବାବୁ ? ଶୁଣ ତା'ହେଲେ । ତମେତ୍ ବାବୁ ଅଙ୍ଗ୍ରେଜି ପର୍ଢ଼ିଲ–ଧରମ୍ କଥା–ଶାସ୍‌ତର ପୁରଣ କଥା ତୁମକୋ ଇଆଦ୍ ହେବ କେମିତି ? ଶୁଣ ବାବୁ ! ତମର୍ ଏ ଯେତେ ଦେବଦେବୀ ଚଣ୍ଡୀଗ୍ରମୁଣ୍ଡା ଅଛନ୍ତି ନା–ସମସ୍ତଙ୍କୁ ତୁମ ଜଗନ୍ନାଥର ଆଜ୍ଞା ରହିଛି–ସମସ୍ତେ ସବୁଦିନେ ପାଳିକରି ଜଗନ୍ନାଥଙ୍କ ମନ୍ଦିରକୁ ଯିବେ । ସେ ମନ୍ଦିର ଭିତରେ ଜଗନ୍ନାଥଙ୍କର ଯୋଉ ତେଜୀ ବିବି ଅଛନ୍ତି–ତାଙ୍କୁ ଜାଣିଛ ? ସେ ହେଲେ ବିମ୍‌ଲ ଦେବୀ । ଏ ଚଣ୍ଡୀ ଗ୍ରମଣ୍ଡାମାନେ ଯେ ଯୋଉ ପରକାରେ ଯାଇ ସେଇ ବିମ୍‌ଲ ଦେବୀଙ୍କର ସେବା କରନ୍ତି । ଯୋଉ ଚଣ୍ଡୀ ଗୋସ୍ ଖାଇବ–ସେ ଜଗନ୍ନାଥଙ୍କ ମନ୍ଦିରକୁ ଯିବ୍ କେମ୍‌ତା ? ଏଇ ହେଲ ତାର ମରମ୍ ।

ହାଁ-ସେଇଠୁ କଣ ହେଲ ନା, ପାର୍‌ବତୀଙ୍କ କଥା ପରକାରେ ଆମର ଆଲ୍ଲା ତୁମର ଏଇ ଆଲମ୍‌ଚଣ୍ଡୀଙ୍କି ସାଦୀ କଲେ । ଆଲ୍ଲା ସେଇଠୁ କହିଲେ–"ହେ ପାର୍‌ବତୀ ବୀବୀ ! ବାତ୍ ଶୁଣ । ଆମେ ତ ହେଲୁ ମୁସଲମାନୀ ଖୁଦା । ଆମେ ହେଲୁ ଶୂନ୍ୟସୋରୂପୀ । ମୋର ଯେ ମସ୍‌ଜିଦ୍ ଅଛି–ସେଠି ତ କୋଉ ଦେବଦେବୀର ପର୍‌ତିମା କି ମୂର୍ତ୍ତି ଫୁର୍ତ୍ତି ରହି ପାରିବନି ! ତେବେ ଏ ଏ ଚଣ୍ଡୀ ରହିବ କୋଉଠି ? ତାର ଉପାୟ ବତାଇ ଦିଅ ।

–ସେଇଠୁ ପାର୍ବତୀ କଣ କଲେ ନା, ହେମାଳୟରୁ ଗୋଟାଏ ଛୋଟ ବଛା ବରଗଛର ଗ୍ରଚ ଆପଣା ହାତରେ ଉପାଡ଼ି ଦେଲେ । ତାକୁ ଆଲ୍ଲାଙ୍କ ହାତରେ ଧରଇ ଦେଇ କହିଲେ–ଶୁଣ ଆଲ୍ଲା ! ତୁମେ ଏ ବଛାଗଛଟିକି ନେଇ ଓଡ଼ିଶା ମୂଲକକୁ ଗ୍ରଲିଯାଅ । ସେ ମୂଲକ୍‌ରେ ପରଚୀ ନାମରେ ଏକ ଲଈ (ନଦୀ) ଅଛି । ସେ ଲଈର ପାନି ଗଙ୍ଗା ପାନି ପରିକା ପବିତର୍ ଅଛି । ତା'ରି କୂଳରେ ନିଆଳୀମାଧବ ନାମରେ ଗୋଟିଏ ଗାଁ ଅଛି । ସେଇ ଗାଁରେ ଯୋଉ ବାଲିକୁଦ ଅଛି–ସେଇଠି ଏ ବଛାଗଛଟିକୁ ପୋତିଦେବ । ତା'ମୂଳରେ

ମୁଁ ଯୋଉ ମନ୍ତରପାଣି ଦେଉଛି ତାକୁ ଡାଳିଦେବ । ଏ ଗଛ ଗୋଟାଏ ଦିନ ଭିତରେ ଖୁବ୍ ଗୋଟାଏ ବଡ଼ ଦ୍ରୁମ ହୋଇ ଶାଖା ପ୍ରଶାଖା ମେଲି ଦେବ । ସେଇ ଗଛ ଭିତରେ ମନ୍ଦିର ପରିକା କୋରଡ଼ଟିଏ ଖୋଲିଯିବ । ତୁମେ ସେଇ କୋରଡ଼ ଭିତରେ ନେଇ ଏଇ ଚଣ୍ଡୀକୁ ରଖିଦେବ । ସେଇ ଗାଁରେ ବି ତୁମେ ଗୋଟିଏ ମୁସଲମାନ ବସ୍ତି ବନାଇ ଦେବ । ସେମାନେ ଗୋଟିଏ ମସ୍‌ଜିଦ୍ ବନାଇ ଦେବେ ତୁମ ପାଇଁ ତା' ଭିତରେ ତୁମେ ଶୂନ୍ୟ-ରୂପୀ ହୋଇ ରହିବ । ଆଉ ଏ ଚଣ୍ଡୀ ଖଣ୍ଡିଏ ପଥର ରୂପରେ ସେଇ ବରଗଛ କୋରଡରେ ରହି ପୂଜା ପାଇବେ ।

ଆଲ୍ଲା ସେଇଆ କଲେ । ଏ ବରଗଛଟି ହେଲା ସେଇ ପାର୍ବତୀଙ୍କ ଦାନ । ଏ ଗଛର କେତେ ଉମର (ବୟସ) ହେଲା ଜାଣିଛ ? ହଜାରେ ଉମରରୁ ଅଧିକା ହେବ । ସେଇଦିନଠୁଁ ଆଲମଚଣ୍ଡୀ ଆସି ଏଠି ଖଣ୍ଡିଏ ପଥର ରୂପରେ ଏ ଗଛ କୋରଡ଼ରେ ବିରାଜମାନ କରୁଛନ୍ତି । ପ୍ରତି ବରଷ ଅଶିଣମାସ ଗର୍ଭଣାସଙ୍କ୍ରାନ୍ତି ରାତି ଅଧରେ ଶୂନ୍ୟରୂପୀ ଆଲ୍ଲା ଏଠାକୁ ଗୋପନରେ ଆସି ଆଲମଚଣ୍ଡୀଙ୍କ ସାଙ୍ଗରେ ସୁରତ୍ କରନ୍ତି । ବୁଝିଲ ବାବୁ ? ଏବେ ଏ କଥାର ମରମ୍ ପାଇଲ ?

ଓଲି ମିଆଁଙ୍କ ମୁହଁରୁ ଏଇ ରୋମାଞ୍ଚକର କାହାଣୀଟି ଶୁଣିବାକୁ ଖୁବ୍ ଭଲ ଲାଗୁଥିଲା । ଯଦିଓ ମନର ଗଭୀରରେ ଗୋଟିଏ ଅସହିଷ୍ଣୁତା ଭାବ ମଧ୍ୟ ସାମାନ୍ୟ ଜାଗ୍ରତ ହେଉଥିଲା । ଏଇ କାହାଣୀ ପଛରେ ସତେକି ଜଣେ ଅତ୍ୟାଚାରୀ ପଠାଣ ଜଣେ ହିନ୍ଦୁ ରମଣୀକୁ ଜବରଦସ୍ତି ବିବାହ କରିଥିବାର କାମୁକ ଇଚ୍ଛା ବା ଲାଳସା ଗୁପ୍ତରେ ବଳବତ୍ତର ରହିଛି । କାହାଣୀଟି ବେଶ୍ ରୋମାଣ୍ଟିକ୍ । ମାତ୍ର ମୋଭଳି ସେ କାଳର ଜଣେ ଧର୍ମାନ୍ଧ ହିନ୍ଦୁ ବ୍ରାହ୍ମଣ କିଶୋର ପକ୍ଷରେ ଏହା ଥିଲା ବଡ଼ ଦୁଃସହନୀୟ । ତେଣୁ ମୁଁ ମୋ କଣ୍ଠରେ କିଛି ଉଷ୍ମତା ଦେଖାଇ କହିଲି—

ଏସବୁ ବାଜେକଥା । ଏ କଥାତ ଆମ ପୁରାଣରେ ନାହିଁ ? ତୁମ କୋରାନ୍ ସରିଫ୍‌ରେ କଣ ଏକଥା ଲେଖା ହୋଇଛି ?

ଓଲୀ ମିଆଁ ହୋହୋ ହୋଇ ହସି ଉଠିଲେ । ତା'ପରେ ଉଠି ଠିଆ ହୋଇ ପଡ଼ି କହିଲେ—"ବୁଝିଲ ବାବୁ ! ସବୁ କଥା କଣ କୋରନ୍ ପୁରଣରେ ସିଧାକରି ଲେଖା ହୋଇଥାଏ । କୋରନ୍ ହେଉ କି ପୁରଣ ହେଉ—ତା' ଭିତରେ ମରମ୍ କଥା ଖୁବ୍ ଗୋପ୍ୟାନ ହୋଇ ରହିଛି । ତାକୁ ଆମର ମାହା ମାହା ଫଜିଲ ମୌଲବୀ ଆଖୁଂଝୀ ହେଉନ୍ତୁ, କି ତୁମର ମହା ମହା ପଣ୍ଡା ପଣ୍ଡିତ ମହନ୍ତ ସନ୍ଥ ପୁରୋହିତ ହେଉନ୍ତୁ—ବୁଝି ପାରିବେ ନାହିଁ । ଯେ ପ୍ରକୃତ ଭକ୍ତ—ଖୋଦା କା ମେହରବାନି ଯେ ପାଇଛି—ସେଇ କେବଳ ତାକୁ ଦେଖି ପାରିବ—ଧରି ପାରିବ । ତା' ଛଡ଼ା—ଯାହାକୁ ଆଲ୍ଲା କି ତୁମର ଭଗବାନ୍ ପରସନ୍ ହୋଇ କାଳେସୀ ଲଗିବେ—ସେଇ କେବଳ ଅସଲ ମରମ୍ କଥାଟି ବୁଝି ପାରିବ । ବୁଝିଲ ବାବୁ ! ଏ କିଛି ତୁମର ଅଗ୍ରେଂଝୀ ପାଠ ନୁହେଁ ଯେ, କିତାବ୍‌ରେ ଲେଖା ହୋଇ ଛପା ହୋଇଛି—ତୁମେ ତାକୁ ପଢି ସମ୍‌ଝି ଲେବ ।

ଓଲୀ ମିଆଁ ଏତକ କହି ସେଠୁ ଉଠି ଗ୍ଲଲିଗଲେ । ତାଙ୍କ ପରେ ଅନ୍ୟମାନେ ମଧ୍ୟ ଚୁପ୍‌ଚାପ୍ ଉଠିଗଲେ । ମୁଁ ଜାଣେ—ସେଠି ପ୍ରତିଦିନ ହିନ୍ଦୁ ଓ ପଠାଣ ସଂପ୍ରଦାୟର କେତେକ ମଦୁଆ ଆସି ସନ୍ଧ୍ୟାବେଳେ ରୁଣ୍ଡ ହୁଅନ୍ତି—ଏବଂ ଖଜୁରୀତାଡ଼ି ପିଇ ମାତାଲ ବିହ୍ୱଳ ମନରେ ଯାହା ଇଚ୍ଛା ତା ଗପ ମାରନ୍ତି । ତା' ସତ୍ତ୍ୱେପି ସେଦିନ ଓଲି ମିଆଁଙ୍କ ଆଲ୍ଲା ଓ ଆମ ଆଲମଚଣ୍ଡୀଙ୍କ ବୃତ୍ତାନ୍ତ ମତେ ଶୁଣିବାକୁ ଖୁବ୍ ମଜା ଲଗିଥିଲା—କିଂଚିତ୍ ଅସହିଷ୍ଣୁତା ସତ୍ତ୍ୱେପି । ଏବଂ ଏହା ମଦ ଖଟିର ଗାଲୁ ଗଳ୍ପ ହେଲେବି, "ଆଲମବଟ" ବୃକ୍ଷଟି ପ୍ରତି ସେଇ ଦିନୁଁ ମୋ ମନ ଭିତରେ ଏକ ଅଲୌକିତ ମାୟା ଓ ଆକର୍ଷଣ ଜାଗିଉଠିଥିଲା । ସେହି ଦିନଠାରୁ ମୁଁ ମୋର ସାଙ୍ଗମାନଙ୍କ ସହିତ ବହୁବାର ସେହି ବରଗଛଟି ପାଖକୁ ଯାଏ ଏବଂ ପଠାଣ ଭଗବାନଙ୍କୁ ସାଦୀ କରି ଆଲମ୍‌ଚଣ୍ଡୀ ବୋଲଉଥିବା ସେହି ପାର୍ବତୀଙ୍କର ସୁନ୍ଦରୀ କିଙ୍କରୀଟିକୁ ବାରେ ମାତ୍ର ଦେଖି ଆଖିର ସୌଭଗ୍ୟ ବଢ଼ାଇବା ଲଗି ସେହି କୋରଡ଼ଭିତରକୁ ବାରଂବାର ଦୃଷ୍ଟି ନିକ୍ଷେପ କରୁଥାଏ ଏବଂ ଗଛଟିକୁ ମଧ୍ୟ ବହୁବାର ଆଉଁସୁ ଥାଏ । ଖୁବ୍ ସ୍ନେହ ସହାନୁଭୂତି ଦେଇ ଆଉଁସୁ ଥାଏ ।

କିନ୍ତୁ ହା'ରେ ଦୁର୍ଦ୍ଦୈବ ! ସେଇ ଗଛଟି ମଧ୍ୟ ବର୍ତ୍ତମାନ ଆଉ ନାହିଁ । ଆଜିକୁ ପ୍ରାୟ କୋଡ଼ିଏ ବର୍ଷ ତଳେ ସେହି ଗଛ ପାଖରେ ସରକାର ଗୋଟିଏ

ପଶୁ ଡାକ୍ତରଖାନା ଖୋଲିଲେ । ଏବଂ ସେବାଟେ ପକ୍କା ସଡ଼କଟିଏ ମଧ୍ୟ ସୁଦୂର ଗ୍ରାମଗୁଡ଼ିକ ଆଡ଼କୁ ତିଆରି ହୋଇଗଲା । ସେଇ ସଡ଼କ କଡ଼େ କଡ଼େ ଗୋଟିଏ ପଟେ ବହୁତ ବିଦ୍ୟୁତ୍‌ଲାଇନ୍‌ର ତାରଗୁଡ଼ିକ ମଧ୍ୟ ବନ୍ଧାଗଲା । ଫଳରେ ପ୍ରଥମେ ସେହି ବିଶାଳ ବଟବୃକ୍ଷଟିର ଡାଳଗୁଡ଼ିକୁ ହାଣି ତାକୁ ପଙ୍ଗୁ ଓ ବିକଳାଙ୍ଗ କରି ଦିଆଗଲା । ତା' ପରେ ପରେ ଆମ ଗାଁର କେତେକ ଧୋବା ସେହି ସ୍ଥାନଟିକୁ ଜବରଦଖଲ କରି ଘର ବନାଇ ଗଲେ ଓ ସେହି ସୁଯୋଗରେ ସମଗ୍ର ଗଛଟିକୁ ହାଣିହୁଣି ସଫାକରି ଚୁଲୀରେ ଜାଳି ଗାଁର ମଇଳାଲୁଗା ଗୁଡ଼ିକ ଖାର ପାଣିରେ ସିଝେଇ କାଚିଲେ ।

* * * *

ବାସ୍ ! ସେଇଦିନୁଁ ଆମ ଗାମଟି ଆଜିକାଲି ପ୍ରାୟ ଇ ବଟବୃକ୍ଷବିହୀନ ହୋଇଯାଇଛି । ଗଦ୍ଧା ବରଗଛଟିଏ ମଧ୍ୟ ଏବେ ଆଉ ଆମ ଗାଁରେ ଦେଖିବାକୁ ମିଳିବ ନାହିଁ । କାରଣ, ବରଗଛଟିଏ ତ ଏବେ କିଏ କୋଉଠି ଆଉ ଲଗାଉ ନାହିଁ ! ତା' ଛଡ଼ା କୋଉଠି ଲଗେଇବ ? ଜାଗା କାହିଁ ? ଆମ ଗାଁ ବର୍ତ୍ତମାନ ସହର ହେଉଛି । ଆମ ଗାଁର ମଣିଷଙ୍କ ପାଇଁ ମଧ୍ୟ ଆଉ ଏବେ ଜାଗା ନାହିଁ । ଗଛକଥା—ବିଶେଷତଃ ବରଗଛ କଥାରେ କିଏ ଆଉ କାହିଁକି ଭଲ ମୁଣ୍ଡ ଖେଳେଇବ ? ବରଗଛରେ କଣ କାଜୁବାଦାମ ଫଳିବ ନା ଚିନାବାଦାମ ଫଳିବ ? ବରଂ ବରଗଛ ଗୋଟାଏ ଜଞ୍ଜାଳ । ବହୁ ଅତିରିକ୍ତ ଭିତରେ ଗୋଟାଏ ଅବାଂଛିତ ଅତିରିକ୍ତ । ଗଷ୍ଟ—ଉତ୍ସାହିତ "ସବୁଜ ବିପ୍ଳବ" ରେ ଏଇ ବରଗଛ ଗୋଟାଏ ବାହୁଲ୍ୟ ମାତ୍ର ! ବରଗଛ ? ଛାଡ଼ହେ ବରଗଛ ! ଅନ୍ୟକଥା ଯଦି କହିବାକୁ ଅଛି—କୁହ । ନ ହେଲେ —ଉଠ—ଯିବା ! ବରଗଛ କଥା ଭବିବାକୁ ଆମର ଏଇଲେ ଆଉ ବେଳ ନାହିଁ ।

॥ ॥

## ମମ ମାସ୍ତ୍ୱା ଦୂରତ୍ୟୟ୍ତ୍ୱା…

ଭିକ୍ଷୁକମାନଙ୍କୁ ଭିକ୍ଷା ଦେବା ଉଚିତ୍ କି ନୁହଁ—ସେ ବିଷୟରେ ଯେତେଗୁଡ଼ିଏ ମତବାଦ ରହିଛି, ସେଥିରୁ ଦୁଇଟି ମତବାଦ ପ୍ରତି ମୋର ସମାନ ଆସ୍ଥା । କେତେକ କହନ୍ତି—ଭିକ୍ଷୁକଙ୍କୁ ଭିକ୍ଷା ଦେବାର ଅଭ୍ୟାସ ରଖିଲେ ଭିକ୍ଷୁକଙ୍କ ସଂଖ୍ୟାହିଁ ବଢ଼ିଯିବ ଏବଂ କାଳକ୍ରମେ ଭିକ୍ଷାକୁ ଏକ ସାମାଜିକ ବୃତ୍ତିର ମର୍ଯ୍ୟାଦା ମଧ୍ୟ ମିଳି ଯିବାର ସମ୍ଭାବନା ରହିଯାଏ । କିନ୍ତୁ ଭିକ୍ଷାଠାରୁ ବଳି ହୀନବୃତ୍ତି ଆଉ ନାହିଁ । ଅଥଚ, ସେହି ହୀନବୃତ୍ତିଧାରୀଙ୍କୁ ଭିକ୍ଷା ଦେଇ ତୁମେ ନିଜକୁ ପରମଧାର୍ମିକ ବୋଲି ମନେକରି ଆପଣା ଭିତରେ ଖୁବ୍ ଆତ୍ମପ୍ରସାଦ ଅନୁଭବ କରିଥାଅ । ତେଣୁ ବ୍ୟକ୍ତିଗତ ଭାବେ ଭିକ୍ଷା ଦେବା ଅପେକ୍ଷା, ରାଷ୍ଟ୍ର ହାତରେ ସେମାନଙ୍କୁ ଛାଡ଼ିଦିଅ । ରାଷ୍ଟ୍ର କର୍ମଭୀରୁ ସବଳ ଓ ସକ୍ଷମ ଲୋକଙ୍କୁ ନେଇ କାମରେ ଲଗାଇବ ଓ ବିକଳାଙ୍ଗ, ଅସମର୍ଥ ଏବଂ ଅସହାୟ ଲୋକଙ୍କର ଭରଣ ପୋଷଣ ବ୍ୟବସ୍ଥା ନିଜ ଆଡୁ କରିବାକୁ ବାଧ୍ୟ ହେବ ।

ଅପର ମତଟି ହେଲା—ଭିକ୍ଷା ଗୋଟିଏ ହୀନବୃତ୍ତି ନୁହେଁ । ଆମ ଦେଶରେ ଯୁଗଯୁଗ ଧରି ସାଧୁ ସନ୍ନ୍ୟାସୀ ବୈଷ୍ଣବମାନେ ଭିକ୍ଷା ଓ ମାଧୁକରୀକୁ ଏକ ପବିତ୍ର ଧାର୍ମିକ କାର୍ଯ୍ୟ ମନେ କରନ୍ତି । ସାଧୁ, ସନ୍ନ୍ୟାସୀ ବୈଷ୍ଣବମାନେ ତ ଆମ ଭଳି ସଂସାରୀ ନୁହନ୍ତି । ସେମାନେ ଅହୋରାତ୍ର ଈଶ୍ୱରଙ୍କ କଥାରେ ମାତିଥାନ୍ତି । ତପ, ଧ୍ୟାନ, ଯୋଗ କୀର୍ତ୍ତନ, ଭଜନରେ ବୁଡ଼ି ରହନ୍ତି । ସେଇମାନଙ୍କ ତପ ଫଳରୁ ବା ଧର୍ମ ବଳରୁ ଆମେ ସଂସାରୀ ଲୋକମାନେ

ଭଗ ନେଇଥାଉଁ । ଆତଏବ ଆମର ଉପାର୍ଜିତ ଧନରୁ ସେମାନଙ୍କୁ କିଛି ଭିକ୍ଷା ଦେବା ଧର୍ମ ସମ୍ମତ ପ୍ରତିଦାନ ଅଟେ ନିଶ୍ଚୟ । ଏମାନଙ୍କ ବ୍ୟତୀତ ପୁଣି ଯେଉଁମାନେ ଅସହାୟ, ବିକଳାଙ୍ଗ, ଅସମର୍ଥ—ସେମାନଙ୍କ ଦାୟିତ୍ୱ ରଷ୍ଟ୍ର ନିଜ ଆଡ଼ୁ ସମଗ୍ର ଭବେ ନ ନେବା ପର୍ଯ୍ୟନ୍ତ, ଆମକୁ ହିଁ ବ୍ୟକ୍ତିଗତ ଭବେ ସେମାନଙ୍କର ଭରଣ ପୋଷଣ ରକ୍ଷଣ ଲଗି ଭିକ୍ଷା ଦେବାକୁ ପଡ଼ିବ । ଏହାହିଁ ମାନବିକତାର ଦାବୀ ।

ପ୍ରକାଶଥାଉକି, ମୁଁ ଏହି ଦ୍ୱିତୀୟ ପର୍ଯ୍ୟାୟର ମତବାଦକୁ ଗ୍ରହଣ କରିଛି । ତେଣୁ ଭିକାରୀ ଭିକାରୁଣୀଙ୍କୁ କିଛି ନ ଦେଇ ମୁଁ ନିରଣ କରେ ନାହିଁ । ଯଦିଓ ପ୍ରଥମ ମତବାଦ ପ୍ରତି ମୋର ସମ୍ମାନ ଓ ସମର୍ଥନ ଉଭୟ ରହିଛି ।

କିନ୍ତୁ ଏ ସବୁ ଛଡ଼ା ମଧ୍ୟ ଭିକାରୀ ଭିକାରୁଣୀଙ୍କୁ ଭିକ୍ଷାଦେବା ପଛରେ ମୋର ଆଉ ଗୋଟିଏ ବ୍ୟକ୍ତିଗତ ଦାର୍ଶନିକ ମତବାଦ ମଧ୍ୟ ରହିଛି । ଟିକିଏ ଗଭୀର ଭବେ ବୁଝିଲେ—ଏହା ଗୋଟିଏ ମତବାଦ ନୁହଁ—ବରଂ ଏହା ଗୋଟିଏ ବ୍ୟକ୍ତିଗତ ଉପଲବ୍ଧି-ପ୍ରସୂତ ସିଦ୍ଧାନ୍ତ । ତା' ହେଲ—ଦେଖି କୁହତ, ଏ ଜଗତରେ କିଏ ବା ଭିକାରୀ ନୁହେଁ ? ଖାଲି କଣ ପଇସା, ଚାଉଳ ଓ ଛିଣ୍ଡା ଲୁଗାପଟା ମାଗି ବୁଲୁଥିବା ଲୋକଟି ଭିକାରୀ ? ତଳେଇ କରି ବୁଝିଲେ, ଏଠି ଆମେ ଏଇ ମର୍ତ୍ତ୍ୟ ମଣ୍ଡଳରେ ସମସ୍ତେ ଭିକାରୀ । ଆମେ ସମସ୍ତେ ଥାଳଟିଏ ଧରି ଯା' ତା' ପାଖରୁ ଭିକ ହିଁ ମାଗି ବୁଲୁଛୁ । ମାତ୍ର ଆମ ଥାଳଟି ତେବେ ପୂରୁନାହିଁ ଏବଂ ଏ ପୃଥିବୀରେ ମଧ୍ୟ ଯଥାର୍ଥ ଭିକ ଦେବା ଲୋକଟିଏ ମଧ୍ୟ ଖୁବ୍ ଦୁର୍ଲଭ । କାରଣ, ଆମେ ସମସ୍ତେ ଯୋଉ ବିଷୟଟିର ଅଭବରେ ମରୁଛୁ ଓ ଯୋଉ ଜିନିଷଟି ଅପର ପାଖରୁ ଚାହୁଁଛୁ—ସେ କଥାଟି ଏଠି କାହା ପାଖରେ ନାହିଁ । ତେଣୁ ଏଠି ସେ କଥାଟି କିଏ କାହାକୁ ଦେଇ ପାରିବ ? ସେଇଥିପାଇଁ ତ ମୁଁ କେତେ ଲୋକଙ୍କୁ କେତେଥର ସେଇ ଗୋଟିଏ କଥା ବାରମ୍ବାର କହି ଆସିଛି—ଦେଖ ବାବୁ ! ଏଠି ସମସ୍ତଙ୍କ ଥାଳ ଶୂନ୍ୟ । ସେଇ ଶୂନ୍ୟ ସ୍ଥାନକୁ ଆଉ କିଏ କୋଉ ଧାମରୁ ଏଠିକି ଓହ୍ଲାଇ ଆସି ପୂର୍ଣ୍ଣ କରିବ ତ କରୁ—ଆମେ ସମସ୍ତେ କିନ୍ତୁ ସେଥିପାଇଁ ଅଭଜନ ।

ଅବଶ୍ୟ ଏଇ ଢଙ୍ଗରେ ଭବିବାକୁ ମୋର ଜୀବନର ବହୁ ଅଭିଜ୍ଞତା ମତେ ବାଧ୍ୟ କରିଛି । ଗୋଟିଏ ଅଭିଜ୍ଞତାର କଥା ମୁଁ ଏଠି କହିପାରେ । ଅଳ୍ପ କେତେ ବର୍ଷ ତଳର ଘଟଣା । ସେତେବେଳେ ମୁଁ ପ୍ରାୟ ପ୍ରତି ମାସରେ ମୋର ପତ୍ନୀଙ୍କ ସହିତ ପୁରୀ ଯାଉଥିଲି । ଏବଂ ଆମେ ଅଧିକାଂଶ ବେଳେ ସ୍କୁଟର ଯୋଗେ ଯାଉଥିଲୁ । ନିୟମିତ ପୁରୀ ଯିବା ପଛରେ ମୁଖ୍ୟ ଉଦ୍ଦେଶ୍ୟଟି ଥିଲା ଶ୍ରୀ ଜଗନ୍ନାଥ ଦେବଙ୍କୁ ଦର୍ଶନ କରିବା । କିନ୍ତୁ ଚିରଚରିତ ରୀତିରେ ନୁହେଁ । ଆମେ ନିଜକୁ ସେତେବେଳେ ଓଡ଼ିଶାବାସୀ ମନେ ନକରି ଓ ପୁରୀରେ ଆମର ସମସ୍ତ ସାଙ୍ଗ ସୁଖ ଓ ବନ୍ଧୁବାନ୍ଧବଙ୍କୁ ଲୁଚି ଉପେକ୍ଷା କରି—ନିଜକୁ ବାହାରର ଯାତ୍ରୀ ବୋଲି ମନେ କରି ଅତି ସାଧାରଣ ବେଶରେ, ବେଳେ ବେଳେ ବିଚିତ୍ର ବେଶରେ ବଡ଼ଦାଣ୍ଡରେ ବୁଲୁଥାଉଁ । ସନ୍ଧ୍ୟାବେଳେ ସ୍ୱର୍ଗଦ୍ୱାର ମଶାଣୀ ତଳକୁ ଗୋଟିଏ ଅପେକ୍ଷାକୃତ ନିର୍ଜନ ଜାଗାରେ କିଛି ସମୟ ଉଦାସୀନ ଭବେ ସମୁଦ୍ର ଆଡ଼କୁ ଚାହିଁ ଅଚିନ୍ତା ହୋଇ ନିର୍ବାକ୍ ନିସ୍ତବ୍ଧ ଭବେ ବସିରହୁ । ତା'ପରେ ରାତି ଦଶଟାଯାଏ ସମୁଦ୍ରକୂଳେ କିମ୍ବା ବଡ଼ଦାଣ୍ଡରେ କିମ୍ବା ଶ୍ରୀମନ୍ଦିର ଭିତରେ ନିରୁଦ୍ଦେଶ୍ୟ ଭବରେ ଘୁରିବୁଲୁ । ପୁରୀ ଗଲେ ଆମେ ଅନ୍ତତଃ ଦୁଇଦିନ ରହୁ ଓ ଏହିପରି ଭବେ ସମୟ କାଟୁ । ଅବଶ୍ୟ କେବେ କେବେ ଦୁଇ ପ୍ରହରଟା ଆମର କଟିଥାଏ ଶ୍ରୀ ଲୋକନାଥଙ୍କ ପାଖେ କୌଣସି ଝାଉଁ ବା ପୋଲଙ୍ଗ ଗଛ ତଳର ଶାନ୍ତ ସ୍ନିଗ୍ଧ ଛାଇ ଭିତରେ । ଥରେ ଥରେ, ବିଶେଷତଃ ରଥଯାତ୍ରା ବେଳେ ଆମେ ରାତିରେ ସେଇ ବଡ଼ ଦାଣ୍ଡରେ ବିଶେଷତଃ ଶରଧାବାଲିରେ ଖଣ୍ଡିଏ ମଇଳା ସତରଞ୍ଜି ବିଛାଇ ଅନ୍ୟାନ୍ୟ ଦୂରଦେଶୀ ଯାତ୍ରୀଙ୍କ ମେଳରେ ଶୋଇରହୁ । ସେ ରାତି ଭରି ଚମତ୍କାର ଲାଗେ । ଠାକୁରମାନେ ଗୁଣ୍ଡିଚା ଘରେ ଥିଲାବେଳେ ସେ ସ୍ଥାନରେ ରାତିଯାକ ଗହଳ ଚହଳ ଲାଗିଥାଏ । ସାଧୁ ସନ୍ଥମାନଙ୍କର ଭଜନ କୀର୍ତ୍ତନ ଚାଲିଥାଏ । ଆମେ ଅଧା ଶୁଆ ଅଧା ଚିଆଁ ଅବସ୍ଥାରେ ଥାଉଁ । ସମଗ୍ର ରାତିରେ ସେ ପରିବେଶ ବଡ଼ ରହସ୍ୟମୟ ସ୍ୱପ୍ନମୟ ମନେହୁଏ । ହୁଡହୁଡ ହୋଇ ଦକ୍ଷିଣ ଦିଗରୁ ସମୁଦ୍ର ପବନ ଧୂଳି ଉଡ଼େଇ ବହୁଥାଏ । ଆମ୍ଭ ଦେହ ମୁହଁ ଧୂଳିରେ ବୁଡ଼ି ଯାଉଥାଏ । ଆମକୁ ଭରି ଭଲ ଲାଗୁଥାଏ । କେତେ ଶତାବ୍ଦୀ ଧରି କେତେ ଭକ୍ତ ମହାତ୍ମାଙ୍କର ପଦରଜରେ ଆମର ଦେହ ପ୍ରାଣ ସ୍ନାତ ହେଉଥାଏ । ଏତ ସାମାନ୍ୟ ଧୂଳି ନୁହଁ—ବଡ଼ଦାଣ୍ଡର ଧୂଳି ବିଭୂତି ।

ଆମ ପକ୍ଷରେ ପୁରୀ ଯାତ୍ରା ରହିଣୀ ଠାରୁ ବଳି ଆନନ୍ଦ ଓ ଶାନ୍ତିପ୍ରଦ ଅଭିଜ୍ଞତା ଆଉ ନାହିଁ । ବଡ଼ ଦେଉଳ ଉପରେ ନୀଳଚକ୍ରକୁ ଆଶ୍ରାକରି କୋଡ଼ିଏ ହାତର ପତିତପାବନ ବାନା ଫରଫର ଉଡ଼ୁଥାଏ । ଆମେ ମନେକରୁ ଏ କ୍ଷେତ୍ର ସଂସାରରୁ ବାହାର । ଏଠି ସମସ୍ତେ ନିଦକ–ସମସ୍ତଙ୍କର ଗୋଟିଏ ମାତ୍ର ପ୍ରଭୁ–କ୍ଷମା ସାଗର ଦୀନବନ୍ଧୁ ଶ୍ରୀଜଗନ୍ନାଥ । "ସେ କମ୍ଭୁ କଟକ ରଜା ସ୍ୱୟଂ ଜଗନ୍ନାଥ ।" ଏଠି ସେହି ବଳିଆର ଭୁଜଙ୍କୁ ଯେ ଯାହା ମାଗିବ–ସେ ତାହା ପାଇବ । ଭକ୍ତି, ଭୁକ୍ତି, ମୁକ୍ତି–ଯାହାର ଯାହା ଦରକାର ତାକୁ ତାହା ମିଳିବ । କାରଣ ଶ୍ରୀଜଗନ୍ନାଥ ହେଲେ–"ଚଉବର୍ଣ୍ଣ ଚଉବର୍ଗ ଦେବାକୁ ସମର୍ଥ ଯେ ।"

ସେଇ କେତେ ବର୍ଷ ସଂସାରର ଘୋର କଷ୍ଟପ୍ରଦ ଜଞ୍ଜାଳ ଭିତରୁ କିଛି କାଳ ଲାଗି ମୁକ୍ତି ପାଇବାକୁ ହେଲେ ଆମ ପକ୍ଷରେ ସେତେବେଳେ ପୁରୀ ଯିବା ଛଡ଼ା ଆଉ ଅନ୍ୟ ଉପାୟ ନଥିଲା । ତା'ଛଡ଼ା, ପୁରୀ ସତକୁ ସତ ହେଲା ଏକ ବିଚିତ୍ର କ୍ଷେତ୍ର । ଭାଗ୍ୟରେ ଥିଲେ ବେଳେବେଳେ ଏଠି ବିଚିତ୍ର ଅଭିଜ୍ଞତାଟିଏ ମିଳିଯାଏ । ଘଟଣାଟିଏ ଘଟିଯାଏ ଅଥବା ବିଚିତ୍ର ମଣିଷଟିଏ କୁଆଡ଼ୁ ଆସି ତୁମ ସଙ୍ଗେ ଭେଟ ହୋଇଯାଏ । ଥରେ ଥରେ ପୁଣି ଅଦ୍‌ଭୁତ କର୍ମ । ବୈଷ୍ଣବ ବା ସନ୍ନ୍ୟାସୀ ପାଗଳା ଯୋଗୀଟିଏ ସହିତ ସାକ୍ଷାତକାର ଘଟିଯାଏ । କିମ୍ବା ବାହାରକୁ ପାଗଳା ବା ଛତରଖିଆ ଭଳି ଦିଶୁଥିବା କୌଣସି ଜଣେ ଛଦ୍ମବେଶୀ ସାଧୁ ମହାତ୍ମାଙ୍କ ସଙ୍ଗେ ଭେଟ ହୋଇଯାଏ । ଶେଷରେ, ଭାଗ୍ୟରେ ଥିଲେ, ଜଗନ୍ନାଥଙ୍କ ମନ୍ଦିର ଭିତରେ ଦାରୁବ୍ରହ୍ମ ସ୍ୱୟଂ ଶ୍ରୀଜଗନ୍ନାଥ ମଧ୍ୟ ଆମ ଭିତରେ ଅପୂର୍ବ, ଆଲୌକିକ ଅନୁଭୂତି ସଞ୍ଚାର କରି ଦିଅନ୍ତି । କୋଉ କୋଉ ଅପ୍ରସ୍ତୁତ ବେଳାରେ ପୁଣି ଜଗନ୍ନାଥଙ୍କ ସାଙ୍ଗେ ଭେଟଣା ହୋଇଯାଏ । ଭିତରେ ଭିତରେ କିଛି ଦିଆ ନିଆ ହୋଇପାଏ । ଅବଶ୍ୟ,ସେ ସବୁ ଭାଗ୍ୟର କଥା ।

ଯଦିଓ–ପୁରୀ କ୍ଷେତ୍ରଟା ହେଲା କେବଳ "ଦିଅ ଦିଅ"ର ଜାଗା, ଏଠି ତୁମେ ଆପଣ ଦଣ୍ଡେ ଚୁପ୍‌ଚାପ୍ ଠିଆ ହୋଇ ପାରିବେ ନାହିଁ । କେହିନା କେହି ଯୋଉଠି ମନେ ସେଠି ଆସି ଆପଣଙ୍କ ପାଖେ ହାତ ପତାଇ ଠିଆ ହୋଇଯିବ ।–ବାବୁ ! କିଛି ମିଳିଯାଉ । ଏ ଥାଳରେ କିଛି ଦିଅ ବାବୁ !

ବିରକ୍ତ ଲଗିଲେ ବି ଏଠି କାହାକୁ "ଘଗୋ ଘଗୋ" ବୋଲି ତଡ଼ି ଦେଇ ହୁଏନା ଏତେ ସହଜରେ । କାରଣ, ପିଲ ଦିନୁଁ ମୁଁ ମୋର ବାପ କକାଙ୍କଠାରୁ ସେଇ ଗୋଟିଏ କଥା ବାରମ୍ବାର ଶୁଣି ଆସିଛି—"ପୁରୀ କିଛି ସହଜ କ୍ଷେତ୍ର ନୁହଁ ବାପ । ସେଠିକି ବହୁ ବହୁ ସାଧୁ ମହାତ୍ମା ଏ ଜମ୍ବୁଦ୍ଵୀପ ଭରଥ ଖଣ୍ଡର ବିଭିନ୍ନ ସ୍ଥାନରୁ ଆସି ଛଦ୍ମକ ବେଶରେ ବଡ଼ଦାଣ୍ଡରେ ବୁଲୁଥିବେ ଓ ତୁମକୁ ଭିକ୍ଷା ମାଗୁଥିବେ । ଏପରିକି ବିନ୍ଧ୍ୟ ହିମ ଳୟ କନ୍ଦର ବାସୀ ବହୁ ସାଧୁ ପୁରୁଷ କି ଯୋଗୀ ଯୋଗୀନୀ ଛୋଟା କେମ୍ପା ରୋଗୀ ରୋଗିଣୀ ବେଶ ଧରି ତୁମ ପାଖେ ଆସି ବିକୃତ ରୂପରେ ଭିକ୍ଷା ମାଗିବେ । ତୁମେ କାହାକୁ ନିରଶ କରିବ ନାହିଁ । କିଛି ଦିଅ ନଦିଅ ଅନ୍ତତଃ କାହାକୁ ପୁରୁଷ ବାକ୍ୟ କହିବ ନାହିଁ । ସାଧୁ ସାବଧାନ । ପୁରୀ କିଛି ସହଜ ପୀଠ ନୁହେଁ । ପୁରତ୍ତମ ପୀଠ ଏ । ଶଙ୍ଖ ନାଭି ମଣ୍ଡଳ । ଦାରୁବ୍ରହ୍ମଙ୍କ ଅଧିଷ୍ଠାନ । ଏଠି ଥରେ କୁଆଟାଏ ପଡ଼ି ଚତୁର୍ଭୁଜ ହୋଇଗଲ । ଗଧଟାଏ ବଡ଼ଦାଣ୍ଡରେ ପଡ଼ି ମୋକ୍ଷ ପାଇଗଲ । ଏଠି ପଥର ମାତ୍ରେଇ ଶାଳଗ୍ରାମ ଶିଳା ବୋଲି ଜାଣ । ଧୂଳିକଣା ମାତ୍ରେଇ ସାଧୁ ମହାତ୍ମାଙ୍କ ପଦରଜ ବୋଲି ଜାଣ । ଏଠି ବୃକ୍ଷ ମାତ୍ରକେ ବ୍ରହ୍ମଦାରୁଙ୍କ ଅଂଶ । ବିନ୍ଦୁଏ ଜଳ ଏଠି ତୀର୍ଥ ବାରିର କଣା । ଅନ୍ନ କଣିକାଏ ଏଠି ନିର୍ମାଲ୍ୟ ମୂର୍ତ୍ତି । ଏ କ୍ଷେତ୍ରକୁ କଣ ବୋଲି ଭବିଛକି ? ଏ ଶଙ୍ଖନାଭି ମଣ୍ଡଳର ଭୂଇଁ ଉପରେ ଯୋଉଠି ମନ ସେଠି ମୁହଁ ମାଡ଼ି ଶୋଇ ହୃଦ କମଳରେ ଧ୍ୟାନସ୍ଥ ଥାଇ କାନ ପାରିଲେ ଶୁଣିବାକୁ ପାଇବ, ଏଠି ଗୁଳିଛି ଶୂନ୍ୟ ମଣ୍ଡଳରେ ଅନୁବ୍ରତେ ଅହୋରାତ୍ର ଅଖଣ୍ଡ ନାମ ସଙ୍କୀର୍ତ୍ତନ—ଝାଞ୍ଜ ମୃଦଙ୍ଗ ଘଣ୍ଟ ଘଣ୍ଟା କାହାଳୀର ନିର୍ଘୋଷ । ବଡ଼ ବିଚିତ୍ର ଜାଗା ଏ । ଏ କ୍ଷିତି ତଳେ ଲକ୍ଷେ ଜୀବନ୍ତ ଶାଳଗ୍ରାମ ଅହରହ ସ୍ପନ୍ଦିତ ହେଉଛନ୍ତି । ସେ ସ୍ପନ୍ଦନ ଯେ ଅନୁଭବିଛି, ସେଇ ଏକା ଜାଣେ ଏହାର ମହିମା ।

ମୁଁ ପିଲଦିନୁଁ ଏମିତି କଥା ସବୁ ଶୁଣି ଆସିଛି—ମୋ ପିତୃ ପିତାମହଙ୍କ ମୁହଁରୁ—ମୋ ଗାଁର ସେଇ ସବୁ ସରଳ, ସହଜ ପବିତ୍ର ହୃଦୟ ମାନନୀୟ ବ୍ୟକ୍ତିମାନଙ୍କ ମୁହଁରୁ । ସେଥିପାଇଁ ପୁରୀ ପୁରତ୍ତମ, ଶ୍ରୀକ୍ଷେତ୍ର ନାମ ଉଚ୍ଚାରଣ ମାତ୍ରେଇ ସମସ୍ତଙ୍କ ଆଖିଡୋଳା ଉପରକୁ ଉଠିଯାଏ । ଆକ୍ଷେପଟା

ଛାଏଁ ଛାଏଁ ବୁଜି ଧୋଇ ଆସେ । ଦୁଇହାତ ଆପଣା ଛାଏଁ ଯୋଡ଼ି ହୋଇ କପାଳକୁ ଉଠିଯାଏ । ଆଖି ଆଗରେ ଭସିଉଠେ—ଦୂର ଦିଗ୍‌ବଳୟରୁ ସମାଗର୍ । ପାଟ ଆର ପାରିରେ ଆକାଶ ବକ୍ଷରେ ଶ୍ରୀମନ୍ଦିର ଚୂଡ଼ା ଉପରେ ନୀଳଚକ୍ର ସଂଲଗ୍ନ ସେଇ ପତିତପାବନ ବାନା ଫରଫର ହୋଇ ଉଡ଼ୁଛି—ସତେ କି ହାତ ହଲଇ ଡାକୁଛି—ଆସ, ଆସ ଯେତେ ଯୋଉଠି ଯିଏ ପାପୀ ତାପୀ ଦୀନ ଦୁଃଖୀ ଅଛ ସମସ୍ତେ ନିଶ୍ଚିନ୍ତ ମନରେ ମୋ ପାଖକୁ ଆସ । ମୁଁ ତୁମମାନଙ୍କୁ ସମସ୍ତ ପାପରୁ ମୁକ୍ତି ଦେବି, ସର୍ବ ସଙ୍କଟ ଆପଦ ବିପଦ ଗ୍ରହ କବଳରୁ ରକ୍ଷା କରିବି......... ।

ଏ ହେଲା ଅନୁଭବର କଥା । ସମସ୍ତଙ୍କର ଏପରି ଅନୁଭବ ହୁଏତ ନଥାଇ ପାରେ । ମାତ୍ର ଯେଉଁମାନଙ୍କର ପୁରୀ ଓ ପୁରୁଷୋତ୍ତମଙ୍କୁ ନେଇ ଏପରି କିଛି ଅନୁଭବ ଅଛି—ସେଇମାନେ ମୋ କଥାର ମର୍ମ ଟିକେ ଟିକେ ଗ୍ରହଣ କରିପାରନ୍ତି ।

ସେ ବର୍ଷ ଆମେ ପତି ପତ୍ନୀ ଦୁହେଁ ମହାପ୍ରଭୁଙ୍କ ସ୍ନାନଯାତ୍ରା ଦର୍ଶନ ଉଦ୍ଦେଶ୍ୟରେ ପୁରୀ ଯାଇଥାଉଁ । ଯଥାବିଧି ସ୍ନାନ ମଣ୍ଡପରେ ଅଭିସ୍ନାତ ଠାକୁରମାନଙ୍କୁ ଦର୍ଶନ କରିସାରି ଆମେ କିଛି ଅଭଡ଼ା ସେବା କରିବା ପାଇଁ ବସିଲୁ । ମୁଁ ମୋ ପତ୍ନୀଙ୍କୁ ଆନନ୍ଦ ବଜାରରେ ଗୋଟିଏ ଗଛମୂଳ ପିଣ୍ଡି ଉପରେ ବସାଇ ଦେଇ ଅଭଡ଼ା କିଣିବା ଉଦ୍ଦେଶ୍ୟରେ ବାହାରିଲି । ଠିକ୍ ସେଇ ସମୟରେ ବୁଢ଼ୀଟିଏ ହଠାତ୍ ମୋ ଆଗରେ ଆସି ଠିଆ ହୋଇଗଲା ଏବଂ ମୋ ମୁଣ୍ଡରେ ହାତ ବୁଲଇ ଦେଇ ମୋର ଚିବୁକକୁ ଧରି ଖୁବ ଶୁଦ୍ଧ ବଙ୍ଗଳାରେ କହିଲା—ଜଗନ୍ନାଥେ ତୋତେ ଚକ୍ର ଉଦ୍ଧାର କରି ରଖିଥାନ୍ତୁ । ମତେ କିଛି ଅଭଡ଼ା ଆଜି ଖାଇବାକୁ ଦେ ।

ମୁଁ ଟିକିଏ ବିବ୍ରତ ବୋଧ କଲି । ଗୋଟିଏ ସାମାନ୍ୟ ଭିକାରୁଣୀ ବୁଢ଼ୀ ମୋର ଅପ୍ରସ୍ତୁତ ଅବସ୍ଥାରେ ମୋ ମୁଣ୍ଡରେ ହାତ ବୁଲଇ ମୋ ଚିବୁକକୁ ଧରି ସାରିଲାଣି । ମୁଁ ବିରକ୍ତ ହୋଇ ଉଠିବା କଥା । ମାତ୍ର ମୁଁ ସେ ବୁଢ଼ୀଟିର ମୁହଁକୁ ଚାହିଁ ଦେଲା ମାତ୍ରେ ମୋ ମନ କେମିତି କଅଁଳ ହୋଇଗଲା । ତାର କୋଟରଗତ ଆଖିର ଚାହାଣୀ ଥିଲା ବେଶ୍ କୋମଳ

ଆଉ ରହସ୍ୟମୟୀ । ତାର ମୁହଁଟି ଛୋଟ, ସରୁ ଓ କିଂଚିତ୍ ଲମ୍ବା । ବର୍ଣ୍ଣ ଶ୍ୟାମଳ । ମୁଣ୍ଡର ବାଳ ପୁରୁଷ ବାଳ ଭଳି ଛୋଟ ଛୋଟ । ସବୁତକ ପାଚିଯାଇଛି । ସେ ଯଦିଓ ଭିକ୍ଷା ମାଗୁଥିଲା ତା ମୁହଁରେ କିନ୍ତୁ ସାମାନ୍ୟତମ ଦୈନ୍ୟ ନ ଥିଲା । ପିନ୍ଧିଥିଲା ସେ ସାମାନ୍ୟ ମଇଳା ମରଦ ପିନ୍ଧା ଧୋତିଟିଏ । ତାର ଦେହର ଚମ ଶିଥିଳ ହୋଇ ଯାଇଥିଲା ଏବଂ ପାପୁଲୀର ଶିରଗୁଡ଼ିକ ଗଣି ହୋଇ ଯାଉଥିଲା । ଗଳାରେ ସେ ପିନ୍ଧିଥିଲା ସାତପ୍ରସ୍ତର ତୁଳସୀ ମାଳି । ମଥାରେ ବୈଷ୍ଣବ ତିଳକ । ତାର ପାଟିରେ ତିନି ଚାରୋଟି ମାତ୍ର ଦାନ୍ତ ଅବଶିଷ୍ଟ ଥାଏ । ସେ ହାତରେ ଧରିଥାଏ ବାଡ଼ିଟିଏ ଏବଂ ଗୋଟିଏ ମୁଣି ତା' ବେକରୁ ଝୁଲି ତାର ଛାତି ଉପରେ ପଡ଼ିଥାଏ । ତା' ଭିତରେ ଥାଏ ବୋଧେ ତାର ଜପାମାଳି ।

ମୁଁ ଭାବିଲି—ନା, ଏ ସାମାନ୍ୟ ଭିଖାରୁଣୀ ନୁହେଁ । ମୋତେ ସେତେବେଳେ ଖୁବ୍ ଭୋକ କରୁଥାଏ । ଏଣେ ଚାରିପଟେ ବିକ୍ରୀ ହେଉଥିବା ଅଭଡ଼ା, ଡାଲୀ, ତର୍କାରୀ, ମହୁର, ଶାଗର ଦିବ୍ୟ ସୌରଭ ମୋ ନାକରେ ବାଜି ମୋ କ୍ଷୁଧାଗ୍ନିକୁ ଆଉରି ଜଳାଉଥାଏ । କିନ୍ତୁ ଏ ବୁଢ଼ୀଟିର ସାନିଧ୍ୟ ଏପରି ସ୍ନିଗ୍ଧ ଆଉ ଅନ୍ତରଙ୍ଗ ମନେ ହେଉଥିଲା ଯେ ତାକୁ ଆଡ଼େଇ ଦେଇ ମଧ୍ୟ ଯାଇ ପାରୁ ନ ଥାଏ । ମୁଁ ସେ ବୁଢ଼ୀ ହାତକୁ ଟଙ୍କାଟିଏ ବଢାଇଦେଲି । କହିଲି ଏତିକିରେ ଚଳି ଯିବନି କି ତୁମର ?

ବୁଢ଼ୀଟି ହସିଦେଲା ଏବଂ ମତେ ଆଶ୍ଚର୍ଯ୍ୟ କରି ଖୁବ୍ ଶୁଦ୍ଧ ଉଚ୍ଚାରଣରେ ଲଳିତ ଗଭୀର କଣ୍ଠରେ ଶ୍ରୀମଦ୍ ଭଗବତ ଗୀତାର ଶ୍ଳୋକଟିଏ ବୋଲିଲା ଯାହାର ଅର୍ଥ ହେଉଛି—ଭଗବାନ କହିଲେ—ହେ ଅର୍ଜ୍ଜୁନ ! ଯେ ମୋତେ ଶ୍ରଦ୍ଧାର ସହିତ ଅନ୍ନ ବା ଫଳ ବା ପୁଷ୍ପ ବା ଜଳ ବା ପତ୍ର ଯାହା କିଛି ଅର୍ପଣ କରେ, ମୁଁ ତାହା ଅତି ଆନନ୍ଦରେ ଗ୍ରହଣ କରେ ।

ବୁଢ଼ୀ ଟଙ୍କାଟି ନେଇ ପ୍ରଥମେ ତା' ମୁଣ୍ଡରେ ଲଗାଇଲା । ତା'ପରେ ନୀଳଚକ୍ର ଆଡ଼କୁ ହାତ ବଢ଼ାଇ କଣ ବିଡ଼ି ବିଡ଼ି କରି କହି ସେହି ଟଙ୍କାଟିକୁ ମୋ କପାଳରେ ବି ଆଣି ଲଗାଇ ତାର ଥଳିରେ ରଖିଲା । କେମିତି କେଜାଣି ମୋର ସେ ବୁଢ଼ୀଟି ପ୍ରତି ଏକ ଅହେତୁକୀ ଆକର୍ଷଣ ଜାଗି ଉଠିଲା । ତା'ର

ବିଷାଦଭରା ଚାହାଣୀ ଏବଂ ହସ ଓ କଥାର ଗଭୀରତା ଓ କିଞ୍ଚିତ୍ ରହସ୍ୟ-ମୟତା ମୋର ଅନ୍ତରକୁ ଏକ ଆହ୍ଲାଦନୀୟ ସ୍ନିଗ୍ଧତାରେ ଭରିଦେଲା । ମୁଁ ତା' ମୁହଁକୁ ଚାହିଁଲି ମୁଗ୍ଧ ଆଖିରେ । ତାର ଚାହାଣୀ ସଙ୍ଗେ ମୋର ଚାହାଣୀ ଏକାକାର ହୋଇଗଲା । ମୁଁ ତା' ହାତକୁ ଆଉ ଗୋଟିଏ ଟଙ୍କା ବଢ଼ାଇ ଦେଇ କହିଲି—ନିଅ ! ଏ ଟଙ୍କାଟି ମଧ୍ୟ ରଖିଥାଅ । ଆଜି ରାତିରେ ପୁଣି ଅଭଡ଼ା ସେବା କରିବ ।

ମାତ୍ର ବୁଢ଼ୀ ସେ ଟଙ୍କାଟିକୁ ଆଦୌ ଧରିଲା ନାହିଁ । ତାର ମୁହଁର ଭାବ ସାଙ୍ଗେ ସାଙ୍ଗେ ବଦଳି ଗଲା । ସେ ସାମାନ୍ୟ ରୁକ୍ଷ ଅଥଚ ଦୃଢ଼ ସ୍ୱରରେ କହିଲା—ନାଁ ବାବା ! ନାଁ ! ମୁଁ ସନ୍ନ୍ୟାସିନୀ ! ଉପସ୍ଥିତ ମୁହୂର୍ତ୍ତ ବ୍ୟତୀତ ମୁଁ ଅନ୍ୟ ଦୁଇ କାଳକୁ ମାନେନାହିଁ । ଅତୀତରେ ମୋର କିଛି ସଞ୍ଚୟ ନଥିଲା । କିମ୍ବା ଭବିଷ୍ୟତ ପାଇଁ ମଧ୍ୟ ମୋର କିଛି ଲୋଡ଼ାନାହିଁ । ମୋର ଯେତେବେଳେ ଯାହା ଦରକାର, ସେତେବେଳେ ମୁଁ ଜଗନ୍ନାଥଙ୍କୁ ମାଗେ—ସେ ସାଙ୍ଗେ ସାଙ୍ଗେ ମୋତେ ସେତକ ମଞ୍ଜୁର କରି ଦିଅନ୍ତି । କଣ ବା ମୋର ଆଉ ଦରକାର ? କେବଳ ଏଇ ପେଟ ଖଣ୍ଡିକ । ରାତିରେ ମୁଁ ଆଉ ଖାଏ ନାହିଁ । ଦିନକୁ ଏଇ ଗୋଟିଏ ବଖତ ମହାପ୍ରସାଦ ସେବା କରେ । ମୁଁ ଅନ୍ୟ ଅନ୍ନ ଗ୍ରହଣ କରେ ନାହିଁ । ଭୋକ ହେଲେ ଆନନ୍ଦ ବଜାରକୁ ଆସେ, ନୀଳଚକ୍ର ଆଡ଼କୁ ଚାହିଁ ଜଗନ୍ନାଥଙ୍କୁ ଡାକି କହେ—ଦୀନବାନ୍ଧବ ! ଉଦରାଗ୍ନି ଜଳୁଛନ୍ତି । ତାଙ୍କୁ ଶାନ୍ତି କର । ଏତିକି କହି ଯାହାକୁ ଆଗରେ ଦେଖେ, ତାକୁ ମାଗେ । ସେ ଯେତିକି ଦିଏ, ସେତିକିରେ ଖାଏ । ସେତିକିରେ ମଧ୍ୟ ଉଦରାଗ୍ନି ଶାନ୍ତ ହୋଇଯାଏ ।

ବୁଢ଼ୀଟି ଏତିକି କହି ଗୀତାରୁ ଆଜ ଗୋଟିଏ ଶ୍ଳୋକ ବୋଲିଲା । ଶ୍ଳୋକଟି ବୋଲି ସାରି ଶୁଦ୍ଧ ବଙ୍ଗଳାରେ କହିଲା—ଏଇ ପେଟ । ପେଟ ଭିତରେ ବି ଅହରହ ଯଜ୍ଞ ଚାଲିଛି । ସେଠାରେ ମଧ୍ୟ ଅଗ୍ନି ବିଦ୍ୟମାନ ରହି ହବି ଗ୍ରହଣ କରୁଛନ୍ତି ।

ତା'ପରେ ବୁଢ଼ୀ ଓଡ଼ିଆ ଭାଗବତରୁ ମଧ୍ୟ ଖୁବ୍ ସୁନ୍ଦର ଉଚ୍ଚାରଣରେ ପଦେ ବୋଲିଲା—"କେବଳ ପାପ୍ତ ମୋ ଉଦର—ଏଣୁ ମୁଁ ଲୋକେ ଭୟଙ୍କର" ଏତକ

ଓଡ଼ିଆରେ ବୋଲି ପୁଣି ତାକୁ ବଙ୍ଗଳାରେ ଅର୍ଥ କରି କହିଲା—ଯଦୁରଜା ଯୋଗୀ ଅବଧୂତଙ୍କୁ ପଚାରିଲେ—ହେ ମୁନେ ! ଆପଣ କି ଖାଦ୍ୟ ଖାଉଛନ୍ତି ଯେ ଆପଣଙ୍କ ଶରୀର ଏତେ ବର୍ତ୍ତୁଳ, ଏତେ ସୁନ୍ଦର ଆଉ ଏତେ ତେଜୀୟାନ୍ ଦେଖାଯାଉଚି ? ଅବଧୂତ କହିଲେ—ହେ ରଜା ! ଉଦର ମଧ୍ୟରେ ଅଛନ୍ତି ଅଗ୍ନି ଦେବତା । ଅଗ୍ନି ହେଲେ ସର୍ବଭୁକ୍ । ମୋତେ ଯେତେବେଳେ ଯାହା ମିଳେ, ମୁଁ ତାକୁ ସେହି ଅଗ୍ନିଙ୍କ ନିକଟରେ ସମର୍ପଣ କରେ । ସେ ସବୁକୁ ସମାନ ଆଗ୍ରହରେ ଭସ୍ମ କରି ଦିଅନ୍ତି ଏବଂ ସର୍ବଦା ସମାନ ଭାବେ ପ୍ରଜ୍ୱଳମାନ ଥାନ୍ତି । ହେ ରଜା ! ମୁଁ କାଲି ପାଇଁ ସଞ୍ଚୟ କରି ନାହିଁ । ମୋର ସଞ୍ଚୟ ଭରିବା ଲାଗି କିଛି ପାତ୍ର ନାହିଁ । କେବଳ ଏହି ଉଦର ହିଁ ମୋର ପାତ୍ର । ଏଇ ଅପରିଗ୍ରହ ସ୍ୱଭାବ ହେତୁ ଲୋକେ ମୋତେ ଭୟ କରନ୍ତି—ସମ୍ଭ୍ରମ କରନ୍ତି ।

ମୁଁ ପଚାରିଲି—ତୁମେ ଓଡ଼ିଆ ଭାଗବତ ଜାଣିଛ ଦେଖୁଛି ।ଓଡ଼ିଆ ପଢ଼ିଛ ନା' କଣ ? ବୁଢ଼ୀକହିଲା—ନା' ବାବା ! ଓଡ଼ିଆ ଭାଗବତ ଶୁଣିଆସିଛି । ଆହା ! ଅତିବଡ଼ୀ ଜଗନ୍ନାଥ ଦାସ । ଗୌରାଙ୍ଗ ମହାପ୍ରଭୁ ତାଙ୍କୁ କଳ୍ପବଟ ମୂଳେ ଅଢ଼େଇ ଦିନ କାଳ ଆଲିଙ୍ଗନ କରି ଭାବାବେଶରେ ରହିଲେ । ଆହା ! ଅମୃତ ସମାନ ପଦ ନବାକ୍ଷରୀ ।

କହିବା ବାହୁଲ୍ୟ ଯେ ମୁଁ ବୁଢ଼ୀଟି ପାଖରେ ପ୍ରାୟ ସମ୍ମୋହିତ ହୋଇ ଯାଇଥିଲି । ମାତ୍ର ମୋ ଉଦର ଭିତରେ ବି ଅଗ୍ନି ଜଳୁଥିଲେ ଏବଂ ବାହାରେ ଜ୍ୟେଷ୍ଠ ମାସର ଖରା ଖୁବ୍ ତୀବ୍ର ହୋଇ ଉଠୁଥାଏ । ତେଣେ ଗଛମୂଳେ ପିଣ୍ଡି ଉପରେ ପତ୍ନୀକୁ ବସାଇ ଦେଇ ଆସିଛି । ମୁଁ ବୁଢ଼ୀଠାରୁ ବିଦାୟ ମାଗି କହିଲି—ହଉ ! ତୁମେ ଯାଅ । ମୁଁ କାଲି ମଧ୍ୟ ରହୁଛି । ଏତିକିବେଳେ ଠିକ୍ ତୁମସଙ୍ଗେ ଯେମିତି ମୋର ଦେଖା ହେବ—ଠିକ୍ ଏଇ ଜାଗାରେ ।

ବୁଢ଼ୀ କହିଲା—ନିଶ୍ଚୟ ଦେଖା ହେବ ବାବା ।

ଆମେ ଦୁହେଁ ସେଦିନ ପରସ୍ପରଠାରୁ ବିଦାୟ ନେଲୁ ।

ବୁଢ଼ୀ ପୁଣିଥରେ ମୋ ମୁଣ୍ଡରେ ହାତ ବୁଲାଇ ସାରି ମୋର 'ଚିବୁକକୁ ଧରି ଗେଲ କଲା । ନୀଳଚକ୍ର ଆଡ଼କୁ ଚାହିଁ ମତେ ଗୁଣୁଗୁଣୁ ହୋଇ ଆଶୀର୍ବାଦ କଲା । ବୁଢ଼ୀକୁ ଛାଡ଼ି ମୁଁ ଅଭଡ଼ା କିଣିଲି ଓ ସେତକ ଧରି ମୋର ପତ୍ନୀଙ୍କ ପାଖକୁ ଗଲି ।

........ ତା' ପର ଦିନର କଥା । ଠିକ୍ ସେତିକି ବେଳେ । ଆମେ ଦୁହେଁ ମନ୍ଦିର ଭିତରେ ବୁଲି ବିଭିନ୍ନ ଦେବାଦେବୀଙ୍କୁ ଦର୍ଶନ ପୂଜା ଜଣାଇ ପୁଣି ଆସିଲୁ ଆନନ୍ଦ ବଜାର ଭିତରକୁ । ସ୍ନାନ ପୂର୍ଣ୍ଣିମା ପରଦିନ ମନ୍ଦିରର ବ୍ୟବସ୍ଥା ଆମକୁ ଅଜଣା ନଥିଲେ ବି ଆମ ସ୍ମରଣରେ ନଥିଲା । ସେ ଦିନ କିନ୍ତୁ ଆମେ ବାହାରେ ଭୋଜନର ବ୍ୟବସ୍ଥା କରିଥିଲୁ । କେବଳ କେତେକ ଅନୁକୂଳି ମିଷ୍ଟାନ୍ନ ମହାପ୍ରସାଦ କିଣିବା ଉଦ୍ଦେଶ୍ୟରେ ଆନନ୍ଦ ବଜାରକୁ ଗଲୁ । ମିଷ୍ଟାନ୍ନ ପ୍ରସାଦ କିଣୁଛି ସେଇ ବୁଢ଼ୀଟି ସହିତ ଦେଖା ହେଲା । ଦେଖିଲା ମାତ୍ରେ ସେ ହସିହସି ମୋର ଅଣ୍ଟାକୁ ହାତରେ ବେଢ଼ାଇ ପକାଇଲା ଏବଂ ମୋ ମୁହଁକୁ ଏତେ ଆହ୍ଲାଦରେ ଚାହିଁଲା ଯେ ଏବଂ ତାହାର ଆଲିଙ୍ଗନ ମୋ ପକ୍ଷରେ ଏତେ ସୁଖକର ଥିଲା ଯେ ମୁଁ ମଧ୍ୟ ତାକୁ ନିବିଡ଼ ଭାବେ କୁଣ୍ଢାଇ ପକାଇଲି । ମୋର ବୟସ ସେତେବେଳେ ପଚାଶ ପାଖାପାଖି ଥିଲେ ବି ସେ ବୁଢ଼ୀଟି ମୋର ନିଜ ମାଆ ବୟସର ଥିଲା । ମୁଁ ମୋର ମାଆକୁ ପିଲାକୁ ଶୂନ୍ୟକୁ ଟେକି ନେଇ ତଳେ ଥାପି ଦେଲା ପରି ଆଲିଙ୍ଗନ କରେ—ଗେଲ ଆଦର କରେ । ସେ ବୁଢ଼ୀକୁ ମଧ୍ୟ ତଦ୍ରୂପ କଲି । ବୁଢ଼ୀଟି ବାରମ୍ବାର ମୋର ଚିବୁକ ଚିପି ଚୁମା ଖାଉଥାଏ ଏବଂ ମୋର ମୁଣ୍ଡକୁ ଆଉଁସୁ ଥାଏ । ହଠାତ୍ ମୋ ପତ୍ନୀଙ୍କ ଉପରେ ତାର ଆଖି ପଡ଼ିଗଲା । ଅଜଣା ବୁଢ଼ୀଟି ସହିତ ମୋର ଏଇ ଗେଲ ଅବଲୟ ଦେଖି ସେ ପ୍ରଥମେ ଆଶ୍ଚର୍ଯ୍ୟ ହୋଇ ଆମକୁ ଚାହୁଁଥିଲେ । ମୁଁ ପ୍ରଥମେ ତାଙ୍କୁ ବୁଢ଼ୀଟିର ପରିଚୟ ଦେଇ କହିଲି—ଏ ଜଣେ ବୈଷ୍ଣବୀ ମାତା । ଖୁବ୍ ଶାସ୍ତ୍ର ଜ୍ଞାନ ଅଛି । ଆସ—ଆସ । ଆଳାପ କର ।

ମୋର ପତ୍ନୀ ସାମାନ୍ୟ ସ୍ମିତ ହାସ୍ୟରେ ନରମ ଚାହାଣୀ ଢାଳି ବୁଢ଼ୀଟି ପାଖକୁ ଆସିଲେ । ବୁଢ଼ୀଟି ତାଙ୍କୁ ଦେଖୁଦେଖୁ ସମାନ ଭାବେ ଆଲିଙ୍ଗନ କଲା । ବଙ୍ଗଳାରେ କହିଲା—ଠିକ୍ ଜାଣେ । ମନ ମୁତାବକ ବଉ(ପତ୍ନୀ) ପାଇଛ ।

ସାକ୍ଷାତ ଲକ୍ଷ୍ମୀ । ମୁଁ କହିଲି—ଭୁଲ କହିଲ—ମାତାଜୀ ! ଭୁଲ କହିଲ । ସାକ୍ଷାତ୍ ଚଣ୍ଡୀ, ମହାକାଳୀ ।

ବୁଢ଼ୀଟି ହସି ହସି କହିଲା—ଦୁଷ୍ଟ ପିଲା ! ଏଡ଼େ ସୁନ୍ଦର ବୋହୂ । କାଳୀ କାହିଁକି କହୁଚୁ ? ସ୍ୱାମୀମାନେ ଦୁଷ୍ଟହେଲେ ସେହି ଲକ୍ଷ୍ମୀ ବୋହୂମାନେ ବି ବେଳେବେଳେ କାଳୀ ହେବା ଉଚିତ । ତା' ନ ହେଲେ ତୁମମାନଙ୍କୁ ଜବତ କରିହେବ କେମିତି ? ପୁରୁଷ ହେଲା ଶିବ । ନାରୀ ତାର ଶକ୍ତି । ଶକ୍ତିର ଆବେଷ୍ଟନ ଭିତରେ ଶିବ ନ ରହିଲେ ସଂସାର ରହେନା । ସେ ଯା ହେଉ ଖୁବ୍ ଭଲ ବୋହୂ ପାଇଛ । ସେ ମଧ୍ୟ ଭଲ ସ୍ୱାମୀ ପାଇଛନ୍ତି । ଠିକ୍ ଲକ୍ଷ୍ମୀ ନାରାୟଣ ।

ଏତିକି କହି ସେ ମୋର ସ୍ତ୍ରୀଙ୍କୁ ମଧ୍ୟ ଆଲିଙ୍ଗନ କଲା । ଚିବୁକ ଧରି ଚୁମା ଖାଇଲା । ମୁଣ୍ଡକୁ ଆଉଁସିଲା ଏବଂ ତାଙ୍କ ଉଦ୍ଦେଶ୍ୟରେ କହିଲା—ଦେଖ୍ ମା ! ମୋର ପିଲାକୁ ଠିକ୍ ଯେମିତି ମାଆ ଭଳି ପାଳନ କରିବୁ ।

ଆମେ ତିନିହେଁ ଆନନ୍ଦବଜାରର ସ୍ନାନ ମଣ୍ଡପର ଡାହାଣପାଖ ଘଞ୍ଚ ବରଗଛ ମୂଳେ ପିଣ୍ଡି ଉପରେ ବସିଲୁ । ମୋର ପତ୍ନୀ ମୋ ହାତକୁ କିଛି ମିଷ୍ଟାନ୍ନ ପ୍ରସାଦ ଦେଲେ ଏବଂ ବୁଢ଼ୀ ହାତକୁ ମଧ୍ୟ ଦେଲେ । ବୁଢ଼ୀ ଦୁଇଟି ସାନ ସାନ ମଗଜଲଡୁ ଖାଇଲା । ବୁଢ଼ୀଟି ମୋତେ ଏତେ ଭଲ ଲାଗୁଥାଏ ଯେ ତାକୁ ଛାଡ଼ିବାକୁ ମୋର ଆଦୌ ମନ ହେଉ ନଥାଏ । ମୋର ଇଛା ହେଉ ଥାଏ—ବୁଢ଼ୀଟିକୁ ସାଙ୍ଗରେ ନେଇ ପାଖରେ ରଖନ୍ତି କି ! ଶ୍ରୀମନ୍ଦିର ବେଢ଼ା ଭିତରେ ଆନନ୍ଦବଜାର—ଆନନ୍ଦବଜାରର ସେଇ ନିଘଞ୍ଚ ବରଗଛ ମୂଳେ ଶୀତଳ ଛାଇ—ଝୁଲୁଝୁଲୁ ଦକ୍ଷିଣା ପବନ—ବେଢ଼ା ଭିତରେ ଜଗନ୍ନାଥପ୍ରେମୀ ଓ ଉପାସକମାନଙ୍କର କୋଳାହଳ । ନୀଳଚକ୍ର ଉପରୁ ସୁନୀଳ ଆକାଶ ବକ୍ଷରେ ଫରଫର ହୋଇ ଉଡ଼ୁଥାଏ ପତିତପାବନ ଆତଙ୍କନାଶନ ବାନା । ସବୁ ମିଶି ପରିବେଶଟି ମନ ଭିତରେ ଏକ ଅପୂର୍ବ ଶାନ୍ତି ଓ ତୃପ୍ତିର ଭାବ ଆଣୁଥାଏ । ଯେତେ କି ଆଉ କିଛି ଚିନ୍ତା ନାହିଁ—ଦୁଃଖ ନାହିଁ—ସମସ୍ୟାଇ ନାହିଁ । ଯେତେ କି ସମସ୍ତଙ୍କ ହୃଦୟ ସହିତ ହୃଦୟ ମିଳିଯାଉଛି ବିନା ବାଧାରେ—ବିନା ଆୟାସରେ ! ବୁଢ଼ୀଟି ମୋର ପାଖକୁ ଲାଗି ବସିଥାଏ ଗୋଡ଼ ଲମ୍ବାଇ । ମୁଁ ତାର ଶୀର୍ଣ୍ଣ ଡାହାଣ ହାତଟି ଆଣି ମୋର କୋଳ ଉପରେ ରଖିଥାଏ ଓ

ତାଙ୍କ ପାପୁଲିଟିକୁ ଆଉଁସୁଥାଏ । ତାର ସେହି ଶୀର୍ଣ୍ଣ ଛୋଟ ହାତ ପାପୁଲୀଟିର ସ୍ପର୍ଶ ଥିଲା ଖୁବ୍ କୋମଳ ଆଉ ସ୍ନିଗ୍ଧ । ଏବଂ ତାର ପାପୁଲୀଟିକୁ ମୁଁ ମୋ କୋଳରୁ ଆଦୌ ଛାଡ଼ିବାକୁ ଇଚ୍ଛା କରୁ ନ ଥାଏ । ମତେ ଲାଗୁଥାଏ, ଯତେ କି ମୁଁ ନୂଆ ସ୍ପାଉଲକଟିଏ ପାଇଛି ନୂଆ ମଣିଷଟିଏ ପାଇଛି ଏବଂ ନୂଆ ସ୍ପର୍ଶଟିଏ ମଧ୍ୟ ଅନୁଭବ କରୁଛି । ଏହି ସମୟରେ ବରଗଛ ଉପରୁ କୋଳାହଳରତ କୁଆ ଓ ବଣିମାନଙ୍କ ଭିତରୁ କୁଆଟିଏ ହଠାତ୍ ମଳ ତ୍ୟାଗ କରି ଉଡ଼ିଗଲା । ଏବଂ ତାହା ଆସି ପଡ଼ିଲା ମୋର କାନ୍ଧ ଉପରେ । ମୋର ଦେହ ଖୋଲା ଥିଲା । ଖଣ୍ଡିଏ ଚଦର କେବଳ ମୁଁ ଦେହରେ ପକାଇଥିଲି ଏବଂ ଚଦରଟି ମୋର କୋଳରେ ପଡ଼ିଥିଲା । କୁଆଟି ହଗି ଦେବାରୁ ମୁଁ ଘୃଣାରେ ଶିହରି ଉଠିଲି । ମୋ ସ୍ତ୍ରୀ ଗୋଟିଏ ବରପତ୍ର ଆଣି ସେତକ ପୋଛି ଦେଲେ ଏବଂ ପାଣି ଥଳିରୁ ପାଣି ଢାଳି ମୋର ପିଠି ଧୋଇଦେଲେ । ଠିକ୍ ସେତିକି ବେଳେ ବୁଢ଼ୀ କଣ କଲା ନା, ମୋର କୋଳରୁ ଅଧା ମଇଳା ଚଦରଟି ନେଇ ମୋର ପିଠିକୁ ପୋଛିବାକୁ ଲାଗିଲା ଏବଂ ଭଲକରି ପୋଛି ସାରି ମୋର ଫୁଙ୍ଗୁଳା ପିଠିରେ ତାର ହାତ ବୁଲାଇବାକୁ ଲାଗିଲା । ମତେ ତାର ସେଇ ଆଉଁସା ଭଲ ଲାଗୁଥାଏ । କିଛି ସମୟ ପରେ ମୁଁ ତାର ହାତଟିକୁ ପୁନଶ୍ଚ ଧରି ମୋର କୋଳରେ ରଖିଲି ଏବଂ ମୋର ବାମ ହାତରେ ତା' ପିଠିକୁ ଜାକି ଧରି ତାକୁ ମୋ ଦେହ ସହିତ ମୃଦୁ ମୃଦୁ ଚାପ ଦେଲି । ଏଣେ ତାର ସୁକୋମଳ ପାପୁଲୀଟିକୁ ମଧ୍ୟ କୋଳରେ ରଖି ମୋ ହାତରେ ଆଉଁସୁଥିଲି ଓ ଚିପି ଲାଗିଥିଲି । ମୁଁ ଜାଣେ—ବୁଢ଼ୀମାନେ କେଡ଼େ ସ୍ପର୍ଶାକାଂକ୍ଷିଣୀ । ମୋ ମାଆ ବଞ୍ଚିଥିଲାବେଳେ ମୁଁ ପ୍ରତିଦିନ ତାକୁ ଖୁବ୍ ଆଦର ଗେଲ କରେ । ତାକୁ ଆଉଁସେ—ତା' ମୁହଁ, ଗାଲ, ପାପୁଲୀ, ବାହୁ ଓ ପେଟକୁ ସାଉଁଳେ । ସେ ସେଥିରେ ଭରୀ ତୃପ୍ତି ଆଉ ଆହ୍ଲାଦ ପାଉଥିଲା । ଯୋଉ ଦିନ କାର୍ଯ୍ୟ ବା ମାନସିକ ବ୍ୟସ୍ତତା ଯୋଗୁଁ ମୁଁ ମୋର ମାଆକୁ ଦୈହିକ ସ୍ପର୍ଶ ଦେଇ ନଥିବି, ସେଦିନ ସେ ବଡ଼ ଅସ୍ୱସ୍ତି ଅନୁଭବ କରୁଥିଲା ଓ ତା' ପର ଦିନ କଥା ଛଳରେ ସେଇ ଅନୁଯୋଗ କରୁଥିଲା । ଆମ ସମସ୍ତଙ୍କ ଧାରଣା ଯେ କେବଳ ଯୁବକ ଯୁବତୀମାନେ ସ୍ପର୍ଶ କାଙ୍ଗାଳ । ତା' ଆଦୌ ନୁହଁ । ମୋର

ଏ ବିଷୟରେ ଆଉ ଦୁଇ ତିନୋଟି ଅନୁଭବ ମଧ୍ୟ ରହିଛି । ବୁଢ଼ା ବୁଢ଼ୀମାନେ ଆମର ଦୈହିକ ସ୍ପର୍ଶ ଜନିତ ଆଦର ଗେଲକୁ ଭରୀ ଉପଭୋଗ କରନ୍ତି ।

ମୋର ସ୍ପର୍ଶ ପାଇ ଏ ବୁଢ଼ୀଟିର ସର୍ବାଙ୍ଗ ତୃପ୍ତିରେ ଭରି ଉଠୁ ଥିବାର ମୁଁ ଲକ୍ଷ୍ୟ କଲି । ମୋର ମନେ ହେଲା—ଏ ବୁଢ଼ୀ ବର୍ଷ ବର୍ଷ ଧରି ମଣିଷର ଦେହ ସ୍ପର୍ଶ ପାଇ ନାହିଁ । ଏୟାକୁ କେହି କୋଳ କରିବା ବା ଆଉଁସିବା ତ ଦୂରର କଥା, ତାକୁ ଆଉ ଗୋଟିଏ ମଣିଷ, ବିଶେଷତଃ ପୁରୁଷ ମଣିଷ ବୋଧ ହୁଏ ବର୍ଷ ବର୍ଷ ଧରି ଛୁଇଁ ମଧ୍ୟ ନାହିଁ ।

ଏଠାରେ ମୋ ସମ୍ବନ୍ଧେ ମଧ୍ୟ କିଛି କହି ଦିଏଁ । ମୁଁ ଚିରଦିନ ସ୍ତ୍ରୀ ଲୋକର କୋମଳ ସ୍ପର୍ଶ ଉପଭୋଗ କରିବାକୁ ଭଲ ପାଏ । ଭଲ ସ୍ତ୍ରୀ ଲୋକଟିଏ—ତାର ବୟସ ଯେତେ ହେଉ, କିଛି ଯାଏ ଆସେ ନାହିଁ । ବିଭିନ୍ନ ବୟସରେ ସ୍ତ୍ରୀ ଲୋକର ଦେହ ସ୍ପର୍ଶ ବିଭିନ୍ନ ପ୍ରକାର ଆମୋଦ ଦିଏ । ଭଲ ସ୍ତ୍ରୀ ଲୋକଟିର ଦେହ କୋମଳ । ଯୁବତୀ ବେଳେ ସେଇ କୋମଳତା ସହିତ ଉଷ୍ଣତା ମିଶିଥାଏ । ମାତ୍ର ବାର୍ଦ୍ଧକ୍ୟରେ ସେଇ କୋମଳତା ବେଶ୍ ସ୍ନିଗ୍ଧ ଓ ଶୀତଳ ହୋଇଯାଏ । ଯୁବତୀର ଉଷ୍ଣ କୋମଳ ଦେହ ସ୍ପର୍ଶ ଉଚ୍ଚାଟକ, ଉନ୍ମାଦକ । ମାତ୍ର ବୃଦ୍ଧାର ସ୍ନିଗ୍ଧ ଶୀତଳ ଦେହ ସ୍ପର୍ଶ ମନକୁ ଏକ ଅପୂର୍ବ ଶାନ୍ତ ମଧୁର ଆନନ୍ଦରେ ଭରିଦିଏ ! ତା' ଛଡ଼ା, ଭଲ ସ୍ତ୍ରୀ ଲୋକଟିର ମନର ପ୍ରଭବ ତାର ଦେହ ଯାକ ସଂଚରି ରହିଥାଏ । ସେ ଯୁବତୀ ହେଉ ବା ବୃଦ୍ଧା ହେଉ ।

ଇତି ମଧ୍ୟରେ ବୁଢ଼ୀଟି ଆମକୁ ଶ୍ରୀମନ୍ଦିର ଭିତରେ କୁଆମାନଙ୍କ ଭୂମିକା ବିଷୟରେ କହି ଚାଲିଥାଏ । ମୁଁ ଜାଣି ଥିଲେ ବି, ବୁଢ଼ୀ ମୁହଁରୁ ଭୁଷଣ୍ଡକାକ ନାମକ ସେହି ଅଲୌକିକ ଜ୍ଞାନୀ ପ୍ରବର ବାୟସ ମହାପୁରୁଷଙ୍କ ପୌରାଣିକ ବୃତ୍ତାନ୍ତ ଆମେ ଭରି ଆନନ୍ଦରେ ଶୁଣୁଥିଲୁ । ବୁଢ଼ୀଟି ସୁନ୍ଦର ଶୁଦ୍ଧ କୋମଳ କାବ୍ୟିକ ବଙ୍ଗଳା ଭାଷାରେ ଗପି ଚାଲିଥାଏ ଜଗନ୍ନାଥଙ୍କ ସଙ୍ଗେ କାକ ଭୂଷଣ୍ଡିଙ୍କ ସମ୍ପର୍କର କାହାଣୀ । ତା' ସହିତ ବୁଢ଼ୀ ମଧ୍ୟ ଖୁବ୍ ଦୃଢ଼ ସ୍ୱରରେ କହି ଚାଲିଥାଏ ଦେଖ ବାବା ! କୁଆମାନେ ସେହି ଦିନୁଁ ଏଇ ଆନନ୍ଦ ବଜାର

ଅତିକ୍ରମ କରି ଶ୍ରୀମନ୍ଦିର ଆଡ଼କୁ ଯା'ନ୍ତି ନାହିଁ । ତୁମେ କେବେ ବି ଦେଖିବ ନାହିଁ ଯେ କୁଆଟିଏ ଶ୍ରୀମନ୍ଦିର ଉପରେ ବସିଛି ବା ପାଖାପାଖି ଉଡ଼ୁଛି । ସବୁ ପକ୍ଷୀ ଶ୍ରୀମନ୍ଦିର ଉପରେ ଆସି ଉଡ଼ି ବସନ୍ତି । ଏପରି କି ଚିଲ ଶାଗୁଣା ପର୍ଯ୍ୟନ୍ତ ବି କିନ୍ତୁ କୁଆମାନଙ୍କୁ ଆଜ୍ଞା ରହିଛି—ସେମାନେ ଏଇ ଆନନ୍ଦ ବଜାର ଭିତରେ ରହିବେ—ଆଉ ପଟକୁ ଯିବେ ନାହିଁ ।

ସେଇ ବଟଛାୟାରେ ବସି ଆମେ ବହୁ ଧର୍ମ ସମ୍ବନ୍ଧୀୟ କଥାବାର୍ତ୍ତା ହେଲୁ । ବୁଢ଼ୀଟିର ଧର୍ମ ଶାସ୍ତ୍ରଜ୍ଞାନ ଓ ବ୍ୟାଖ୍ୟା ଆମକୁ ଆଶ୍ଚର୍ଯ୍ୟ କରି ଦେଉଥାଏ । କେତେ କଥା ସେ ବୁଢ଼ୀ ଜାଣିଛି ! ଆଉ କେଡ଼େ ଗୂଢ଼ତତ୍ତ୍ୱଗୁଡ଼ିକ ସେ କି ସରଳ ଆଉ ମାର୍ମିକ ଭବରେ ବ୍ୟାଖ୍ୟା କରି ପାରୁଛି ! କିଏ ଏଇ ବୁଢ଼ୀ ? କଣ ଯାର ଇତିହାସ ? ଏ କଣ କୋଉ ମଠ ବା ଧର୍ମାଳୟରେ ଥାଏ ? ନା କୋଉଠି ଥାଏ ଏ ବୁଢ଼ୀ ? ଏ ପ୍ରଶ୍ନ ମୋ ମନକୁ ଆଲୋଡ଼ିତ କରୁଥାଏ । ଏହି ସମୟରେ ମୋ ପତ୍ନୀଙ୍କର ଜଣେ ବାନ୍ଧବୀ ଆସି ପହୁଞ୍ଚିଲେ । ତାଙ୍କୁ ଦେଖି ସେ ଆମ ପାଖରୁ ଉଠିଗଲେ ଏବଂ ବାନ୍ଧବୀଙ୍କ ସହିତ କଣ କଥାବାର୍ତ୍ତା ହୋଇ ଆମ ଉଦ୍ଦେଶ୍ୟରେ କହିଲେ—ତୁମେମାନେ ଏଠି ବସିଥାଅ—ଆମେ ଦିହେଁ ଟିକିଏ ଏଇ ବେଢ଼ା ବୁଲି ଆସୁଛୁ ! ସେ ଦୁହେଁ ଚାଲିଗଲେ ।

ବର୍ତ୍ତମାନ ବୁଢ଼ୀ ଆଉ ମୁଁ ଏକା ବସି ରହିଲୁ । ବୁଢ଼ୀର ସେହି ଶୀର୍ଣ୍ଣ ଅଥଚ କୋମଳ ପବିତ୍ର ହାତଟି ମୋ କୋଳରେ ପଡ଼ିଥାଏ ଓ ମୁଁ ତାକୁ ଆଉଁସୁଥାଏ । ହଠାତ୍ ବୁଢ଼ୀ ମତେ ପଚାରିଲା—ବାବା ! ତୁମର ମାଆ ଜୀବିତ ଅଛି ତ ? ମୁଁ କହିଲି—ନା ! ତିନିବର୍ଷ ହେଲା ସେ ଆର ପାରିକୁ ଚାଲି ଗଲଣି । ସେଇଠୁ ବୁଢ଼ୀ କହିଲା—ଖୁବ୍ ଭଗ୍ୟବତୀ ଥିଲେ ମୁଁ ଜାଣୁଛି । ତୁମେ ତୁମର ମାଆକୁ ଖୁବ୍ ଭଲ ପାଉଥିଲ, ନୁହେଁ ? ମୁଁ କହିଲି—ମାଆକୁ କୋଉ ପୁଅ ଭଲ ନ ପାଏ ? ବୁଢ଼ୀ କହିଲା—ନା, ସେମିତି କଥା ନୁହଁ । ଏ ପୃଥିବୀରେ ଭଲ ପାଇବା ଏତେ ସହଜ କଥା ନୁହ । ମଣିଷ ଏଡ଼େ ଅହଙ୍କାରୀ ଯେ ଆପଣାକୁ ଛାଡ଼ି ଆଉ କାହାକୁ ଭଲ ପାଇ ପାରେନି ।

ସେଇଠୁ ବୁଢ଼ୀ ବଙ୍ଗଳା ଭଷାରେ ଶାକ୍ତ ଭଜନଟିଏ ଗାଇଲା । "ପ୍ରିଥିବୀତେ କେଉ ଭଲ ଯେ ବାସେନା—ଏ ପ୍ରିଥିବୀ ଭଲ ବାସିତେ ଜାନେନା ।" ଏ

ପୃଥିବୀରେ କେହି କାହାକୁ ଭଲ ପାଏନା ବାବା ! ଏ ପୃଥିବୀ କଣ ଭଲ ପାଇବା ଜାଣେ ? ସମସ୍ତେ ନିଜକୁ ନେଇ ପାଗଳ, ମତ୍ତ । ଏ ମନ୍ଦିର ବେଢ଼ାରେ ଗତ ପଚିଶି ବର୍ଷ ଧରି ମୁଁ ବୁଲୁଛି । ଭଲ ପାଉଥିବା ମଣିଷଟିଏ ଏଇ ପ୍ରଥମ ମୁଁ ଦେଖିଲି ।

ମୁଁ ହସି ହସି ପଚାରିଲି—କେମିତି ଦେଖିଲ ?

ବୁଢ଼ୀ କହିଲା—ତୁମେ ମୋତେ ଏତେ ଆଉଁସୁଛ । ମୋର ଏଇ ଜରାଗ୍ରସ୍ତ ଶୁଷ୍କ ଦେହ କଣ ତୁମକୁ ଆଉଁସିବାକୁ ଏତେ ଭଲ ଲାଗୁଛି ?

ମୁଁ ସେହି ପରି ହସି ହସି ପଚାରିଲି—ତୁମକୁ ମୋର ଏଇ ଆଉଁସା, ଏଇ ସ୍ପର୍ଶ କଣ ଭଲ ଲାଗୁଛି ?

ବୁଢ଼ୀଟିର ଆଖି ଛଳଛଳ ହୋଇଗଲା । ତାର ସମସ୍ତ ମୁଖମଣ୍ଡଳରେ ଅପୂର୍ବ ତୃପ୍ତି ଓ କୃତଜ୍ଞତା ଭରି ଉଠିଲା । ତା'ର ସେହି ଜରାଜୀର୍ଣ୍ଣ ଶ୍ଳଥ ଶୁଷ୍କ ମୁଖମଣ୍ଡଳଟି ଭିତରେ ଏକ ଚିରନ୍ତନୀ ପ୍ରେମିକା ନାରୀର ଅପୂର୍ବ ଭଙ୍ଗୀ ମାଧୁରୀ ପ୍ରକଟିତ ହୋଇଗଲା ମୋ ଆଖି ଆଗରେ ଗୋଟିଏ ମୁହୂର୍ତ୍ତ ପାଇଁ । ସେ କହିଲା—ତୁମର ସ୍ପର୍ଶ ଅପୂର୍ବ । ଆତ୍ମାର ଶୈଶବ ନାହିଁ—ଯୌବନ ନାହିଁ—ଜରା ନାହିଁ । ଆତ୍ମା ଚିରନ୍ତନ ପ୍ରେମମୟ—ଆହ୍ଲାଦମୟ ।

ଶୁଣ ବାବା ! .........

ବୁଢ଼ୀଟି ଖୁବ୍ ସଂକ୍ଷେପରେ ତାର ଜୀବନ ଇତିହାସ କହି ଚାଲିଲା ମୋ ଆଗରେ । ସ୍ୱାମୀ ଥିଲେ ମୋର ଜଣେ ଡାକ୍ତର । ପରେ ହେଲେ ସିଭିଲ୍ ସର୍ଜ୍ଜନ । ମୁଁ ଥିଲି ଖୁବ୍ ଧନୀ ଲୋକର ଝିଅ । ମୋଟା ଯୌତୁକ ଦେଇ ମୋର ବାବା ତାଙ୍କ ହାତରେ ମୋତେ ସମର୍ପି ଦେଇଥିଲେ । କିନ୍ତୁ ସ୍ୱାମୀ ମତେ ଭଲ ପାଇ ପାରିଲେ ନାହିଁ । ତାଙ୍କ ଆଖିକୁ ମୁଁ ଖୁବ୍ ଅସୁନ୍ଦର ଦିଶିଲି । ସେ ଗୋଟିଏ ସୁନ୍ଦରୀ ନର୍ସ ପ୍ରେମରେ ପଡ଼ିଲେ । ତାକୁ ନେଇ ରହିଲେ । ମୋର ଝିଅଟିଏ ଆଉ ପୁଅଟିଏ ଜନ୍ମ ହୋଇଥିଲେ । ସେମାନେ ଛୋଟ ଥିଲେ ସେତେବେଳେ । ସ୍ୱାମୀ ମୋ ଉପରେ ଖୁବ ଅତ୍ୟାଚାର କରୁଥିଲେ । ମୋ

ଆଖି ଆଗରେ ବି ସେ ସେଇ ନର୍ସଟି ସହିତ ଖୁବ୍ ନିର୍ଭୟରେ ନିର୍ଲଜ୍ଜ ଭଳି ପ୍ରେମ ନିବେଦନ କରୁଥିଲେ । ମୁଁ ଆଉ ସହ୍ୟ କରି ପାରିଲି ନାହିଁ । ବର୍ଷ ପରେ ବର୍ଷ କଟିଲା । ମୋର ପିଲା ଦୁଇଟି ବଡ଼ ହୋଇ ଉଠିଲେ । ମୁଁ ଘରକଲି—ଆଉ ଏଠି ରହିବି ନାହିଁ । ମୋର ଦିନଗୁଡ଼ିକ କେବଳ ଶାସ୍ତ୍ର ପୁରାଣ ପଢ଼ି କଟୁଥିଲା । ମୋର ମନ ଆଉ ସଂସାରରେ ଲାଗିଲା ନାହିଁ । ମୁଁ ଭାବିଲି —ଏ ସଂସାରରେ କିଛି ଆନନ୍ଦ ନାହିଁ । ଏଠି କେହି କାହାକୁ ଆନନ୍ଦ ଦେଇ ପାରେନା । ମୋ ସ୍ୱାମୀଙ୍କୁ ବା ମୁଁ ମୋ ବିଷୟରେ କାହିଁକି ସମ୍ପୂର୍ଣ୍ଣ ଦୋଷ ଦେବି ? ମୁଁ ତ ତାଙ୍କୁ ଆନନ୍ଦ ଦେଇପାରି ନାହିଁ । ମୋ ପାଖରେ ସେ ଆନନ୍ଦ ନ ଥିଲା । କିନ୍ତୁ ଏହା ବୋଲି ଯେ ସେ ନର୍ସଟି ପାଖରେ ଆନନ୍ଦ ଥିଲା ତାହା ନୁହଁ । ଅସଲ କଥା ହେଲା—ମୋ ସ୍ୱାମୀ ତା'ଠାରୁ ତାଙ୍କର ଯାହା ଆକାଂକ୍ଷା ତାହା ପାଉଥିଲେ । ମୋ'ଠାରୁ ପାଉ ନ ଥିଲେ । କ୍ରମଶଃ ବୁଝିଲି ଏ ସଂସାରରେ ସବୁ ସମ୍ବନ୍ଧ ସମ୍ପର୍କ ଏହିପରି । ତୁମେ ଯାହା ଚାହଁ, ତାହା ଯଦି ଜଣକଠାରୁ ମିଳିଲା ତେବେ ଠିକ୍ ଅଛି । ମାତ୍ର ଯଦ ନ ମିଳିଲା ତେବେ ସମ୍ବନ୍ଧ ସମ୍ପର୍କ ଆଉ ତିଷ୍ଠିବ ବା କିପରି ? କିନ୍ତୁ ଏଠି ଅନ୍ୟ ଜଣେ କଣ ଚାହେଁ, ସେ ବିଷୟରେ ତୁମର ମଥା ବଥାଏ ନାହିଁ । ତୁମେ କଣ ଚାହଁ ସେତିକି ହିଁ ସାର କଥା । ଆଉ ଗୋଟିଏ କଥା ବାବା ! ଏ ଦୁନିଆଟା ହେଲା ଅନାତ୍ମା ଦୁନିଆ । ଏଠି କେବଳ ଅହଂର ଦାବୀ ; ଅହଂର ଭୋଗ । ଆତ୍ମାକୁ ଏଠି କେହି ମନେ ପକାନ୍ତି ନାହିଁ । ଏଥିପାଇଁ ମଧ୍ୟ କାହାକୁ ଦୋଷ ଦେଇ ଲାଭ ନାହିଁ—ଦାୟୀ କରି ଲାଭ ନାହିଁ । ଏ ସଂସାର ଏମିତି ହୋଇ ତିଆରି ହୋଇଛି । ତେବେ......ତେବେ...... ।

ବୁଢ଼ୀ କିଛି ସମୟ ଚୁପ୍ ରହିଲା । ନୀଳଚକ୍ର ଆଡ଼କୁ ଅପଲକ ଆଖିରେ ଚାହିଁ ରହିଲା । ମୁଁ କହିଲି—ତେବେ ? କଣ ତେବେ ?

ବୁଢ଼ୀ କହିଲା—ତେବେ, ତେବେ, କୋଟି କୋଟି ଲୋକଙ୍କ ଭିତରେ କେହି କେହି, ଜଣେ କେହି କେବେ କେବେ କେମିତି ଆଶ୍ଚର୍ଯ୍ୟ ଭାବେ ଆତ୍ମାର ସ୍ପର୍ଶ ପାଇଯାନ୍ତି । ପାଇଯାଇ ଆଶ୍ଚର୍ଯ୍ୟ ହୋଇଯାନ୍ତି ।

"ଆଶ୍ଚର୍ଯ୍ୟବତ୍ ପଶ୍ୟତି କଶ୍ଚିଦେନ ।" ଆତ୍ମାର ଅନୁଭୂତି ହେଲେ ଆମମାନଙ୍କ ପକ୍ଷରେ ଆକସ୍ମିକ ଅଲୌକିକ । ତାକୁ ବୋଧ କରୁ କରୁ ସେ ପୁଣି

କୁଆଡ଼େ ଉଭେଇ ଯାଏ । ବୁଢ଼ୀର ଏଇ ସୁନ୍ଦର ତତ୍ତ୍ୱ କଥା ମୋ କାନରେ ବାଜୁଥାଏ । ମୁଁ ସେ ସବୁ କଥା ଜାଣେ । ତଥାପି ବୁଢ଼ୀ ତୁଣ୍ଡରୁ ବାହାରିଲା ବେଳେ ତାହା ମତେ ଖୁବ୍ ଭଲ ଲାଗୁଥାଏ । କିନ୍ତୁ ବିଚିତ୍ର କଥା—ମୋ ମୁଣ୍ଡରେ କଣ ଥିଲା କେଜାଣି, ମୋର ତୁଣ୍ଡରୁ ହଠାତ୍ ଖୁବ୍ ଦୁଃସାହସିକ କଥାଟିଏ ଦୃଢ଼ ଭାବେ ବାହାରି ପଡ଼ିଲା । ମୁଁ କହି ପକାଇଲି—ଶୁଣ । ତୁମେ ଚାଲ ମୋ ସାଥୀରେ ଆଜି । ମୁଁ ତୁମକୁ ଆଜି ମୋ ସାଙ୍ଗରେ ମୋ ଘରକୁ ନେଇଯିବି । ମୋର ତ ମାଆ ନାହିଁ । ତୁମେ ମୋ ପାଖରେ ରହିବ । ଏଠି ଏମିତି ଅକ୍ଷିତ ଭଳି ବୁଲିବ କାହିଁକି ? ବୁଢ଼ୀ ହେଲଣି । ଦେହ ପା' ଅଛି । ସେବା ଶୁଶ୍ରୂଷା ଦରକାର । ବିଶ୍ୱାସ କର, ମୁଁ ତୁମକୁ ଭଲ ପାଇ ଯାଇଛି । ଆମି ତୋମାକେ ଭାଲୋ ବେସେ ଫେଲେଛି । ସତେ କି ତୁମେ ମୋର ଜନ୍ମଜନ୍ମାନ୍ତରର ସମ୍ପର୍କୀୟା —ପରମ ଆତ୍ମୀୟା । ବିଶ୍ୱାସ କର, ତୁମକୁ ଏଠି ଏମିତି ଛାଡ଼ି ଦେଇ ଯିବାକୁ ମୋର ମନ ଡାକୁନାହିଁ । ମୁଁ ତୁମକୁ ନେଇ ଯିବି ।

ବୁଢ଼ୀଟିର ଭାବ ଗମ୍ଭୀର ମୁହଁ ହଠାତ୍ ଶିହରି ଉଠିଲା । ସେ ମୋ କୋଳରୁ ତାର ହାତଟି ଉଠାଇ ନେଇ ମୋ ପିଠିରେ ରଖିଲା । ତା'ପରେ ଏକ ରହସ୍ୟମୟ ଚାହାଣୀରେ ମୋ ମୁହଁକୁ ଚାହିଁ ଖୁବ୍ କମ୍ପିତ ଗଳାରେ କହିଲା—

ଓରେ ଖୋକା ! ତୁଇ ବଡ଼ ମାୟାବୀ । ମୁଁ ବୁଝି ପାରୁଛି—ତୋର ମାୟାଜାଲ କେଡ଼େ ଆକର୍ଷଣୀୟ । ଦେହରେ ହାତ ରଖି ତୁଇ ମେଯେ ମାନୁଷେର ଆତ୍ମାକୁ ଟାଣି ନେଇ ପାରୁ । ତୋ' ହାତର ସ୍ପର୍ଶ ପାଇଲେ ତୋ' କବଳରୁ ମୁକ୍ତି ପାଇବା ସହଜ ନୁହଁ । ତୋ ସ୍ପର୍ଶରେ ବଶୀକରଣର ଯାଦୁ ରହିଛି । ତୁଇ ଖୋକା ବଡ଼ ମାୟାବୀ । ତୁ କୁଳବଧୂକୁ ବି ଗୃହାଙ୍ଗନା ଭିତରୁ ଟାଣି ନେଇପାରୁ । ସତୁରୀ ବର୍ଷର ବୁଢ଼ୀ ଆଖିରେ ବି ତୁ ପ୍ରୀତି ପ୍ରଣୟର ମାୟାଞ୍ଜନ ଲଗାଇ ଦେଇପାରୁ । ମୁଁ କାଲିଠାରୁ ଦେଖିଲା ମାତ୍ରେ ତୋ ଛଳ ବୁଝି ସାରିଛି । ତୋ'ର ପ୍ରଚଣ୍ଡ ମାୟାର ଆକର୍ଷଣ ଶକ୍ତି ବୁଝି ସାରିଛି । ଆରେ ଖୋକା ! ତୁ ଗୋଟାଏ ଯାଦୁକର । ଏଇ ସଂସାରର ମାୟାବୀ ଯାଦୁକର । ତୁ ମୋର ଦେହକୁ ସ୍ପର୍ଶ କରିବା ମାତ୍ରେ ମୁଁ ଗୋଟାଏ ବିଚିତ୍ର ସାଂସାରିକ ଆବେଗ ଅନୁଭବ କଲି । କାଲି ମୁଁ ତୋ' ଆଖିକୁ ଚାହିଁବା ମାତ୍ରେ ତୋର ମାୟା ଚାହାଣୀର ଯାଦୁରେ ମୋହିତ ହୋଇଗଲି । ଆରେ ମାୟାବୀ !

ତୁ ମୋତେ ଜଗନ୍ନାଥଙ୍କ ପାଖରୁ ଛଡ଼ାଇ ଦେବାକୁ ବସିଛୁ ? ଆରେ ଖଣ୍ଡ !
ମୁଁ ତୋ ଚାତୁରୀ ବୁଝିଛି । ମୁଁ ତୋ' ଫାନ୍ଦରେ କେବେ ପଡ଼ିବି ନାହିଁ ।
ତୁ ମତେ ନେଇ ପାରିବୁ ନାହିଁ ।

ମୁଁ ସ୍ମିତ ମୁଖରେ ସେ ବୁଢ଼ୀର ମୁହଁକୁ ଅନେଇ ରହିଥାଏ । ମୁଁ ତାର ଏଇ ସାତ୍ତ୍ୱିକ ଆବେଗସମ୍ଭୂତ ପ୍ରଗଳ୍‌ଭ ବଚନିକାତକ ଶୁଣି ସ୍ପନ୍ଦିତ ହେଉଥାଏ । ଏବଂ ବୁଢ଼ୀ ଏଥର ମୋ' ପାଖରୁ ଦୂରେଇ ଯାଇ ପିଣ୍ଡି ତଳକୁ ଓହ୍ଲାଇ ପଡ଼ି ତା' ବାଡ଼ିଟିକୁ ଧରି ଠିଆ ହେଲା ମୁଁ ମଧ୍ୟ । ସଙ୍ଗେ ସଙ୍ଗେ ତଳକୁ ଓହ୍ଲାଇ ପଡ଼ିଲି ଏବଂ ତାକୁ ମୋ' ଆଡ଼କୁ ଭିଡ଼ିଆଣି ଜାକି ଦେଲି । ସେ ସାଙ୍ଗେ ସାଙ୍ଗେ ମତେ ଠେଲି ଦେଲା ଏବଂ ପୂର୍ବ କଥାର ସମାନ ଆବେଗରେ ମୋତେ ଭର୍ତ୍ସନା କଲାଭଳି ବଙ୍ଗଳା ଭଷାରେ କହିଗଲିଲା—ଓରେ ମାୟାବୀ ! ତୁଇ କି ଭବୁଛୁ ମୋର କେହି ନାଇଁ ? ଓରେ । ମୋର ଜଗନ୍ନାଥ ଅଛନ୍ତି ବୋଲି ତୁଇ ଜାଣୁ ନାଇଁ ? ସେଇ ମୋର ସ୍ୱାମୀ, ସେଇ ମୋର ପୁତ୍ର, ସେଇ ଏକା ମୋର ସଖା । ତାର ସଙ୍ଗେ ମୋର ଯେ ଗୁପ୍ତ କାରବାର ତା' କି ତୋତେ ଜଣା ଅଛି ? ଓରେ ! ମୁଁ ତାକୁ ଦେଖିଛି । ତାକୁ ଧରି ଶୋଇଛି । ତାକୁ ଖୁଆଇଛି—ପିଆଇଛି—ଖେଳାଇଛି—କାଖେଇଛି—କୁଣ୍ଢେଇଛି—ଗେଲଆଦର କରିଛି । ସେ ମତେ ଯାହା ଦେଇଛି—ସେ କଥା ମତେ ଦେଇ ପାରିବୁ ? ଏ ସଂସାରରେ କୋଉ ମଣିଷ ଦେଇ ପାରିବରେ ? ତୁ ମତେ ନିରାଶ୍ରୟ ଭବିଛୁ କି ? ଭୁଲ କଥା । ମୁଁ ଏ କ୍ଷେତ୍ର ଛାଡ଼ି ଆଜ କୁଆଡ଼େ ମୁହୂର୍ତ୍ତେ ବି ଯାଇ ପାରିବି ନାହିଁ । ଏ କ୍ଷେତ୍ରରୁ ବାହାର କରି ଦେଲେ ପାଣି ବିନା ମାଛ ପ୍ରାୟେ ମୁଁ ମରିଯିବି । ଏଇ କାଳଚନ୍ଦ ପୁରୁଷୋତ୍ତମଟିକେ ଛେଡ଼େ, ଆର କୋଉ ପୁରୁଷ ସାଥିରେ ଯାଇ ପାରିବି ନାହିଁ, ରହି ପାରିବି ନାହିଁ । ସେ ଯୋଉ ରୂପରେ ଆସିଲେ ବି ନୁହଁ—ସ୍ୱାମୀ ରୂପରେ ନୁହଁ କି ପୁଅ ରୂପରେ ନୁହଁ । ମରିବି ତ ଏଇ କ୍ଷେତ୍ରରେଇ ମରିବି । ସରଦ୍ୱାରର ଧୂଳିରେ ମିଶିଯିବି । ଯାଉଛି ମୁଁ । ଛାଡ଼ ମତେ ।

ମୋ ଚାରିପଟେ ଆନନ୍ଦ ବଜାରର ବାସ୍ତବ କିଣାବିକାର ଗୋଳଚହଳ ଲାଗିଥାଏ । ମାତ୍ର ମୁଁ ଥାଏ ସତେକି ଗୋଟାଏ ସ୍ୱପ୍ନ ରାଜ୍ୟରେ—ଗୋଟିଏ ପୃଥକ ଧରଣର ଭବ

ରାଜ୍ୟରେ । ମୋ ସ୍ତ୍ରୀ ସେ ଯାବତ ତାଙ୍କ ବାନ୍ଧବୀଙ୍କ ସହ ବେଢ଼ା ପ୍ରଦକ୍ଷିଣ କରି ଫେରି ନଥାନ୍ତି । ବୁଢ଼ୀର ଏକଥା ସବୁ ମୋ ଭିତରେ ପ୍ରବଳ ଆଲୋଡ଼ନ ସୃଷ୍ଟି କରିଥାଏ । ମୋ ଭିତରେ ବିଚିତ୍ର ଅନୁଭବମାନ ଅସ୍ପଷ୍ଟ ଭାବେ ମୋତେ ଆଉଟି ପକାଉଥାନ୍ତି । ମୋତେ ଖୁବ୍ କଷ୍ଟ ଲାଗୁଥାଏ । ଭଲ ବି ଲାଗୁଥାଏ । ମୁଁ ଏପରି ଏକ ଅଭିଜ୍ଞତା ପାଇଁ ପ୍ରସ୍ତୁତ ନଥିଲି । ଏ ବୁଢ଼ୀ ବଡ଼ ଅଦ୍ଭୁତ । ଏ ସ୍ଥାନ ମଧ୍ୟ ଅଦ୍ଭୁତ । ଆଉ ସବୁଠାରୁ ଅଦ୍ଭୁତ ଏଇ ଠାକୁର । ଏ ସବୁ ଭିତରେ ପୁଣି ମୁଁ ମୋ ଭିତରର ଆଉ ଏକ ଅଦ୍ଭୁତ ସତ୍ତାକୁ ଅନୁଭବ କଲି । ମୋ ଭିତରୁ ଯେତେକି ଆଉ ଜଣେ କିଏ ବାହାରି ଆସୁଛି—ଏବଂ ସେ ମୋତେ ଖୁବ୍ ଦୃଢ଼ ସ୍ୱରରେ ଜିଦ୍ କରି କହୁଛି—ଧ, ଧ ସେ ବୁଢ଼ୀକି । ତାକୁ ଛାଡ଼ନା । ତାକୁ ନେଇ ଯା' ତାକୁ ଜବରଦସ୍ତ ଏ ବେଢ଼ା ଭିତରୁ ଟେକି ନେଇ ଯା' । ତା'ପରେ ତାକୁ ଯେ କୌଣସି ପ୍ରକାରେ ଏ କ୍ଷେତ୍ର ସୀମା ପାରି କରି ଦେ । ଦେଖିବୁ, ତାର ସବୁ ବଦଳି ଯିବ । ତାର ଏ ତେଜ କୁଆଡ଼େ ଲିଭିଯିବ । ନେ-ନେ ଧଅ ସେ ବୁଢ଼ୀକି । ଧରିପକା । ଏଇଥର ଯଦି ତା' ଦେହରେ ହାତ ଦେଇ ତାକୁ ଜାବୁଡ଼ି ଧରି ପାରିବୁ, ତେବେ ସେ ତୋ' ଫାନ୍ଦ ଭିତରେ ପଡ଼ିଯିବ, ସେ ନିର୍ବଳ ହୋଇଯିବ । ତୋ' ଖାପ୍‌ଚରେ ପଡ଼ିଯିବ ।

ମୁଁ ମୋର ଅନ୍ୟ ସତ୍ତାଟିର ପ୍ରରୋଚନାରେ ଅନ୍ଧ ଭଳି ସେ ବୁଢ଼ୀ ଆଡ଼କୁ ମାଡ଼ି ଚାଲିଲି । ମୁଁ ମୋ ହାତରେ ଗୋଟିଏ ପାଞ୍ଚଟଙ୍କିଆ ନୋଟ୍ ଧରି ତାକୁ ଯାଚିଲି । ନିଅ,ନିଅ—ମୋ ସାଙ୍ଗରେ ନ ଯାଅ ପଛକେ ଏ ଟଙ୍କାତକ ଧର, ନିଅ । ନିଅ —ଏ ଟଙ୍କାତକ ମୋ ହାତରୁ ନିଅ । ନିଅ-ନିଅ । ମୁଁ ତୁମକୁ ଛାଡ଼ି ଦେଲି—କିନ୍ତୁ ତୁମେ ଏ ଟଙ୍କା ତକ ଧର, ନିଅ ।

ପାଞ୍ଚ ଟଙ୍କିଆ ନୋଟଟିକୁ ଧରି ମୁଁ ତା ପାଖକୁ ନିଅ, ନିଅ ବୋଲି ଆଗେଇ ଯାଉଥାଏ—ଏବଂ ସେ ମୋ ଆଡ଼କୁ ସାମ୍ନାକରି ପଛେଇ ପଛେଇ ଯାଉଥାଏ । ସେ ମୋ ମୁହଁକୁ ଚାହିଁଥାଏ—ମୋ ହାତର ନୋଟ୍‌ଟାକୁ ନୁହେଁ । ସେତେବେଳକୁ ମୁଁ ଆଉ ମୋର ଆୟତ୍ତରେ ନଥାଏ । ମୁଁ ମଧ୍ୟ ଭିନ୍ନପ୍ରକାରର ଏକ ଭବାବେଗ ଭିତରେ ପଡ଼ି ଯାଇଥାଏ । ମୋତେ ଆଉ କିଛି ଦିଶୁ ନ ଥାଏ । କେବଳ ସେଇ ପଛେଇ ପଛେଇ ମୋ ଠାରୁ ଖସି ପଳେଇ ଯାଉଥିବା

ବୁଢ଼ୀଟି ବ୍ୟତୀତ । ତା' ପରେ ହଠାତ୍ କଣ ଯେମିତି କଣ କିଛି ଘଟିଗଲା !
ମୁଁ ଆଉ କିଛି ବୁଝି ପାରିଲି ନାହିଁ । ତାହା ଥିଲା ମାତ୍ର ଗୋଟିଏ ସେକେଣ୍ଡ
ବା ମୁହୂର୍ତ୍ତକର ବ୍ୟାପାର । ମୁଁ ମୋର ଆଖି ଦୁଇଟାକୁ ସ୍ପଷ୍ଟଭାବେ
ମେଲା ସେ ବୁଢୀଟିକୁ ଚାହିଁ ରହିଥିଲେ ବି ସେ ମୋ ଆଖି ଆଗରୁ
ମୋତେ ପଛ କରି ମୋ ମୁହଁକୁ ଚାହୁଁଚାହୁଁ ହଠାତ୍ କୁଆଡ଼େ ଅଦୃଶ୍ୟ
ହୋଇଗଲା, ଏବଂ ମୋ ଆଖି ଆଗରେ ହଠାତ୍ ଉଭା ହୋଇଗଲେ ମୋର
ପତ୍ନୀ ଆଉ ତାଙ୍କର ବାନ୍ଧବୀ ଜଣକ । ସେମାନେ ହସିହସି ମୋତେ ପଚାରିଲେ
—କୁଆଡ଼େ ଯାଉଛ ? ସେ ବୁଢ଼ୀ ଚାଲିଗଲା କି ? ମୁଁ ମୋର ହୋସ୍‌କୁ
ଫେରି ଆସିଲି । କିଛି ମୁହୂର୍ତ୍ତ ପରେ ବେଶ୍ ପ୍ରକୃତିସ୍ଥ ହୋଇ କହିଲି—
ଆଶ୍ଚର୍ଯ୍ୟ କଥା ! ବୁଢ଼ୀଟି ମୋ ଆଗରେ ଏଇଠି ଥିଲା—କୁଆଡ଼େ ଅଦୃଶ୍ୟ
ହୋଇଗଲା ! ବଡ଼ ବିଚିତ୍ର କ୍ଷେତ୍ର ଏ ।

ମୋର ପତ୍ନୀ ହସିହସି କହିଲେ କ୍ଷେତ୍ର ତ ନିଶ୍ଚୟ ବିଚିତ୍ର । ତୁମେ ମଧ୍ୟ
କମ୍ ବିଚିତ୍ର ନୁହଁ ।

ଏତିକି କହି ସେ ଦୁହେଁ ବୁଢ଼ୀକୁ ଖୋଜିଲା ଭଳି ଚାରି ଆଡ଼କୁ ଚାହିଁଲେ ।
ହଠାତ୍ ମୋର ସ୍ତ୍ରୀଙ୍କର ବାନ୍ଧବୀ କହି ଉଠିଲେ—ହେଇ ତ ହେଇ ! ସେ
ବୁଢ଼ୀ ସେଠି ବାଇଶି ପାହାଚ ଆଡ଼କୁ ଚାଲିଛି । ମୁଁ ତରବର ହୋଇ
ଉନ୍ମାଦ ଭଳି ସେଇ ଆଡ଼କୁ ଚାଲିଲେ । ସେ ଦୁହେଁ ମଧ୍ୟ ଦ୍ରୁତ ପଦକ୍ଷେପରେ
ମୋ ସାଙ୍ଗେ ସାଙ୍ଗେ ସେଇ ଆଡ଼େ ଚାଲିଲେ । ମୋ ହାତରେ ୫ଟଙ୍କିଆ
ନୋଟ୍‌ଟିକୁ ମୁଁ ସେମିତି ଧରିଥାଏ ଓ ଭାବୁଥାଏ, ଏ ଟଙ୍କାଟା ମୁଁ ତାକୁ
ନିଶ୍ଚୟ ଦେଇ ଦେବି । ଏତେକ ମୁଁ ତା' ଲାଗି ଉତ୍ସର୍ଗ କରିଛି । ମୁଁ ତାକୁ
ଭଲ ପାଏ, ଆମେ ଦୁହେଁ ପରସ୍ପର ଦେହକୁ କୁଣ୍ଢାଇଛୁ, ସ୍ପର୍ଶ ଉପଭୋଗ
କରିଛୁଁ, ମୁଁ ତାକୁ ନିଶ୍ଚୟ ଭଲ ପାଏ । ମାତ୍ର ଏଥର ମୁଁ ତାକୁ ଜଗନ୍ନାଥଙ୍କ
ପାଖରୁ ଛଡ଼େଇ ନେଇଯିବା ଲାଗି ପ୍ରସ୍ତାବ ଦେବି ନାହିଁ । କେବଳ ଏତେକ
ଟଙ୍କା ଦେଇ ଦେବି ।

ଆମେ ବାଇଶି ପହାଚ ଉପରେ ହେଲା ବେଳକୁ ସେ ଯାଇ କାଶୀ ବିଶ୍ୱନାଥଙ୍କ
ପାଖ ପାହାଚରେ ହେଲାଣି । ବାଡ଼ିଟି ଧରି ସେ ଖୁବ୍ ଧୀରସ୍ଥିର ହୋଇ

ଓହ୍ଲାଇ ଯାଇଥିଲ । ମାତ୍ର ବିଚିତ୍ର କଥା; ମୋର କାହିଁକି ଆଉ ତାଙ୍କୁ ପଛରୁ ଡାକିବାକୁ ଇଚ୍ଛା ହେଲ ନାହିଁ । ଆମେ ସମସ୍ତେ ସେଠି ନୀରବରେ କିଛି ସମୟ ଠିଆ ହୋଇ ରହିଲୁ । ମୋ ସ୍ତ୍ରୀ ନୀରବତା ଭଙ୍ଗ କରି କହିଲେ– ମୁଁ ଯାଉଛି ସେ ବୁଢ଼ୀକି ଡାକି ଆଣେ !

ମୁଁ ଗମ୍ଭୀର ହୋଇ କହିଲି—ନା, ନା, ଥାଉ ! ସେ ଏ କ୍ଷେତ୍ରର ଲୋକ । ଜଗନ୍ନାଥଙ୍କ ଲୋକ । ସେ ଆଉ କଥା ଶୁଣିବ ନାହିଁ ।

ତା’ ପରେ ଆମେ ପୁଣି ଥରେ ସ୍ନାନମଣ୍ଡପ ପାଖ ସେହି ବରଗଛ ମୂଳ ପିଣ୍ଡି ଉପରକୁ ଫେରି ଆସିଲୁ । ମୋର ପତ୍ନୀ ଓ ତାଙ୍କ ବାନ୍ଧବୀ ଫେର୍ ଥରେ ମୋତେ ଏକୁଟିଆ ଛାଡ଼ି ହାତ ଧରାଧରି ହୋଇ ମନ୍ଦିର ଆଡ଼େ ଚାଲିଗଲେ । ମୋର ଅଦୂରରେ ବୁଢ଼ୀ ପାତିମାଙ୍କୁଢ଼ୀଟିଏ ଏକୁଟିଆ ଚୁପ୍‌ଚାପ୍ ବଡ଼ ବିଷଣ୍ଣ ମୁହଁରେ ବସିଥିଲ । ମୁଁ ସେଇ ମାଙ୍କୁଢ଼ୀଟି ଆଡ଼କୁ ଶୂନ୍ୟମନରେ ଚାହିଁ ରହିଲି । ମୋର ମନ ଭିତରେ ଧୀରେଧୀରେ କିଏ ଜଣେ ମତେ ବାରଂବାର ଖୁବ୍ ପାଟି କରି ଧିକ୍କାର କରି ଲଗିଥାଏ—ଛି-ଛି-ତୁ ଗୋଟାଏ ମାୟାବୀ ! ତୁ ଭଗବାନଙ୍କ ପାଖରୁ ତାଙ୍କ ଲୋକକୁ ଛଡ଼ାଇ ନେଇ ତୋର ମାୟାଜାଲରେ ପକାଇ ଉପଭୋଗ କରୁ । ସେ କିନ୍ତୁ କଳବଳ ହେଉଥାଏ । ଛି-ଛି-ତୁ ଗୋଟାଏ ଖଣ୍ଡ-ଗୋଟାଏ ଯାଦୁକର । ତୋର ହାତର ସ୍ପର୍ଶରେ ପ୍ରପଞ୍ଚମାୟାର ଆବେଶ ରହିଛି ।-ଛି-ଛି-ଛି-ତୁ ଗୋଟାଏ ହୀନ ମଣିଷ-ହୀନ-ମଣିଷ । ତୋର ସ୍ପର୍ଶ ମଣିଷକୁ ମୁକ୍ତି ଦିଏ ନାହିଁ—ବନ୍ଧନରେ ପକାଏ-ଛି-ଛି-ଛି ......ଛି-ଛି-ଛି......ଛି-ଛି-ଛି ।

ଆତ୍ମଧିକ୍କାରରେ ମୁଁ ସଢ଼ି ଯାଉଥିଲି । ଭିତରେ ଭିତରେ ଦବି ଦବି ଯାଉଥିଲି । ହେ ଜଗନ୍ନାଥ ! ମୋତେ କ୍ଷମା କର । ମୁଁ ଆଉ କେବେହେଲେ ଆପଣଙ୍କ ଲୋକକୁ ମୋ ଆଡ଼କୁ ଟାଣିବି ନାହିଁ ।

॥ ॥ ॥

## ଏହି ଲେଖକଙ୍କର ଅନ୍ୟାନ୍ୟ ଗ୍ରନ୍ଥ

### ଉପନ୍ୟାସ

ଧର ଓ ଧାର
ତାମସୀ ରାଧା

### ଗଳ୍ପ

ରନୁ ଅପା ଠାରୁ ପୁଷି ପର୍ଯ୍ୟନ୍ତ
ସୁମିତ୍ରାର ହସ
ବିଷ୍ଣୁମାୟା
ଯାଦେବୀ ମମଗୃହେଷୁ
ଅନ୍ଧରାତିର ସୂର୍ଯ୍ୟ
ଆକାଶ ପାତାଳ
ଅନ୍ୟରୂପ ରୂପାନ୍ତର
ପିଙ୍ଗଳା ସେ ଅନ୍ୟଜଣେ
ଅଭିଶପ୍ତ ଗନ୍ଧର୍ବ
ସେକାଳ ପଛାଳ
ପାପ ଓ ମୁକ୍ତି

### ପ୍ରବନ୍ଧ ଓ ରମ୍ୟ ରଚନା

ମନୁଷ୍ୟ ସ୍ୱାଧୀନ କି ?
କିଛି ସୂତ୍ର, କିଞ୍ଚିତ୍ ବ୍ୟାଖ୍ୟା
ଆମେ ଓଡ଼ିଆ, ଓଡ଼ିଆ କିଏ;
ସ୍ୱପ୍ନ ସ୍ୱପ୍ନ ଅନେକ ସ୍ୱପ୍ନ
ଯା' ନିଶା ସର୍ବଭୂତେଷୁ—
ଏବଂ ଧର୍ମ ନିରପେକ୍ଷ ଧାର୍ମିକ
ଧ୍ୱନି ଧ୍ୱନି ପ୍ରତିଧ୍ୱନି

ଇତ୍ୟାଦି .........